# ଶ୍ରୀରାମକୃଷ୍ଣ ଜୀବନୀ

## (ଲୀଳାପ୍ରସଙ୍ଗ ଅବଲମ୍ବନରେ)

ସଙ୍କଳୟିତା

**ସ୍ୱାମୀ ତେଜସାନନ୍ଦ**




## ଶ୍ରୀରାମକୃଷ୍ଣ ମଠ

ଭୁବନେଶ୍ୱର

ପ୍ରକାଶକ
**ସ୍ୱାମୀ ଶିବେଶ୍ୱରାନନ୍ଦ**
ସଭାପତି, ରାମକୃଷ୍ଣ ମଠ
ବିବେକାନନ୍ଦ ମାର୍ଗ
ଭୁବନେଶ୍ୱର ୭୫୧ ୦୦୨



**ତୃତୀୟ ସଂସ୍କରଣ**
ସ୍ୱାମୀ ବ୍ରହ୍ମାନନ୍ଦଙ୍କର ଜନ୍ମଦିନ
୫ ଫେବୃଆରି ୧୯୯୨

**ମୂଲ୍ୟ : ବାଇଶି ଟଙ୍କା**

ମୁଦ୍ରଣ
**ମାନସୀ ପ୍ରେସ**
୭୩, ମାଣିକତଲା ଷ୍ଟ୍ରୀଟ
କଲିକତା ୭୦୦ ୦୦୬

SRI RAMAKRISHNA JIVANI; *by* Swami Tejasananda; *published by* Ramakrishna Math, Bhubaneswar 751 002; *third* Edition; *printed at* Manasi **PRESS** Calcutta 700 006; *price* TWENTY TWO only.

# ନିବେଦନ

ଯୁଗାବତାର ଭଗବାନ ଶ୍ରୀରାମକୃଷ୍ଣଙ୍କର ସୁବୃହତ୍ ଜୀବନ-ଇତିହାସ ତାଙ୍କର ଅନ୍ୟତମ ପ୍ରିୟ ଶିଷ୍ୟ ସ୍ୱାମୀ ସାରଦାନନ୍ଦ ଅତୁଳନୀୟ ଭାବ ଓ ଭାଷା ସାହାଯ୍ୟରେ 'ଶ୍ରୀଶ୍ରୀରାମକୃଷ୍ଣ ଲୀଳାପ୍ରସଙ୍ଗ' ନାମକ ଗ୍ରନ୍ଥରେ (ବଙ୍ଗଭାଷାରେ ପ୍ରକାଶିତ) ଲିପିବଦ୍ଧ କରି ଯାଇଛନ୍ତି । ପାଠକପାଠିକାମାନଙ୍କ ନିକଟରେ ସେହି ଅମୂଲ୍ୟ ଗ୍ରନ୍ଥର ପରିଚୟ ଦେବା ଅନାବଶ୍ୟକ । ସେହି ପୁସ୍ତକର ଉପାଦାନ-ସଂଗ୍ରହ, ରଚନାଶୈଳୀ, ଭାବ-ଗାମ୍ଭୀର୍ଯ୍ୟ, ଭାଷାର ଲାଳିତ୍ୟ, ଘଟଣାବିନ୍ୟାସ ଓ ସର୍ବୋପରି ବିଭିନ୍ନ ଶାସ୍ତ୍ରାଲୋକରେ ଶ୍ରୀଠାକୁରଙ୍କର ସାଧନଚର୍ଯ୍ୟାର ଅଲୌକିକ ଉପଲବ୍ଧିର ସ୍ୱରୂପ-ନିର୍ଣ୍ଣୟ ଓ ଯାଥାର୍ଥ୍ୟ-ପ୍ରତିପାଦନ—ସ୍ୱାମୀ ସାରଦାନନ୍ଦଙ୍କ ଭଳି ଉପଲବ୍ଧିବାନ, ତୀକ୍ଷ୍ଣଧୀ ମନୀଷୀଙ୍କ ବ୍ୟତୀତ ଅନ୍ୟ କାହାରି ପକ୍ଷରେ ଏପରି ସ୍ପଷ୍ଟଭାବରେ ରୂପାୟିତ କରିବା ସମ୍ଭବ ନୁହେଁ ।

ବର୍ତ୍ତମାନ ପୁସ୍ତକଟି ପ୍ରଧାନତଃ ସେହି 'ଲୀଳାପ୍ରସଙ୍ଗ' ଅବଲମ୍ବନରେ ରଚିତ । ଶ୍ରୀରାମକୃଷ୍ଣଙ୍କର ଜନ୍ମରୁ ମହାପ୍ରୟାଣ ପର୍ଯ୍ୟନ୍ତ ଯେଉଁସବୁ ଘଟଣା ମୂଳଗ୍ରନ୍ଥର ବିଭିନ୍ନ ସ୍ଥାନରେ ଇତସ୍ତତଃ ବିକ୍ଷିପ୍ତ ରହିଛି, ତାହା ମୂଳଗ୍ରନ୍ଥର ଭାଷା ଓ ଭାବ ଅବଲମ୍ବନରେ ବର୍ତ୍ତମାନ ଗ୍ରନ୍ଥରେ କ୍ରମପର୍ଯ୍ୟାୟରେ ସଂକଳିତ ଓ ସନ୍ନିବେଶିତ କରି ଜୀବନୀର ସାବଲୀଳ କ୍ରମପ୍ରବାହ, ସରସତା ଓ ପ୍ରାଞ୍ଜଳତା ରକ୍ଷା କରିବାର ଚେଷ୍ଟା କରାଯାଇଛି । ଏହି ଗ୍ରନ୍ଥ ରଚନାରେ ମୂଳଗ୍ରନ୍ଥ ବ୍ୟତୀତ 'ଶ୍ରୀଶ୍ରୀରାମକୃଷ୍ଣ କଥାମୃତ', **'Life of Sri Rama-krishna'** (***Mayavati edition***) ପ୍ରଭୃତି ପୁସ୍ତକମାନଙ୍କର କିଞ୍ଚିତ୍ ସାହାଯ୍ୟ ନିଆଯାଇଛି ଏବଂ ସ୍ଥାନ ବିଶେଷରେ ପ୍ରୟୋଜନ ଅନୁଯାୟୀ ଲେଖକ ସାମାନ୍ୟ ନୂତନ କିଛି ଲେଖି ଜୀବନ-ଇତିହାସର ଧାରାବାହିକତା ରକ୍ଷା କରିଛନ୍ତି । ସମୟ ଅଭାବରୁ ଯେଉଁମାନଙ୍କ ପକ୍ଷରେ ମୂଳଗ୍ରନ୍ଥ ପାଠ କରିବାର ସୁଯୋଗ ହେବ ନାହିଁ, ଏହି ପୁସ୍ତକଟି ସେହି ଅଭାବ

କେତେକାଂଶରେ ଲାଘବ କରିବ —ଏହି ଉଦ୍ଦେଶ୍ୟରେ ସୁଧୀ-ସମାଜ ନିକଟରେ ଏହା ଉପସ୍ଥାପିତ କରାଯାଉଛି । ପାଠକ-ପାଠିକାବୃନ୍ଦ ଏହି ଗ୍ରନ୍ଥ ପାଠ କରି ଯଦି ପ୍ରେମବିଗ୍ରହ ଶ୍ରୀଶ୍ରୀରାମକୃଷ୍ଣଙ୍କ ଲୀଳାମୃତର କିଞ୍ଚିତ୍ ସ୍ୱାଦ ଲାଭ କରନ୍ତି, ତେବେ ଆମମାନଙ୍କର ଶ୍ରମ ସାର୍ଥକ ହେବ ବୋଲି ମନେ କରିବୁ ।

ଶ୍ରୀରାମକୃଷ୍ଣ ମଠ ଓ ମିଶନର ଅଧ୍ୟକ୍ଷ ଶ୍ରୀମତ୍ ସ୍ୱାମୀ ମାଧବାନନ୍ଦଜୀ ମହାରାଜ ମୂଳ ପୁସ୍ତକର ପାଣ୍ଡୁଲିପି ପୁଙ୍ଖାନୁପୁଙ୍ଖ ଭାବରେ ଦେଖି ଦେଇଥିବାରୁ ସମସ୍ତଙ୍କର କୃତଜ୍ଞତାଭାଜନ ହୋଇଛନ୍ତି ।

ଜନ୍ମାଷ୍ଟମୀ, ୧୯୬୨ ସଙ୍କଳୟିତା

## ପ୍ରଥମ ଓଡ଼ିଆ ସଂସ୍କରଣର ନିବେଦନ

ବଙ୍ଗଭାଷାରେ ପ୍ରକାଶିତ ଏହି ବହୁମୂଲ୍ୟ ପୁସ୍ତକର ଓଡ଼ିଆ ସଂସ୍କରଣ ଆମ୍ଭ ପାଠକପାଠିକାମାନଙ୍କ ନିକଟରେ ପରିବେଷଣ କରିବାକୁ ସମର୍ଥ ହୋଇଥିବାରୁ ଆମେ ନିଜକୁ କୃତାର୍ଥ ମନେ କରୁଛୁ ।

ମୂଳ ବଙ୍ଗଳା ଗ୍ରନ୍ଥକୁ ଓଡ଼ିଆରେ ଅନୁବାଦ କରିଥିବାରୁ ପୁରୀ ଜିଲ୍ଲା ସ୍କୁଲର ପ୍ରଧାନ ଶିକ୍ଷକ ଶ୍ରୀରାମଚନ୍ଦ୍ର ପଣ୍ଡାଙ୍କ ନିକଟରେ ଆମେ କୃତଜ୍ଞ । ଓଡ଼ିଆ ସାହିତ୍ୟର ସୁପରିଚିତ ଲେଖକ ମହାପାତ୍ର ଶ୍ରୀନୀଳମଣି ସାହୁ ପାଣ୍ଡୁଲିପି ଆନୁପୂର୍ବିକ ଦେଖି ତାଙ୍କର ମୂଲ୍ୟବାନ ପରାମର୍ଶ ଦେଇଥିବାରୁ ଆମେ ତାଙ୍କ ନିକଟରେ ଚିରଋଣୀ ରହିଲୁ ।

ଫଳହାରିଣୀ କାଳୀପୂଜା,
ବୈଶାଖ ଅମାବାସ୍ୟା, ୧୯୬୯ ପ୍ରକାଶକ

# ଦ୍ୱିତୀୟ ଓଡ଼ିଆ ସଂସ୍କରଣର ନିବେଦନ

ଭଗବାନ ଶ୍ରୀଶ୍ରୀରାମକୃଷ୍ଣଙ୍କର ବିଶେଷ କରୁଣାରୁ 'ଶ୍ରୀରାମକୃଷ୍ଣ ଜୀବନୀ'ର ଦ୍ୱିତୀୟ ଓଡ଼ିଆ ସଂସ୍କରଣ ପ୍ରକାଶିତ ହେଲା ।

ଶ୍ରୀଯୁକ୍ତ ମନୋଜ ସରାଫ, ସଭାପତି, ଫେରୋ ଆଲୟଜ୍ କର୍ପୋରେସନ୍ ଲିମିଟେଡ୍, ଶ୍ରୀରାମନଗର, ଆନ୍ଧ୍ରପ୍ରଦେଶ, ଏଥିର ଅଧିକାଂଶ ମୁଦ୍ରଣବ୍ୟୟ ବହନ କରିଥିବାରୁ, ଆମେ ତାଙ୍କଠାରେ ଆନ୍ତରିକ କୃତଜ୍ଞତା ପ୍ରକାଶ କରିବା ସଙ୍ଗେ ସଙ୍ଗେ ତାଙ୍କର ପରମ କଲ୍ୟାଣ ନିମନ୍ତେ ଭଗବାନଙ୍କଠାରେ ପ୍ରାର୍ଥନା କରୁଅଛୁ ।

ପ୍ରାଧ୍ୟାପକ ଶ୍ରୀ ଚନ୍ଦ୍ରକାନ୍ତ ମିଶ୍ର ଏହି ସଂସ୍କରଣର ସମ୍ପାଦନା, ପ୍ରୁଫ୍-ସଂଶୋଧନ ଓ ପ୍ରକାଶନର ସକଳ ଦାୟିତ୍ୱ ଅକୁଣ୍ଠ ଚିତ୍ତରେ ଓ ପୂର୍ଣ୍ଣପ୍ରାଣରେ ବହନ କରି ଆମ୍ଭମାନଙ୍କୁ କୃତଜ୍ଞତାପାଶରେ ଆବଦ୍ଧ କରିଛନ୍ତି ।

ଓଡ଼ିଶାର ଜନସାଧାରଣ ଶ୍ରୀରାମକୃଷ୍ଣଙ୍କର ଅଲୌକିକ ଦିବ୍ୟଜୀବନ ପ୍ରତି କ୍ରମେ ଅଧିକତର ଆକୃଷ୍ଟ ହେଉଥିବାରୁ ଏ ପୁସ୍ତକଟି ସେମାନଙ୍କ ଦ୍ୱାରା ବିଶେଷ ଆଦୃତ ହେବ ବୋଲି ଆମର ଆଶା ଓ ବିଶ୍ୱାସ ।

ଶ୍ରୀରାମକୃଷ୍ଣଙ୍କ ଜନ୍ମତିଥି<br>୨୧ ଫେବୃଆରୀ ୧୯୮୫

ବିନୀତ<br>**ପ୍ରକାଶକ**

# ତୃତୀୟ ସଂସ୍କରଣର ନିବେଦନ

ଭଗବାନ ଶ୍ରୀରାମକୃଷ୍ଣଦେବଙ୍କର କରୁଣାରୁ 'ଶ୍ରୀରାମକୃଷ୍ଣ ଜୀବନୀ'ର ତୃତୀୟ ସଂସ୍କରଣ ପ୍ରକାଶିତ ହେଲା।

ପୂର୍ବ ସଂସ୍କରଣର ସମସ୍ତ ବିଷୟ ଏହି ସଂସ୍କରଣରେ ଅପରିବର୍ତ୍ତିତ ରହିଛି।

ଓଡ଼ିଶାରେ ଏହି ପୁସ୍ତକର ଜନପ୍ରିୟତା କ୍ରମଶଃ ବୃଦ୍ଧି ପାଉଥିବାର ଲକ୍ଷ୍ୟ କରି ଆମେ ଏହାର ପୁନର୍ମୁଦ୍ରଣରେ ଆଗ୍ରହୀ ହୋଇଛୁ।

ଏହି ଗ୍ରନ୍ଥ ପାଠ କରି ଓଡ଼ିଶାର ଜନସାଧାରଣ ଦିବ୍ୟ ଜୀବନ ଲାଭ କରିବାରେ ଅଧିକତର ବ୍ରତୀ ହୁଅନ୍ତୁ— ଏହା ହିଁ ଆମମାନଙ୍କର ଶ୍ରୀଭଗବାନଙ୍କ ନିକଟରେ ଆନ୍ତରିକ ପ୍ରାର୍ଥନା।

**ସ୍ୱାମୀ ଶିବେଶ୍ୱରାନନ୍ଦ**

ସ୍ୱାମୀ ବିବେକାନନ୍ଦଙ୍କର ଜନ୍ମତିଥି
୨୬ ଜାନୁଆରି ୧୯୯୨, ଭୁବନେଶ୍ୱର

ସଭାପତି
ରାମକୃଷ୍ଣ ମଠ, ଭୁବନେଶ୍ୱର

# ସୂଚୀପତ୍ର

## ପ୍ରଥମ ଅଧ୍ୟାୟ

# ପୂର୍ବ କଥା

ବାଙ୍କୁଡ଼ା ଓ ମେଦନୀପୁର ଜିଲ୍ଲା ଦୁଇଟି ସହିତ ହୁଗୁଳି ଜିଲ୍ଲାର ଉତ୍ତର ପଶ୍ଚିମାଂଶ ଯେଉଁଠାରେ ମିଳିତ ହୋଇଛି ସେହି ସନ୍ଧିସ୍ଥଳର ଅଳ୍ପ ଦୂରରେ କାମାରପୁକୁର ବୋଲି ଗାଁଟିଏ । ଏହି ଗାଁର ମାଟିକୁ ପୁଣ୍ୟମୟ କରି ଜନ୍ମ-ଗ୍ରହଣ କରିଥିଲେ ଯୁଗାବତାର ପରମ ପୁରୁଷ ଶ୍ରୀରାମକୃଷ୍ଣ । ସେହି ଗାଁକୁ ଲାଗି ଶ୍ରୀପୁର ଆଉ ମୁକୁନ୍ଦପୁର ନାମରେ ଅନ୍ୟ ଦୁଇଟି ଶ୍ରେଷ୍ଠ ଗାଁ ଅବସ୍ଥିତ । କିନ୍ତୁ ଏହି ତିନୋଟିଯାକ ଗାଁକୁ ମିଶାଇ ଲୋକେ ସେହି ଗୋଟିଏ ନାଁରେ ଡାକନ୍ତି 'କାମାରପୁକୁର' । କାମାରପୁକୁର ଗୋଟିଏ ବିଖ୍ୟାତ ଗ୍ରାମ । ବୋଧହୁଏ ସ୍ଥାନୀୟ ଜମିଦାରମାନେ ବହୁକାଳ ଧରି ଏ ଗ୍ରାମରେ ବସବାସ କରୁଥିବାରୁ ଗାଁଟିର ଖ୍ୟାତି ବଢ଼ି ଯାଇଥିଲା । ଆମେ ଯେଉଁ ସମୟର କଥା କହିବାକୁ ଯାଉଛୁ, ସେତେବେଳେ ଏହି ଗାଁଟି ଥିଲା ବର୍ଦ୍ଧମାନ ମହାରାଜା-ଙ୍କର ଗୁରୁବଂଶୀୟ ଜମିଦାରମାନଙ୍କର ଲାଖରାଜ ମାହାଲ ଏବଂ ସେମାନଙ୍କର ବଂଶଧର ଶ୍ରୀଯୁକ୍ତ ଗୋପୀଲାଲ ଓ ଶ୍ରୀଯୁକ୍ତ ସୁଖଲାଲ ପ୍ରମୁଖ ଗୋସ୍ୱାମୀଗଣ ଏହି ଗ୍ରାମରେ ବାସ କରୁଥିଲେ ।

୧୮୭୭ ମସିହା ବେଳକୁ କୃଷିପ୍ରଧାନ ବଙ୍ଗ ଦେଶର ପଲ୍ଲୀଗ୍ରାମ-ଗୁଡ଼ିକରେ ଅପୂର୍ବ ଆନନ୍ଦ ଓ ଶାନ୍ତି ବିରାଜମାନ କରୁଥିଲା । ତଦବଧି ମହାମାରୀ, ମେଲେରିଆ ଜ୍ୱରର ପ୍ରାଦୁର୍ଭାବ ଘଟି ନ ଥିଲା । ହୁଗୁଳି ଜିଲ୍ଲାର ଏହି ସବୁ କ୍ଷୁଦ୍ର ପଲ୍ଲୀଗ୍ରାମଗୁଡ଼ିକ ବିସ୍ତୀର୍ଣ୍ଣ ଗହ୍ୱର ଭିତରେ ସବୁଜ ସମୁଦ୍ର ମଧ୍ୟସ୍ଥ ଭାସମାନ ଦ୍ୱୀପପୁଞ୍ଜ ଭଳି ଖୁବ ସୁନ୍ଦର ଦେଖାଯାଏ । ଖାଦ୍ୟ ଦ୍ରବ୍ୟର ତ ଅଭାବ ନ ଥିଲା । ତେଣୁ ଗ୍ରାମବାସୀଙ୍କ ଦେହରେ ସ୍ୱାସ୍ଥ୍ୟ ଓ ଶକ୍ତି ପୂର୍ଣ୍ଣ ରହିଥିଲା । ସବୁରି ମନରେ ପ୍ରୀତି ଆଉ ସନ୍ତୋଷ ଭରି ରହିଥିଲା । ବହୁ

ଜନାକୀର୍ଣ୍ଣ ଗ୍ରାମରେ କୃଷି ବ୍ୟତୀତ ଲୋକେ ସାନ ସାନ ଶିଳ୍ପ ବାଣିଜ୍ୟରେ ମଧ୍ୟ ନିଯୁକ୍ତ ରହୁଥିଲେ । କାଳର ବିପୁଳ ପରିବର୍ତ୍ତନ ସତ୍ତ୍ୱେ କାମାର-ପୁକୁର ଗ୍ରାମରେ ଆଜି ମଧ୍ୟ ସେହି ପୂର୍ବ ଗୌରବର ଚିହ୍ନ ବହୁ ଅଂଶରେ ବିଦ୍ୟମାନ ଥିବାର ଜଣେ ଲକ୍ଷ୍ୟ କରିପାରିବ । ଏବେ ମଧ୍ୟ ସେ ଗାଁରେ ଆନନ୍ଦ ଉତ୍ସବର ନିତାନ୍ତ ଅଭାବ ନାହିଁ । ଚୈତ୍ର ମାସରେ ଅନୁଷ୍ଠିତ ହୁଏ ମନସା ପୂଜା ଓ ଶିବଗାଜନଉତ୍ସବ । ବୈଶାଖ ଜ୍ୟେଷ୍ଠ ମାସଯାକ ଚାଲେ ଚବିଶି ପ୍ରହରୀ ହରିନାମ ସଂକୀର୍ତ୍ତନ ମହୋତ୍ସବ । ଏବେ ମଧ୍ୟ ପ୍ରତି ଶନିବାର ମଙ୍ଗଳ-ବାର ଦିନ ଗାଁରେ ହାଟ ବସେ । ପାଖ ଆଖ ଗାଁମାନଙ୍କରୁ ଲୋକେ ସୂତା, ଲୁଗା, ଶାଢ଼ୀ, ଗାମୁଛା, ହାଣ୍ଡି, କଳସୀ, କୁଲା, ଚୁଙ୍ଗୁଡ଼ି, ମଶିଣା, ଚଟେଇ ପ୍ରଭୃତି ନିତ୍ୟଦିନିଆ ବ୍ୟବହାର୍ଯ୍ୟ ବସ୍ତୁମାନ ଆଣି କିଣାବିକା କରନ୍ତି । କାମାରପୁକୁରର ଆଉ ଗୋଟିଏ ପ୍ରସିଦ୍ଧି ହେଉଛି—ଏଠାରେ ଚମତ୍କାର ଜିଲିପି ମିଠାଇ ଓ ନବାତ ମିଶ୍ରି ପ୍ରସ୍ତୁତ ହୋଇଥାଏ । ଅଧିକନ୍ତୁ ଆବ୍ଲୁସ୍ କାଠରେ ଚମତ୍କାର ହୁକ୍କା ତିଆରି କରି ବଢ଼େଇମାନେ କଲିକତା ଚାଲାଣ କରି ବେଶ୍ ଦୁଇପଇସା ରୋଜଗାର କରିଥାନ୍ତି ।

କାମାରପୁକୁରରେ ସାନ ବଡ଼ ସବୁ ପ୍ରକାର ଜାତିଙ୍କର ବସତି । ଶ୍ରେଷ୍ଠ ବଡ଼ ଅନେକ ପୁଷ୍କରିଣୀ ମଧ୍ୟ ରହିଛି । ହାଲଦାର ପୋଖରୀ ହେଲା ସବୁଠାରୁ ବଡ । ଏହିସବୁ ପୋଖରୀରେ ବିଭିନ୍ନ ଋତୁରେ ଫୁଟିଥାନ୍ତି ଧଳା, ନାଲି ଆଉ ନୀଳ କଇଁ । କେଉଁ କେଉଁ ପୋଖରୀରେ ପୁଣି ଶତଦଳ ପଦ୍ମ ଫୁଟି ଅତ୍ୟନ୍ତ ମନୋହର ଦିଶେ । ଇଟାରେ ତିଆରି ବହୁ କୋଠାଘର ଓ ସମାଧି-ମନ୍ଦିରର ମଧ୍ୟ ଅଭାବ ନାହିଁ । ଗାଁର ଈଶାନ ଆଉ ବାୟୁ କୋଣରେ 'ବୁଧୁଇ ମୋଡ଼ଲ' ଓ 'ଭୂତୀର୍ ଖାଲ' ନାମରେ ଦୁଇଟି ଶ୍ମଶାନ ମଧ୍ୟ ରହିଛି । ଏପଟେ ଅଗ୍ନି କୋଣରେ ଗଡ଼ମାନ୍ଦାରଣର ଭଗ୍ନ ତୋରଣ ଓ ସ୍ତୁପ ଆଦି ସାଙ୍ଗକୁ ଅନତିଦୂରରେ ଶୈଳେଶ୍ୱର ମହାଦେବଙ୍କ ମନ୍ଦିର ମାନବ-ଜୀବନର କ୍ଷଣଭଙ୍ଗୁରତା ସୂଚାଇଥାଏ ଏବଂ ପଠାଣ ରାଜତ୍ୱକାଳୀନ ଏହିସବୁ ଅଞ୍ଚଳର ବିଶେଷତ୍ୱ ମଧ୍ୟ ପ୍ରଦର୍ଶନ କରିଥାଏ । କାମାରପୁକୁର ଗ୍ରାମଟି ଘନ-ପଲ୍ଲବସମାଚ୍ଛନ୍ନ ଓ ସ୍ନିଗ୍ଧଛାୟାନିବିଡ଼ । ଏହାର ଉତ୍ତର ପଶ୍ଚିମ ପ୍ରାନ୍ତରେ

'ଭୂତୀର୍ ଖାଲ' ନାମ୍ନୀ କ୍ଷୁଦ୍ର ପୟୋଧାରଟିଏ ସର୍ପିଳ ଗତିରେ ବହିଯାଇ ଦୂରରେ ଆମୋଦର ନଦୀ ସହିତ ମିଶିଅଛି । 'ଭୂତୀର୍ ଖାଲ' କୂଳରେ ଅବସ୍ଥିତ ହୋଇଥିବାରୁ ଏହି ଶ୍ମଶାନ ମଧ୍ୟ 'ଭୂତୀର୍ ଖାଲ' ନାମରେ ପରିଚିତ । ଏହି ଶ୍ମଶାନର ପଶ୍ଚିମ ପଟେ ଶ୍ୟାମଳ ତୃଣାଚ୍ଛାଦିତ ବିସ୍ତୀର୍ଣ୍ଣ ଗୋଚର ଭୂମି ଓ ମାଣିକ ରାଜାଙ୍କ ଦ୍ୱାରା ପ୍ରତିଷ୍ଠିତ ସର୍ବସାଧାରଣଙ୍କ ପାଇଁ ଉପଭୋଗ୍ୟ ସୁନ୍ଦର ଆମ୍ରକାନନ । ଏହି ଆମ୍ରକାନନ ରୋପଣ କରାଇଥିଲେ ଭୂରସୁବୋ ନିବାସୀ ଧନାଢ୍ୟ ଦାନଶୀଳ ମାଣିକଚନ୍ଦ୍ର ବନ୍ଦୋପାଧ୍ୟାୟ । ଲୋକେ ତାଙ୍କୁ ମାଣିକ ରାଜା ନାମରେ ଡାକୁଥିଲେ । ବର୍ତ୍ତମାନ ଅବଶ୍ୟ ସେହି ବିଶାଳ ଆମ୍ରୋଦ୍ୟାନ ଲୁପ୍ତ ପ୍ରାୟ । ତଥାପି ଦୁଇ ଗୋଟି ପୁରାତନ ଆମ୍ରତରୁ କେବଳ ସେହି ଐତିହାସିକ ଆମ୍ରବାଗିର ଶେଷ ସାକ୍ଷୀରୂପେ ଏବେ ମଧ୍ୟ ବିରାଜମାନ ।

କାମାରପୁକୁରର ପଶ୍ଚିମ ଦିଗରେ ପ୍ରାୟ ଏକ କୋଶ ଦୂରରେ ସାତବେଡ଼େ, ନାରାୟଣପୁର ଓ ଦେରେ ନାମକ ତିନୋଟି ଗ୍ରାମ ପାଖାପାଖି ଅବସ୍ଥିତ । ଏକଦା ଏହି ଗ୍ରାମଗୁଡ଼ିକ ଖୁବ୍ ସମୃଦ୍ଧିଶାଳୀ ଥିଲେ । ଆମେ ଯେଉଁ ସମୟର କଥା କହୁଛୁ ସେହି ସମୟରେ ରାମାନନ୍ଦ ରାୟ ସାତବେଡ଼େ ନାମକ ଗ୍ରାମରେ ବାସ କରୁଥିଲେ । ଏହି ଜମିଦାର ଅବଶ୍ୟ ବିଶେଷ ଧନବନ୍ତ ନ ଥିଲେ । କିନ୍ତୁ ସେ ଥିଲେ ଉତ୍କଟଭାବେ ପ୍ରଜାପୀଡ଼କ । ପ୍ରାୟ ଦେଢ଼ ଶହ ବର୍ଷ ପୂର୍ବେ ମଧ୍ୟବିତ୍ତ ଅବସ୍ଥାପନ୍ନ ଗୋଟିଏ ଧର୍ମନିଷ୍ଠ ବ୍ରାହ୍ମଣ ପରିବାର ଦେରେ ଗ୍ରାମରେ ବାସ କରୁଥିଲେ । ଏମାନେ ଥିଲେ ସଦାଚାରୀ, କୁଳୀନ ଏବଂ ଭଗବାନ ଶ୍ରୀରାମଚନ୍ଦ୍ରଙ୍କ ଉପାସକ । ସେହି ବଂଶରେ ଶ୍ରୀଯୁକ୍ତ ମାଣିକରାମ ଚଟ୍ଟୋପାଧ୍ୟାୟଙ୍କର ତିନି ପୁତ୍ର ଓ ଗୋଟିଏ କନ୍ୟା । ସେମାନଙ୍କ ମଧ୍ୟରୁ ଜ୍ୟେଷ୍ଠ କ୍ଷୁଦିରାମ ସମ୍ଭବତଃ ୧୭୭୫ ଖ୍ରୀଷ୍ଟାବ୍ଦରେ ଜନ୍ମ ଗ୍ରହଣ କରିଥିଲେ । ତା'ପରେ କନ୍ୟାଟିଏ ଜାତ ହୋଇଥିଲା ରାମଶୀଳା ଏବଂ ଏହି କନ୍ୟା ତଳକୁ ଦୁଇଟି ପୁତ୍ର ନିଧିରାମ ଓ କାନାଇରାମ ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ବଡ଼ ପୁଅ କ୍ଷୁଦିରାମଙ୍କର ସ୍ୱଭାବରେ ସତ୍ୟନିଷ୍ଠା, ସନ୍ତୋଷ, କ୍ଷମା ଏବଂ ତ୍ୟାଗ ପ୍ରଭୃତି ସଦ୍‌ବ୍ରାହ୍ମଣ-ସୁଲଭ

ମନୋଭାବ ବର୍ଣ୍ଣନା କରିହେବ ନାହିଁ । ଈର୍ଷାଦ୍ୱେଷପୂର୍ଣ୍ଣ ଏହି ସଂସାର ସେହି ଦିନ ସେମାନଙ୍କ ନିକଟରେ ଅନ୍ଧତମସାବୃତ ବିକଟ ଶ୍ମଶାନତୁଲ୍ୟ ବୋଧ ହୋଇଥିଲା । ଦୁଃଖଦୁର୍ଦ୍ଦିନରେ ପଡ଼ିଲେ ଯାଇ ମନୁଷ୍ୟ ଏହି ସଂସାରର ଅସାରତା ଓ ଅନିତ୍ୟତା ସମ୍ୟକ୍ ଉପଲବ୍ଧି କରେ । ଅତଏବ ଶ୍ରୀଯୁକ୍ତ କ୍ଷୁଦିରାମଙ୍କ ପ୍ରାଣରେ ଯେ ଏ ପରିସ୍ଥିତିରେ ବୈରାଗ୍ୟ ଜାତ ହେବ ଏଥିରେ ଆଉ ବିଚିତ୍ରତା ବା କ'ଣ ଅଛି ? ବର୍ତ୍ତମାନଠାରୁ ସେ ଶ୍ରୀରଘୁବୀରଙ୍କ ହସ୍ତରେ ପୂର୍ଣ୍ଣଭାବେ ଆତ୍ମସମର୍ପଣପୂର୍ବକ ସଂସାରର ପୁନରାୟ ଉନ୍ନତି ସାଧନରେ ଉଦାସୀନ ହୋଇ ଶ୍ରୀଭଗବାନଙ୍କ ସେବାପୂଜାରେ ହିଁ ଦିନ କାଟିବାକୁ ଲାଗିଲେ । ଏହି ସମୟରେ ଦିନେ ଏପରି ଏକ ଘଟଣା ଘଟିଲା, ଯାହା-ଫଳରେ କି କ୍ଷୁଦିରାମଙ୍କ ଧର୍ମବିଶ୍ୱାସ ଅଧିକତର ଗମ୍ଭୀର ହୋଇ ଉଠିଲା । କାର୍ଯ୍ୟବଶତଃ ଦିନେ ସେ ଅନ୍ୟ ଗୋଟିଏ ଗ୍ରାମକୁ ଯାଇଥିଲେ । ସେଠାରୁ ଫେରିଲାବେଳେ ବାଟରେ କ୍ଳାନ୍ତ ହୋଇ ସେ ଗୋଟିଏ ବୃକ୍ଷ ତଳେ ବିଶ୍ରାମ ନେଲେ । ସେଠାରେ ତାଙ୍କୁ ସଙ୍ଗେ ସଙ୍ଗେ ନିଦ ମଧ୍ୟ ହୋଇଗଲା । ସେହି ନିଦ୍ରାବେଶରେ ସେ ସ୍ୱପ୍ନ ଦେଖିଲେ—ତାଙ୍କର ଅଭୀଷ୍ଟ ଦେବ ନବଦୂର୍ବାଦଳ-ଶ୍ୟାମତନୁ ଭଗବାନ ଶ୍ରୀରାମଚନ୍ଦ୍ର ଗୋଟିଏ ଦିବ୍ୟ ବାଳକରୂପରେ ତାଙ୍କ ସମ୍ମୁଖରେ ଉପସ୍ଥିତ ହୋଇଛନ୍ତି ଏବଂ କହୁଛନ୍ତି, "ହେଇ ସେହି ସ୍ଥାନରେ ମୁଁ ଅନେକ ଦିନ ହେଲା ଅଯତ୍ନ-ଅନାହାରରେ ପଡ଼ିଛି । ମୋତେ ତୋର ଘରକୁ ନେଇ ଚାଲ । ତୋର ସେବା ଗ୍ରହଣ କରିବା ଲାଗି ମୋର ଅତ୍ୟନ୍ତ ଅଭିଳାଷ ହୋଇଛି ।" କ୍ଷୁଦିରାମଙ୍କ ନିଦ ଭାଙ୍ଗିଗଲା । ସେହି କମ୍ପିତ ହୃଦୟରେ ଯେଉଁ ସ୍ଥାନଟିର ନିର୍ଦ୍ଦେଶ ସ୍ୱପ୍ନରେ ପାଇଥିଲେ, ସେ ସ୍ଥାନକୁ ଯାଇ ଦେଖିଲେ ଯେ ଗୋଟିଏ ସୁନ୍ଦର ଶାଳଗ୍ରାମ ଶିଳା ରହିଛି ଓ ତା' ଉପରେ ଗୋଟିଏ ନାଗସାପ ଫଣା ଟେକି ରହିଛି । ତାଙ୍କୁ ଦେଖିବା ମାତ୍ରେ ସାପଟି ପଳାଇଗଲା । ଆନନ୍ଦ-ବିହ୍ୱଳ ଗଦ୍‌ଗଦ୍ କଣ୍ଠରେ କ୍ଷୁଦିରାମ ଚିତ୍କାର କରି ଉଠିଲେ, "ଜୟ ରଘୁବୀର, ଜୟ ରଘୁବୀର !" ବାରମ୍ବାର ନମସ୍କାର-ପୂର୍ବକ ଶିଳାଟିକୁ ତଳୁ ଉଠାଇ ସେ ବାରମ୍ବାର ମସ୍ତକରେ ଲଗାଇ ସାଙ୍ଗରେ ନିଜ ଘରକୁ ନେଇଗଲେ । ମନ ତାଙ୍କର ଆନନ୍ଦ ଓ ବିସ୍ମୟରେ ଅଧୀର

ହୋଇ ଉଠୁଥାଏ । ଘରେ ପହଞ୍ଚି ସେ ଶାସ୍ତ୍ରବିଧି ଅନୁସାରେ ଶିଳାଟିକୁ ସଂସ୍କାର କଲେ ଏବଂ ଗୃହଦେବତାରୂପେ ପ୍ରତିଷ୍ଠା କରି ନିତ୍ୟପୂଜା କରିବାକୁ ଲାଗିଲେ ।

ଦିନ ପରେ ଦିନ, ମାସ ପରେ ମାସ ଏହିପରିଭାବେ ଦୁଇତିନି ବର୍ଷ ଅତିବାହିତ ହୋଇଗଲା । ଏହି ଦୁଇତିନିବର୍ଷର କଠୋର ଶିକ୍ଷା ପ୍ରଭାବରେ କ୍ଷୁଦିରାମଙ୍କ ହୃଦୟରେ ଯେଉଁ ଶାନ୍ତି, ସନ୍ତୋଷ ଓ ଈଶ୍ୱର-ନିର୍ଭରତା ନିରନ୍ତର ପ୍ରବାହିତ ହେଲା, ତାହା ଖୁବ୍ କମ୍ ଲୋକଙ୍କ ଭାଗ୍ୟରେ ଘଟିଥାଏ । ତାଙ୍କର ମନ ସ୍ୱାଭାବିକଭାବେ ଅନ୍ତର୍ମୁଖୀ ହୋଇଗଲା । ପ୍ରତିଦିନ ସେ ଡାଲିଟିଏ ଧରି ଠାକୁରଙ୍କ ଲାଗି ଫୁଲ ତୋଳିବାକୁ ଯାଆନ୍ତି । ସେତେବେଳେ ତାଙ୍କର ବୋଧହୁଏ, ଯେପରିକି ତାଙ୍କର ଆରାଧ୍ୟା ଶୀତଳା ଦେବୀ ନାଲି ଶାଢ଼ୀଟିଏ ପିନ୍ଧି ନାନାଦି ଅଳଙ୍କାରଭୂଷିତା ଆଠବର୍ଷର କନ୍ୟାଟିଏ ଭଳି ହସି ହସି ତାଙ୍କ ସାଙ୍ଗରେ ବୁଲୁଛନ୍ତି ଏବଂ କୌଣସି ଗଛରୁ ଫୁଲ ତୋଳିବାବେଳେ ସେ ଗଛଟିର ଶାଖା ନୁଆଁଇ ଧରି ଫୁଲ ତୋଳାରେ ସହାୟତା କରୁଛନ୍ତି । ଏହିସବୁ ଦିବ୍ୟ ଦର୍ଶନରେ ତାଙ୍କର ଅନ୍ତର ବର୍ତ୍ତମାନ ସର୍ବଦା ଉଲ୍ଲାସରେ ପୂର୍ଣ୍ଣ ହୋଇରହିଲା ଏବଂ ତାଙ୍କର ମୁଖମଣ୍ଡଳରେ ସୌମ୍ୟଭାବ ପ୍ରକଟିତ ହେଲା । ତାଙ୍କର ସେହି ସୌମ୍ୟ ପବିତ୍ର ମୁଖମଣ୍ଡଳ ଦର୍ଶନ କରି ଗ୍ରାମ-ବାସୀଗଣ କ୍ରମେ ତାଙ୍କୁ ଜଣେ ଋଷିସଦୃଶ ମନେକରି ଭକ୍ତିଶ୍ରଦ୍ଧା ପ୍ରଦର୍ଶନ କରିବାକୁ ଲାଗିଲେ । ଏଣେ ତଦୀୟ ଧର୍ମପତ୍ନୀ ଶ୍ରୀମତୀ ଚନ୍ଦ୍ରାଦେବୀ ମଧ୍ୟ ହୋଇ ଉଠିଥିଲେ ସ୍ନେହ ଓ ସରଳତାର ଏକ ସାର୍ବଜନୀନ ମାତୃମୂର୍ତ୍ତି । ତାଙ୍କର ସ୍ୱାଭାବିକ ଦୟା ଓ ପ୍ରେମପ୍ରୀତିରେ ସେ ଗ୍ରାମବାସୀଙ୍କ ହୃଦୟକୁ ବାତ୍ସଲ୍ୟ-ରସରେ ଜମକ୍ଳିତ କରି ରଖିଥିଲେ ।

ଆମ୍ଭେମାନେ ଏହା ପୂର୍ବରୁ କ୍ଷୁଦିରାମଙ୍କର ଭଉଣୀ ରାମଶୀଳା ଓ ଦୁଇଟି ସାନଭାଇ ନିଧିରାମ ଓ କାନାଇରାମ ବା ରାମକାନାଇଙ୍କ କଥା ଉଲ୍ଲେଖ କରିଛୁ । ଦେରେପୁରରେ ଅବସ୍ଥାନ କାଳରେ ସେମାନେ ସମସ୍ତେ ବିବାହ କରି ସଂସାରରେ ପ୍ରବେଶ କରିଥିଲେ । କାମାରପୁକୁରର ପ୍ରାୟ ଛଅକ୍ରୋଶ ପଶ୍ଚିମରେ ଛିଲିମପୁର ଗ୍ରାମ । ସେହି ଗ୍ରାମର ଭାଗବତ ବନ୍ଦ୍ୟୋପାଧ୍ୟାୟଙ୍କ

ସମ୍ଭବତ ରାମଶୀଳାଙ୍କର ବିବାହ ହୋଇଥିଲା ଏବଂ ତାଙ୍କର ରାମଚାନ୍ଦ ନାମରେ ପୁଅଟିଏ ଓ ହେମାଙ୍ଗିନୀ ବୋଲି କନ୍ୟାଟିଏ ଜାତ ହୋଇଥିଲେ । କ୍ଷୁଦିରାମ ହେମାଙ୍ଗିନୀଙ୍କୁ ନିଜର କନ୍ୟାଭଳି ସ୍ନେହ କରୁଥିଲେ । ବିବାହ-କାଳ ଉପସ୍ଥିତ ହେବାରୁ କାମାରପୁକୁରର ପ୍ରାୟ ଅଢ଼େଇକୋଶ ଉତ୍ତର ପଶ୍ଚିମରେ ସିହଡ଼ ଗ୍ରାମର କୃଷ୍ଣଚନ୍ଦ୍ର ମୁଖୋପାଧ୍ୟାୟଙ୍କୁ ସ୍ୱୟଂ ସମ୍ପ୍ରଦାନ କରିଥିଲେ । ଏହି ହେମାଙ୍ଗିନୀଙ୍କଠାରୁ ଯଥାକ୍ରମେ ଚାରୋଟି ପୁଅ ଜାତ ହୋଇଥିଲେ—ରାଘବ, ରାମରତନ, ହୃଦୟରାମ ଓ ରାଜାରାମ । କ୍ଷୁଦିରାମଙ୍କ ଅନ୍ୟତମ ଭାଇ ନିଧି-ରାମଙ୍କର କୌଣସି ସନ୍ତାନସନ୍ତତି ଥିଲେ କି ନାହିଁ—ତାହା ଆମ୍ଭମାନଙ୍କୁ ଜଣା ନାହିଁ ; କିନ୍ତୁ ସର୍ବକନିଷ୍ଠ କାନାଇରାମଙ୍କର ରାମତାରକ ଓରଫ୍ ହଳଧାରୀ ଓ କାଳିଦାସ ନାମରେ ଦୁଇପୁଅ ଜାତ ହୋଇଥିଲେ ।

ଭଉଣୀ ରାମଶୀଳାଙ୍କ ପୁଅ ରାମଚାନ୍ଦ ବନ୍ଦୋପାଧ୍ୟାୟ ମେଦିନୀପୁରରେ ମୁକ୍ତାର କରି ବେଶ୍ ଦୁଇପଇସା ଉପାର୍ଜନ କରୁଥିଲେ ଏବଂ କ୍ଷୁଦିରାମ, ନିଧିରାମ ଓ କାନାଇରାମଙ୍କୁ ମାସିକ କିଛି ଅର୍ଥ ସାହାଯ୍ୟ ମଧ୍ୟ କରୁଥିଲେ । କ୍ଷୁଦିରାମ ମଧ୍ୟେ ମଧ୍ୟେ ଭଣଜାକୁ ଦେଖିବା ପାଇଁ ମେଦିନୀପୁର ଯାଉଥିଲେ । ଥରେ ସେ ମେଦିନୀପୁର ଯିବା ପଥରେ ପ୍ରାୟ ଦଶଘଣ୍ଟା ପର୍ଯ୍ୟନ୍ତ ଅବିଶ୍ରାନ୍ତ ଚାଲିଚାଲି ଗୋଟିଏ ଗ୍ରାମରେ ପହଞ୍ଚିଲେ ଏବଂ ସେଠାରେ ଦେଖିଲେ ବହୁତ ବେଲଗଛ ନୂଆ ସବୁଜ ପତ୍ରରାଜିରେ ପରିପୂର୍ଣ୍ଣ । ସେହି ଦୃଶ୍ୟ ଦେଖି ସେ ମେଦିନୀପୁର ଯିବା କଥା ଭୁଲିଗଲେ । ସେହି ଗ୍ରାମରୁ ଗୋଟିଏ ନୂଆ ଟୋକେଇ ଓ ଗାମୁଛା କିଣି ସେ ଗଛରୁ କଅଁଳିଆ ବେଲପତ୍ରଗୁଡ଼ିଏ ତୋଳି ଟୋକେଇଟି ପୂର୍ଣ୍ଣ କଲେ ଓ ଓଦା ଗାମୁଛାଟି ତା' ଉପରେ ଘୋଡ଼ାଇ ଅପରାହ୍ଣ ପ୍ରାୟ ତିନଟାବେଳେ କାମାରପୁକୁରଠାରେ ଆସି ପହଞ୍ଚିଲେ । ଘରେ ପହଞ୍ଚି କ୍ଷୁଦିରାମ ସ୍ନାନ ସମାପନପୂର୍ବକ ଏହି ବେଲପତ୍ରତକ ନେଇ ମହାନନ୍ଦରେ ମହାଦେବ ଓ ଶୀତଳାଦେବୀଙ୍କର ବହୁ ସମୟ ପର୍ଯ୍ୟନ୍ତ ପୂଜା କଲେ । ପରଦିନ ସକାଳେ ପୁନର୍ବାର ମେଦିନୀପୁର ଯାତ୍ରା କଲେ ।

କ୍ରମେ କାମାରପୁକୁରରେ କ୍ଷୁଦିରାମଙ୍କର ଛଅବର୍ଷ ଅତିବାହିତ ହେବାକୁ ଲାଗିଲା । ସେତେବେଳକୁ ତାଙ୍କ ପୁଅ ରାମକୁମାରଙ୍କୁ

ଷୋଳ ବର୍ଷ ଏବଂ କନ୍ୟା କାତ୍ୟାୟିନୀଙ୍କୁ ଏଗାର ବର୍ଷ । କନ୍ୟାଟି ବିବାହଯୋଗ୍ୟା ହେବାର ଦେଖି ସେ ବର୍ତ୍ତମାନ ପାତ୍ର ଅନୁସନ୍ଧାନରେ ରହିଲେ ଏବଂ ଯଥାସମୟରେ ସେ କାମାରପୁକୁରର ଉତ୍ତରପଶ୍ଚିମରେ ଏକ କ୍ରୋଶ ଦୂରରେ ଅବସ୍ଥିତ ଆନୁଡ଼ ଗ୍ରାମର କେନାରାମ ବନ୍ଦ୍ୟୋପାଧ୍ୟାୟଙ୍କ ସହିତ କନ୍ୟାକୁ ବିବାହ ଦେଇ କେନାରାମଙ୍କର ଭଉଣୀ ସହିତ ନିଜ ପୁତ୍ର ରାମକୁମାରଙ୍କର ଉଦ୍‌ବାହ କାର୍ଯ୍ୟ ସମ୍ପନ୍ନ କଲେ । ରାମକୁମାର ସେତେବେଳେ ନିକଟବର୍ତ୍ତୀ ଗ୍ରାମର ଚଉପାଢ଼ୀରେ ସଂସ୍କୃତ ବ୍ୟାକରଣ ଓ ସାହିତ୍ୟ ପାଠ ସମାପ୍ତ କରି ସ୍ମୃତିଶାସ୍ତ୍ର ଅଧ୍ୟୟନ କରୁଥିଲେ । କ୍ରମେ ଆଉ ତିନିଗୋଟିବର୍ଷ ମଧ୍ୟ ଅତିକ୍ରାନ୍ତ ହୋଇଗଲା ଏବଂ ଏହି ସମୟ ମଧ୍ୟରେ ରାମକୁମାର ସ୍ମୃତିଶାସ୍ତ୍ର ଅଧ୍ୟୟନ ସମାପ୍ତ କରି ସଂସାରର ଆର୍ଥିକ ଉନ୍ନତିକଳ୍ପେ ଯଥାସାଧ୍ୟ ସାହାଯ୍ୟ କରିବାରେ ପ୍ରବୃତ୍ତ ହେଲେ । ଏହାର କିଛିକାଳ ପରେ ୧୮୨୪ ଖ୍ରୀଷ୍ଟାବ୍ଦରେ ଶ୍ରୀଯୁକ୍ତ କ୍ଷୁଦିରାମ ସେତୁବନ୍ଧ ରାମେଶ୍ୱର ଦର୍ଶନ ଉଦ୍ଦେଶ୍ୟରେ ପଦବ୍ରଜରେ ଗମନ କଲେ । ସେହି ପଦଯାତ୍ରାରେ ଦାକ୍ଷିଣାତ୍ୟର ତୀର୍ଥସକଳ ମଧ୍ୟ ପର୍ଯ୍ୟଟନ କଲେ । ତୀର୍ଥପର୍ଯ୍ୟଟନ ଶେଷ କରି ପ୍ରାୟ ବର୍ଷକପରେ ସେ କାମାରପୁକୁରକୁ ଫେରି ଆସିଲେ । ସେହି ସେତୁବନ୍ଧଠାରୁ ସେ ସାଙ୍ଗରେ ଗୋଟିଏ ବାଣଲିଙ୍ଗ ମଧ୍ୟ ଆଣିଥିଲେ । ଘରେ ତାଙ୍କୁ ପ୍ରତିଷ୍ଠା କରି ସେ ପ୍ରତିଦିନ ପୂଜା କଲେ । ଏହି ସମୟରେ ବହୁକାଳ ପରେ ଶ୍ରୀମତୀ ଚନ୍ଦ୍ରାଦେବୀ ପୁନର୍ବାର ଅନ୍ତଃସତ୍ତ୍ୱା ହୋଇ ୧୮୨୬ ଖ୍ରୀଷ୍ଟାବ୍ଦରେ ଗୋଟିଏ ପୁତ୍ର ପ୍ରସବ କଲେ । ରାମେଶ୍ୱର ତୀର୍ଥରୁ ପ୍ରତ୍ୟାବର୍ତ୍ତନ କରି ଏହି ପୁତ୍ରଟି ଲାଭକରିଛନ୍ତି ବୋଲି କ୍ଷୁଦିରାମ ପୁଅଟିର ନାମ ରଖିଲେ ରାମେଶ୍ୱର ।

ଏହି ଘଟଣା ପରେ ପୁଣି ଆଠବର୍ଷ ବିତିଗଲା । କାମାରପୁକୁରର ଏହି ଦରିଦ୍ର ସଂସାରର ଜୀବନପ୍ରବାହରେ ଇତି ମଧ୍ୟରେ ଆଉକିଛି ଉଲ୍ଲେଖଯୋଗ୍ୟ ଘଟଣା ଘଟି ନାହିଁ । ଏହାର ଭିତରେ ରାମକୁମାର ସ୍ମୃତିଶାସ୍ତ୍ରର ବିଧାନ ଦେଇ ଏବଂ ଶାନ୍ତି-ସ୍ୱସ୍ତ୍ୟୟନାଦି କର୍ମ କରି ବର୍ତ୍ତମାନ କିଛି ଉପାର୍ଜନ କଲେଣି; ସୁତରାଂ ବର୍ତ୍ତମାନ ସଂସାରରେ ଆଉ ପୂର୍ବଭଳି କିଛି କଷ୍ଟ ନାହିଁ । ଶୁଣାଯାଏ, ଶାନ୍ତି-ସ୍ୱସ୍ତ୍ୟୟନାଦି ବିଷୟରେ ରାମକୁମାର ଦୈବୀଶକ୍ତି ଲାଭ

କରିଥିଲେ ଏବଂ ଭବିଷ୍ୟଦ୍‌-ବକ୍ତା ହିସାବରେ ମଧ୍ୟ ଏ ଅଞ୍ଚଳରେ ତାଙ୍କର କିଛି ଖ୍ୟାତି ହୋଇଥିଲା ।

୧୮୩୫ ମସିହାରେ କ୍ଷୁଦିରାମଙ୍କ ଅନ୍ତରରେ ତୀର୍ଥଦର୍ଶନର ପ୍ରବଳ ଇଚ୍ଛା ପୁନଃ ଜାଗ୍ରତ ହେଲା । ତାଙ୍କୁ ସେତେବେଳେ ଷାଠିଏ ବର୍ଷ ବୟସ । ତଥାପି ସେ ପଦବ୍ରଜରେ ଗୟାଧାମ ଯିବାକୁ ସଂକଳ୍ପ କଲେ । ସେହି ବର୍ଷର ପ୍ରଥମଭାଗରେ ତୀର୍ଥଦର୍ଶନରେ ବହିର୍ଗତ ହୋଇ ପ୍ରଥମେ ବାରାଣସୀ ଓ ତା' ପରେ ଗୟାଧାମ ଦର୍ଶନ କଲେ । କାଶୀଧାମରେ ବିଶ୍ୱନାଥଙ୍କୁ ଦର୍ଶନ କରିସାରି ଯେତେବେଳେ ସେ ଗୟାଧାମରେ ପହଞ୍ଚିଲେ ସେତେବେଳେ ଚୈତ୍ରମାସ । ପ୍ରାୟ ମାସେକାଳ ସେଠାରେ ଅବସ୍ଥାନ କରି ସେ ଯଥାବିଧି କ୍ଷେତ୍ରକାର୍ଯ୍ୟ-ସମସ୍ତ ଅନୁଷ୍ଠାନ କରିସାରି ପରିଶେଷରେ ଗଦାଧରଙ୍କ ଶ୍ରୀପାଦପଦ୍ମରେ ପିଣ୍ଡ-ପ୍ରଦାନ କଲେ । ପିତୃଋଣ ଯଥାସାଧ୍ୟ ପରିଶୋଧ କରି ସେ ଆଜି ନିଶ୍ଚିନ୍ତ ହେଲେ । କ୍ରମେ ରାତି ହେଲା । କ୍ଷୁଦିରାମ ପ୍ରାର୍ଥନା ସମାପନାନ୍ତେ ଶଯ୍ୟା ଗ୍ରହଣ କଲେ । ପରେ ସ୍ୱପ୍ନ ଦେଖିଲେ ସତେକି ସେ ପୁନର୍ବାର ଶ୍ରୀମନ୍ଦିରରେ ଗଦାଧରଙ୍କ ଶ୍ରୀପାଦପଦ୍ମ ସମ୍ମୁଖରେ ପିତୃପୁରୁଷମାନଙ୍କ ଉଦ୍ଦେଶ୍ୟରେ ପିଣ୍ଡ ପ୍ରଦାନ କରୁଛନ୍ତି ଏବଂ ପିତୃପୁରୁଷମାନେ ଜ୍ୟୋତିର୍ମୟ ଶରୀରରେ ସେହି ପିଣ୍ଡ ଆନନ୍ଦରେ ଗ୍ରହଣ କରି ତାଙ୍କୁ ଆଶୀର୍ବାଦ କରୁଛନ୍ତି । ବହୁକାଳ ପରେ ସେମାନଙ୍କୁ ଦର୍ଶନ କରି ଭକ୍ତିଗଦ୍‌ଗଦ ଚିତ୍ତରେ ରୋଦନ କରି କରି ସେ ସେମାନଙ୍କର ପାଦସ୍ପର୍ଶ କରି ପ୍ରଣାମ କରିବାକୁ ଲାଗିଲେ । ଠିକ୍ ଏହି ସ୍ୱପ୍ନ ପରେ ପରେ ସେ ପୁଣି ଦେଖିଲେ ଯେ ଅଦୃଷ୍ଟପୂର୍ବ ଦିବ୍ୟ ଜ୍ୟୋତିରେ ମନ୍ଦିର ପୂର୍ଣ୍ଣ ହୋଇଛି ଏବଂ ପିତୃପୁରୁଷଗଣ ଅତ୍ୟନ୍ତ ସଂଭ୍ରମରେ ସଯତ୍ନଭାବେ ଦୁଇପାର୍ଶ୍ୱରେ କର ଯୋଡ଼ି ଦଣ୍ଡାୟମାନପୂର୍ବକ ମନ୍ଦିର ମଧ୍ୟରେ ବିଚିତ୍ର ସିଂହାସନରେ ସୁଖାସୀନ ଏକ ଅଦ୍ଭୁତ ପୁରୁଷଙ୍କର ଉପାସନା କରୁଛନ୍ତି । ସେ ପୁଣି ଦେଖିବାକୁ ପାଇଲେ ଯେ ନବଦୂର୍ବାଦଳଶ୍ୟାମ ଜ୍ୟୋତିର୍ମଣ୍ଡିତତନୁ ଏହି ପୁରୁଷ ସ୍ନିଗ୍ଧପ୍ରସନ୍ନ ଦୃଷ୍ଟିରେ ତାଙ୍କ ଆଡ଼କୁ ଚାହିଁ ହାସ୍ୟମୁଖରେ ତାଙ୍କୁ ନିକଟକୁ ଆସିବା ଲାଗି ଇଙ୍ଗିତ ଦେଉଛନ୍ତି । ଏହା ଦେଖି କ୍ଷୁଦିରାମ ଯନ୍ତ୍ର-ପରିଚାଳିତବତ୍ ସେହି ଜ୍ୟୋତିର୍ମୟ ମୂର୍ତ୍ତି ସମ୍ମୁଖକୁ ଆଗେଇଗଲେ ଏବଂ

ଭକ୍ତବତ୍ସଳ ଚରଣରେ ସାଷ୍ଟାଙ୍ଗ ପ୍ରଣାମ ହୋଇ ଭକ୍ତ ହୃଦୟାବେଗରେ କେତେପ୍ରକାର ସ୍ତୁତି ଆଉ ବନ୍ଦନା କରିବାକୁ ଲାଗିଲେ । ତାଙ୍କର ସ୍ତବ ଓ ପ୍ରାର୍ଥନାରେ ସେହି ଦିବ୍ୟପୁରୁଷ ପରିତୁଷ୍ଟ ହୋଇ ବୀଣାନିସ୍ୟନ୍ଦି ମଧୁରସ୍ୱରରେ ତାଙ୍କୁ କହିବାକୁ ଲାଗିଲେ, "କ୍ଷୁଦିରାମ ! ତୁମର ଭକ୍ତିରେ ମୁଁ ପରମପ୍ରସନ୍ନ ହୋଇଅଛି । ଏବେ ମୁଁ ପୁତ୍ରରୂପେ ତୁମ ଗୃହରେ ଅବତୀର୍ଣ୍ଣ ହୋଇ ତୁମର ସେବା ଗ୍ରହଣ କରିବି ।" ସ୍ୱପ୍ନର ମଧ୍ୟ ଅତୀତ ଏହି କଥା ଶୁଣିବାମାତ୍ରେ ସେ ଆନନ୍ଦରେ ବିହ୍ୱଳପ୍ରାୟ ହୋଇଗଲେ । କିନ୍ତୁ ଠିକ୍ ପରମୁହୂର୍ତ୍ତରେ ତାଙ୍କର ମନେହେଲା, ମୁଁ ତ ଅତ୍ୟନ୍ତ ଦରିଦ୍ର ଅକିଞ୍ଚନ, ପ୍ରଭୁ ମୋର ପୁତ୍ର ହୋଇ ଜନ୍ମିଲେ ତାଙ୍କୁ କେଉଁଠାରେ ରଖିବି ? କ'ଣ ବା ଖାଇବାକୁ ଦେବି ? ଏହି କଥା ଭାବି ଗଭୀର ବିଷାଦରେ ବିଦୀର୍ଣ୍ଣହୃଦୟ କ୍ଷୁଦିରାମ ରୋଦନ କରିବାକୁ ଲାଗିଲେ ଏବଂ ଅଶ୍ରୁସିକ୍ତ କଣ୍ଠରେ କହିବାକୁ ଲାଗିଲେ—"ନା, ନା ପ୍ରଭୁ ! ମୋର ଏଭଳି ସୌଭାଗ୍ୟର ପ୍ରୟୋଜନ ନାହିଁ । କୃପା କରି ଆପଣ ଯେ ମୋତେ ଦର୍ଶନ ଦାନରେ କୃତାର୍ଥ କଲେ ଏବଂ ଏହି ଅମୀୟ ବାଣୀ ଶୁଣାଇଲେ, ଏହା ହିଁ ମୋ ପକ୍ଷରେ ଯଥେଷ୍ଟ । ସତକୁ ସତ ଆପଣ ମୋର ପୁତ୍ର ହୋଇ ଜନ୍ମିଲେ ମୋ ଭଳି ଦରିଦ୍ର ଆପଣଙ୍କର କ'ଣ ସେବା କରିପାରିବ ?" କିନ୍ତୁ ସେହି ଅଲୌକିକ ପୁରୁଷ କ୍ଷୁଦିରାମଙ୍କ ତୁଣ୍ଡରୁ ଏହି କରୁଣ ବଚନ ଶୁଣି ଆହୁରି ପ୍ରସନ୍ନ ହୋଇଗଲେ ଏବଂ କହିଲେ "ଭୟ ନାହିଁ କ୍ଷୁଦିରାମ ! ତୁମେ ଯାହା ପ୍ରଦାନ କରିବ, ତାହା ହିଁ ମୁଁ ତୃପ୍ତିର ସହିତ ଗ୍ରହଣ କରିବି । ମୋର ଅଭିଳାଷ ପୂରଣ କରିବା ଦିଗରେ ଆପତ୍ତି କର ନାହିଁ ।"

ବିସ୍ମିତ ସ୍ତମ୍ଭିତ ପୁଲକିତ କ୍ଷୁଦିରାମ ସହସା ନିଦ୍ରାରୁ ଜାଗି ଉଠିଲେ । ସେତେବେଳକୁ ତାଙ୍କର ସର୍ବାଙ୍ଗ ସ୍ୱେଦାକ୍ତ ହୋଇଉଠିଛି ଏବଂ ଏକ ଅନିର୍ବଚନୀୟ ଉଲ୍ଲାସରେ ତାଙ୍କ ଦେହ ଥରଥର ହୋଇ କମ୍ପୁଛି । ତାଙ୍କର ବୋଧ ହେଲା, ସତେକି ଏବେ ମଧ୍ୟ ସେହି ଦିବ୍ୟାଲୋକରେ ଏବଂ ସ୍ୱର୍ଗୀୟ ସୌରଭରେ ମନ୍ଦିରକକ୍ଷ ପରିପୂର୍ଣ୍ଣ । ଧୀରେ ଧୀରେ ତାଙ୍କର ସ୍ଥୂଳଜଗତର ଚେତନା ଫେରି ଆସିଲା । ସେ ଭାବିଲେ—ଏହି ଦିବ୍ୟସ୍ୱପ୍ନ କଦାପି ବୃଥା ହେବ ନାହିଁ । ନିଶ୍ଚୟ କୌଣସି ମହାପୁରୁଷ ତାଙ୍କ ଗୃହରେ ଶୀଘ୍ର ଜନ୍ମପରିଗ୍ରହ

କରିବେ । ଏହାପରେ କ୍ଷୁଦିରାମ ଭାବିଲେ ଯେ ଏହି ଅଦ୍ଭୁତ ସ୍ୱପ୍ନର ସଫଳତା ପରୀକ୍ଷା ନ କରି ତା' ପୂର୍ବରୁ କାହା ନିକଟରେ ଏ ସ୍ୱପ୍ନକଥା ପ୍ରକାଶ କରିବେ ନାହିଁ । ମନେ ମନେ ଏହା ସଂକଳ୍ପ କରି କେତେ ଦିନପରେ ସେ ଗୟାଧାମରୁ ବିଦାୟ ନେଲେ ଏବଂ ବୈଶାଖ ମାସ ବେଳକୁ କାମାରପୁକୁରକୁ ଫେରି ଆସିଲେ ।

# ଦ୍ୱିତୀୟ ଅଧ୍ୟାୟ

## ଜନ୍ମ ଓ ବାଲ୍ୟଲୀଳା

ଗୟାଧାମରୁ ଫେରି କ୍ଷୁଦିରାମ ଲକ୍ଷ୍ୟ କଲେ ପତ୍ନୀ ଚନ୍ଦ୍ରାଦେବୀଙ୍କ ସ୍ୱଭାବରେ ଅଦ୍ଭୁତ ପରିବର୍ତ୍ତନ ଘଟିଛି । ସେ ଦେଖିଲେ—ତାଙ୍କର ମାନବୀ ପ୍ରକୃତି ଭିତରେ ସତେକି ଦେବୀତ୍ୱ ପ୍ରକଟିତ ହୋଇଉଠିଛି । କେଉଁଠାରୁ ଏକ ସାର୍ବଜନୀନ ପ୍ରେମଭାବ ଆସି ତାଙ୍କର ହୃଦୟ ଅଧିକାର କରିବସିଛି, ଆଉ ଏହି ସଂସାରର ବାସନାମୟ କୋଳାହଳଠାରୁ ସତେକି ତାଙ୍କର ମନ ଦୂରେଇ ଯାଇ କାହିଁ କେଉଁ ସୁଉଚ୍ଚ ଚେତନାଭୂମିରେ ଆରୂଢ଼ ହୋଇଛି । ସରଳପ୍ରାଣା ଚନ୍ଦ୍ରା ସ୍ୱାମୀଙ୍କ ନିକଟରେ କେଉଁ କଥା ଲୁଚେଇ ରଖନ୍ତି ନାହିଁ, ଏପରିକି ନିଜ ଚିନ୍ତାଟି ପର୍ଯ୍ୟନ୍ତ । ଗୟାଧାମରୁ ଫେରି ଆସିବା ପରେ କେତେଦିନ ଧରି କ୍ଷୁଦିରାମ ପତ୍ନୀଙ୍କ ମୁହଁରୁ ଅନେକ ଅଦ୍ଭୁତ କଥା ଶୁଣିବାକୁ ପାଇଲେ । ତାଙ୍କର ଦୀର୍ଘ ଅନୁପସ୍ଥିତି ଭିତରେ ଯାହାସବୁ ଘଟିଥିଲା ଓ ଯେଉଁସବୁ ଅଲୌକିକ ଦର୍ଶନ ଓ ଅନୁଭୂତିମାନ ଚନ୍ଦ୍ରାଦେବୀଙ୍କର ହୋଇଥିଲା, ସବୁ କଥା ସେ ଗୋଟି ଗୋଟି କରି ସ୍ୱାମୀଙ୍କୁ ଶୁଣାଇ ଦେଲେ । ଦିନେ କଥା ପ୍ରସଙ୍ଗରେ କହିଲେ— "ଶୁଣୁଚ ! ଦିନେ ଯୋଗୀମାନଙ୍କର ଶିବମନ୍ଦିର ସମ୍ମୁଖରେ ଠିଆ ହୋଇ ଧନୀ ସହିତ କଥାବାର୍ତ୍ତା କରୁଛି, ଏହି ସମୟରେ ଦେଖିଲି ମହାଦେବଙ୍କର ଶ୍ରୀଅଙ୍ଗରୁ ଦିବ୍ୟଜ୍ୟୋତି ନିର୍ଗତ ହୋଇ ମନ୍ଦିରଟି ଆଲୋକମୟ ହୋଇଉଠୁଛି । ଆଉ ପବନଭଳି ତରଙ୍ଗ ଆକାରରେ ଏହା ମୋ ଆଡ଼କୁ ଛୁଟି ଆସୁଛି । ହଠାତ୍ ସେହିସବୁ ଆଲୋକ ତରଙ୍ଗମାନ ମୋ ପାଖକୁ ଆସି ସତେକି ମୋତେ ବୁଡ଼ାଇ ପକାଇଲା । ଆଉ ପରେ ପରେ ସେସବୁ ଜ୍ୟୋତି ମୋ ଭିତରକୁ ପ୍ରବେଶ କରିଗଲା । ଭୟ ଓ ବିସ୍ମୟରେ ଅଭିଭୂତ ହୋଇ ମୁଁ ସେଠାରେ ମୂର୍ଚ୍ଛିତ ହୋଇ ପଡ଼ିଗଲି । ଧନୀ ମୋତେ ସେବା ଶୁଶ୍ରୂଷା କରି ଚେତା କରାଇଲା । ମୁଁ ତାକୁ ସବୁକଥା ଖୋଲିକରି

କହିଲି । ମୋର କିନ୍ତୁ ସେହିଦିନଠୁଁ ଧାରଣା ହେଉଛି ଯେ ସେହି ଜ୍ୟୋତି ସତେକି ମୋ ଉଦର ଭିତରେ ରହିଯାଇଛି ଆଉ ମୋର ଗର୍ଭସଞ୍ଚାର ହୋଇଛି ।"

କ୍ଷୁଦିରାମ ଗୟାଧାମରେ ନିଜର ସ୍ୱପ୍ନ କଥା ସ୍ମରଣ କରି ଏହା ରୋଗ-ଜନିତ ନୁହେଁ ବୋଲି ପତ୍ନୀଙ୍କୁ ବୁଝାଇଲେ ଏବଂ କହିଲେ, "ଦେଖ ! ଆଜିଠାରୁ ଏଭଳି ଦର୍ଶନ ଓ ଅନୁଭବ କଥା ମୋ ଛଡ଼ା ଆଉ କାହାକୁ କହିବ ନାହିଁ । ଗୟାଧାମରେ ଶ୍ରୀଗଦାଧର ମୋତେ ମଧ୍ୟ ଅଲୌକିକ ଉପାୟରେ ଜଣାଇଥିଲେ ଯେ ଆମକୁ ଆଉଥରେ ପୁତ୍ରମୁଖ ଦେଖିବାକୁ ପଡ଼ିବ ।"

ଶ୍ରୀମତୀ ଚନ୍ଦ୍ରାଦେବୀ ଦେବପ୍ରତିମ ସ୍ୱାମୀଙ୍କ ମୁହଁରୁ ଏହିଭଳି କଥା ଶୁଣି ଆଶ୍ୱସ୍ତା ହେଲେ ଏବଂ ତାଙ୍କର ଆଜ୍ଞାନୁବର୍ତ୍ତିନୀ ହୋଇ ସେହି ଦିନଠାରୁ ପୂର୍ଣ୍ଣଭାବେ ଶ୍ରୀଶ୍ରୀରଘୁବୀରଙ୍କର ମୁଖାପେକ୍ଷିନୀ ହୋଇ ଅବସ୍ଥାନ କରିବାକୁ ଲାଗିଲେ । ତା'ପରେ ଗର୍ଭବତୀ ଅବସ୍ଥାରେ ମଧ୍ୟ ଚନ୍ଦ୍ରାଦେବୀଙ୍କର ଦିବ୍ୟଦର୍ଶନ ଓ ଅଲୌକିକ ଅନୁଭୂତିମାନ ଦିନକୁ ଦିନ ବଢ଼ିବାକୁ ଲାଗିଲା । ସେ ଏହି କାଳ ମଧ୍ୟରେ ପ୍ରତିଦିନ ଦେବଦେବୀମାନଙ୍କର ଦର୍ଶନ ଲାଭ କରୁଥିଲେ । ଏହି ପ୍ରକାର ଦିନ ପରେ ଦିନ ଅତିବାହିତ ହେବାକୁ ଲାଗିଲା ଏବଂ ଶ୍ରୀଯୁକ୍ତ କ୍ଷୁଦିରାମ ଓ ତାଙ୍କର ପୂତସ୍ୱଭାବା ଗୃହିଣୀ ଶ୍ରୀଶ୍ରୀରଘୁବୀରଙ୍କର ଏକାନ୍ତ ଶରଣାପନ୍ନ ହୋଇ ମହାପୁରୁଷ ପୁତ୍ରର ମୁଖ ନିରୀକ୍ଷଣ ଆଶାରେ କାଳ କାଟିବାକୁ ଲାଗିଲେ ।

ଋତୁମାନେ ଗୋଟିକ ପରେ ଗୋଟିଏ ହୋଇ କ୍ରମେ କାମାର-ପୁକୁରକୁ ପ୍ରଦକ୍ଷିଣ କରିଗଲେ । ଶରତ ଋତୁ ପରେ ଆସିଲା ହେମନ୍ତ—ତା'ପରେ ଶୀତ ମଧ୍ୟ ଅତୀତ ହୋଇଗଲା । ଶେଷରେ ଆସିଲେ ଋତୁରାଜ ବସନ୍ତ । ଶୀତ ଓ ଗ୍ରୀଷ୍ମର ସୁଖସମ୍ମିଳନୀରେ ମଧୁମୟ ଫାଲ୍‌ଗୁନ ମାସ ସ୍ଥାବରଜଙ୍ଗମଙ୍କ ଭିତରେ ନବୀନ ପ୍ରାଣ ସଞ୍ଚାରିତ କରି ଆଜି ଷଷ୍ଠ ଦିବସରେ ଉପନୀତ ହେଲା । ଜୀବଜଗତରେ ଏକ ବିଶେଷ ଉତ୍ସାହ, ଆନନ୍ଦ ଓ ପ୍ରେମର ପ୍ରେରଣା ସର୍ବତ୍ର ଲକ୍ଷିତ ହେଲା । କ୍ରମେ ସେଦିନ ଶୁଭ ଫାଲ୍‌ଗୁନୀ ଶୁକ୍ଳା ଦ୍ୱିତୀୟା ତିଥି ଉପସ୍ଥିତ ହେଲା । ଆସନ୍ନପ୍ରସବା ଚନ୍ଦ୍ରାଦେବୀ ଗର୍ଭସ୍ଥ

ସନ୍ତାନଭାରରେ ଅତ୍ୟନ୍ତ କାତର ହେଲେ ମଧ୍ୟ ପ୍ରାଣରେ ଆଜ ଏକ ଦିବ୍ୟ ଉଲ୍ଲାସ ଅନୁଭବ କରିବାକୁ ଲାଗିଲେ । ରଘୁବୀରଙ୍କର ମଧ୍ୟାହ୍ନଭୋଗ ଏବଂ ସାନ୍ଧ୍ୟଶୀତଳାଦି କର୍ମ ପର୍ଯ୍ୟନ୍ତ ସେଦିନ ନିର୍ବିଘ୍ନରେ ସମ୍ପାଦିତ ହୋଇଗଲା । ରାତିରେ ଭୋଜନାଦି ଶେଷ କରି ଶ୍ରୀଯୁକ୍ତ କ୍ଷୁଦିରାମ ଓ ରାମକୁମାର ଶୋଇବାକୁ ଗଲେ । ଏଣେ ଧନୀ ଆସି ଚନ୍ଦ୍ରାଦେବୀଙ୍କ ସଙ୍ଗେ ଗୋଟିଏ ଘରେ ଶୋଇଲା । ରାତି ପାହିବାକୁ ଆଉ ଅଧଘଡ଼ିଏ ଥିବ କି ନାହିଁ—ଏହି ସମୟରେ ଚନ୍ଦ୍ରା-ଦେବୀଙ୍କର ପ୍ରସବପୀଡ଼ା ଆରମ୍ଭ ହୋଇଗଲା । ଧନୀ ତାଙ୍କୁ ନେଇ ଢିଙ୍କି-ଶାଳରେ ଶୁଆଇଦେଲା । ଅଳ୍ପ ସମୟ ପରେ ମାଆଙ୍କୁ ବିଶେଷ କଷ୍ଟ ନ ଦେଇ ଦିବ୍ୟକାନ୍ତି ପିଲାଟିଏ ଭୂମିଷ୍ଠ ହେଲା । ପ୍ରସୂତି ଲାଗି କିଛି ବ୍ୟବସ୍ଥା କରିବାକୁ ଧନୀ କିଛି ସମୟ ପାଇଁ ବାହାରକୁ ଯାଇ ପୁଣି ଢିଙ୍କିଶାଳକୁ ଫେରି ଆସି ଦେଖିଲା ଯେ ନାଳରକ୍ତ ମିଶା ଭୂଇଁ ଉପରେ ଖସିଯାଇ ପିଲାଟି ଧାନଉଷୁଆଁ ଚୁଲ୍ଲୀ ଭିତରେ ପଡ଼ିଛି, ଆଉ ତା' ଦେହ ମୁହଁ ପାଉଁଶ ଜୁଡ଼ୁବୁଡ଼ୁ ହୋଇଥିଲେ ମଧ୍ୟ ସେ କିଛି କନ୍ଦାକଟା ନ କରି ଚୁପ୍‌ଚାପ୍ ପଡ଼ି ରହିଛି । ତା' ଦେଖି ଧନୀ ସେହି ଚୁଲ୍ଲୀ ଭିତରୁ ବିଭୂତିଭୂଷଣ ପିଲାଟିକୁ ବାହାର କରି ପୋଛିପାଛି ଦେଇ ଦୀପ ଆଲୁଅରେ ଦେଖିଲା—ପୁଅ ନା ଝିଅ । ଦେଖିବାମାତ୍ରେ ତାର ଆଖି ଝଲସିଗଲା—ଅଦ୍ଭୁତ ସୁନ୍ଦର ପୁଅଟିଏ । ସତେ କି ଛଅମାସର ପିଲାଟିଏ । ଏହି ଭାବରେ ସେଦିନର ସେହି ପୁତଗନ୍ଧୀର ବ୍ରାହ୍ମ-ମୁହୂର୍ତ୍ତରେ ତପସ୍ୱୀ କ୍ଷୁଦିରାମଙ୍କର ଦରିଦ୍ର କୁଟୀର ଶୁଭ ଶଙ୍ଖଧ୍ୱନିରେ ପୂର୍ଣ୍ଣ ହୋଇ ମହାପୁରୁଷଙ୍କର ଶୁଭାଗମନର ବାର୍ତ୍ତା ଜଗତରେ ଘୋଷଣା କରିଥିଲା ।

କ୍ଷୁଦିରାମ ନିଜେ ଶାସ୍ତ୍ରଜ୍ଞ ଥିଲେ । ସେ ନବଜାତ ବାଳକର ଜନ୍ମଲଗ୍ନ ନିରୂପଣ କରିବାକୁ ଯାଇ ଦେଖିଲେ ଯେ ପିଲାଟି ବିଶେଷ ଶୁଭ-ଲଗ୍ନରେ ସଂସାରରେ ଭୂମିଷ୍ଠ ହୋଇଛି । ଏହି ଦିନଟି ହେଲା ୧୭୫୭ ଶକାବ୍ଦ ଫାଲ୍‌ଗୁନ ଛଅ ଦିନ—ଇଂରାଜୀ ୧୮୩୬ ଖ୍ରୀଷ୍ଟାବ୍ଦର ଫେବ୍ରୁଆରୀ ମାସ ୧୮ ତାରିଖ ଶୁକ୍ଳପକ୍ଷ ବୁଧବାର । ଏହି କାଳରେ ଶୁକ୍ଳ ଦ୍ୱିତୀୟା ତିଥି ପୂର୍ବ-ଭାଦ୍ରପଦ ନକ୍ଷତ୍ର ସହିତ ସଂଯୁକ୍ତ ହୋଇ ସଂସାରରେ ସିଦ୍ଧିଯୋଗ ଆନୟନ କରିଥିଲା । ବାଳକର ଜନ୍ମଲଗ୍ନରେ ରବି, ଚନ୍ଦ୍ର ଓ ବୁଧ ଏକତ୍ର ମିଳିତ

ରହି ଏବଂ ଶୁକ୍ର, ମଙ୍ଗଳ ଓ ଶନି ତୁଙ୍ଗସ୍ଥାନ ଅଧିକାର କରି ବାଳକଟିର ଅସାଧାରଣ ଜୀବନର ପରିଚୟସୂଚକ ହୋଇଥିଲେ । ତା'ପରେ ନବଜାତକଟିର ଜନ୍ମଜାତକ ମଧ୍ୟ ତିଆରି ହେଲା । ବିଶିଷ୍ଟ ଜ୍ୟୋତିଷମାନେ ବାଳକଟିର ଜନ୍ମକ୍ଷଣ ପରୀକ୍ଷା କରି କ୍ଷୁଦିରାମଙ୍କୁ କହିଲେ—ଜାତକରୁ ଯାହା ଜଣାପଡ଼ୁଛି, ଏହି ପିଲାଟି ଭବିଷ୍ୟତରେ ଧର୍ମବିଦ୍ ଓ ମାନନୀୟ ହୋଇଉଠିବ ଏବଂ ସର୍ବଦା ପୁଣ୍ୟକର୍ମର ଅନୁଷ୍ଠାନରେ ରତ ରହିବ—ବହୁଶିଷ୍ୟ ପରିବେଷ୍ଟିତ ହୋଇ ଦେବମନ୍ଦିରରେ ବାସ କରିବ—ଏବଂ ନବୀନ ସଂପ୍ରଦାୟ ପ୍ରବର୍ତ୍ତିତ କରି ନାରାୟଣଙ୍କର ଅଂଶସମ୍ଭୂତ ମହାପୁରୁଷ ରୂପରେ ଜଗତରେ ପ୍ରସିଦ୍ଧି ଲାଭପୂର୍ବକ ସର୍ବତ୍ର ଲୋକପୂଜ୍ୟ ହେବ ।

ଜ୍ୟୋତିଷମାନଙ୍କର ଭବିଷ୍ୟତବାଣୀ ଶୁଣି କ୍ଷୁଦିରାମଙ୍କ ମନରେ ପୂର୍ବୋକ୍ତ ଗୟାଧାମ ବାସକାଳୀନ ଦିବ୍ୟସ୍ୱପ୍ନଟି ଭାସିଉଠିଲା । ସେହି ଅପୂର୍ବ ସ୍ୱପ୍ନଟି ଯେ ସତ୍ୟ ହେବାକୁ ଯାଉଛି—ଏହା ଭାବିବାମାତ୍ରେ ତାଙ୍କର ଅନ୍ତର ଈଶ୍ୱରଙ୍କ ପ୍ରତି ପରମ କୃତଜ୍ଞତାରେ ଆପ୍ଲୁତ ହୋଇଗଲା । ଏହାପରେ ଶିଶୁଟିର ଯଥାବିଧି ଜାତକର୍ମ ଓ ନିଷ୍କ୍ରମଣାଦି କାର୍ଯ୍ୟ ସମ୍ପନ୍ନ ହେଲା । ଜାତକନିର୍ଦ୍ଦିଷ୍ଟ ରାଶିନାମ ଅନୁସାରେ ପିଲାଟିର ନାମ ଶମ୍ଭୁଚନ୍ଦ୍ର ବୋଲି ନିର୍ଦ୍ଧାରିତ ହେଲା । କିନ୍ତୁ ଗୟାଧାମରେ ସେ ଯେଉଁ ସ୍ୱପ୍ନ ଦେଖିଥିଲେ, ତାକୁ ସ୍ମରଣ କରି କ୍ଷୁଦିରାମ ଏହି ଦେବୋପମ ପୁତ୍ରର ନାମ ରଖିଲେ ଗଦାଧର ।

ପିଲାଟି କ୍ରମେ ଶୁକ୍ଳପକ୍ଷର ଚନ୍ଦ୍ର ଭଳି ବଢ଼ିବାକୁ ଲାଗିଲା । ପିଲାଟିର ପବିତ୍ର ସୁନ୍ଦର ମୁଖପଦ୍ମ ଦେଖିବା ମାତ୍ରେ ବାପମାଆଙ୍କର ହୃଦୟ ଅପୂର୍ବ ବାତ୍ସଲ୍ୟପ୍ରେମରେ ପୂର୍ଣ୍ଣ ହୋଇ ଯାଉଥିଲା । ଗୟାକ୍ଷେତ୍ରରେ ଦେଖିଥିବା ସ୍ୱପ୍ନ ବା ଶିବମନ୍ଦିରରେ ଦିବ୍ୟଦର୍ଶନାଦି କଥା ସେମାନେ ବିସ୍ମୃତ ହୋଇଗଲେ । ଏଣେ ଦିନୁଦିନ ପିଲାଟିର ଆକର୍ଷଣଶକ୍ତି ବଢ଼ିବାକୁ ଲାଗିଲା । ପିତାମାତାଙ୍କର ମନ ତା' ପାଖରେ ସର୍ବଦା ବାନ୍ଧିହୋଇ ରହିଲା । କେବଳ ପିତାମାତା ନୁହନ୍ତି—ପରିବାରର ସମସ୍ତେ ଏବଂ ଏପରିକି ଗାଁର ସ୍ତ୍ରୀଲୋକମାନେ ମଧ୍ୟ ପିଲାଟି ପ୍ରତି ଦିନୁଦିନ ଏକ ଅଦ୍ଭୁତ ଆକର୍ଷଣରେ ବାନ୍ଧି ହୋଇଗଲେ । ଟିକିଏ ଅବସର ପାଇଲେ ଗାଁର ସ୍ତ୍ରୀଲୋକମାନେ ଚନ୍ଦ୍ରାଦେବୀଙ୍କୁ ଦେଖିବାକୁ ଦୌଡ଼ି

ଆସୁଥିଲେ । କେହି ପଚାରିଲେ କହୁଥିଲେ—"କ'ଣ କରିବୁ କହ ! କାହିଁକି କେଜାଣି ଏହି ପିଲାଟିକୁ ସବୁବେଳେ ଦେଖିବାକୁ ଲୋଭ ହୁଏ । ଯେତେ ଦେଖିଲେ ବି ମନ ଛୁଟେ ନାହିଁ ।" ଏହିପରି ଭାବରେ ସମସ୍ତଙ୍କ ଆଦର ଯତ୍ନ ଭିତରେ ସୁଖପାଳିତ ହୋଇ ଶିଶୁଟି କ୍ରମେ ପାଞ୍ଚମାସରୁ ଅଧିକ ହେଲା । ତେଣୁ ଅନ୍ନପ୍ରାଶନର କଥା ଉଠିଲା । କ୍ଷୁଦିରାମଙ୍କ ପରମବନ୍ଧୁ ଗ୍ରାମର ଜମିଦାର ଧର୍ମଦାସ ଲାହା ଅତ୍ୟନ୍ତ ଆନନ୍ଦ ସହକାରେ କେତେକାଂଶରେ ନିଜଆଡ଼ୁ ଧନ ଖର୍ଚ୍ଚ କରି ଅନ୍ନପ୍ରାଶନର ଚମତ୍କାର ବ୍ୟବସ୍ଥା କରିଦେଲେ ।

ଦିନ ଯେତିକି ଯାଉଥାଏ, ଗଦାଧରର ବାଲ୍ୟଲୀଳା ସେତିକି ମଧୁରତର ହୋଇ ଉଠୁଥାଏ ଏବଂ ମାଆ ଚନ୍ଦ୍ରାଦେବୀଙ୍କ ହୃଦୟରେ ସେତିକି ଆନନ୍ଦ ଓ ଭୟର ପୁଣ୍ୟପ୍ରୟାଗର ସୃଷ୍ଟି ହେଉଥାଏ । ପ୍ରତିଦିନ ପ୍ରତିମୁହୂର୍ତ୍ତରେ ସେ ପୁଅର କଲ୍ୟାଣ କାମନାରେ ଜ୍ଞାତରେ ହେଉ ବା ଅଜ୍ଞାତରେ ହେଉ ଦେବ-ଦେବୀଙ୍କ ନିକଟରେ ବ୍ୟାକୁଳ ପ୍ରାର୍ଥନା ଜଣାଉଥାନ୍ତି । ତଥାପି ମଧ୍ୟ ତାଙ୍କର ମନ ନିଶ୍ଚିନ୍ତ ହେଉ ନ ଥାଏ । କ୍ରମେ ଚାରିପାଞ୍ଚବର୍ଷ ଏହିରୂପେ ଅତିବାହିତ ହୋଇଗଲା । ପିତାମାତା ଓ ଅନ୍ୟାନ୍ୟ ଲୋକଙ୍କ ମନରେ ପିଲାଟି ଯେଉଁ ମଧୁର ବାତ୍ସଲ୍ୟର ଆଧିପତ୍ୟ ବିସ୍ତାର କରିଥିଲା, ତାହା କ୍ରମଶଃ ଦୃଢ଼ ଏବଂ ଘନୀଭୂତ ହୋଇଉଠିଲା । ଏହି ସମୟ ମଧ୍ୟରେ ୧୮୩୯ ଖ୍ରୀଷ୍ଟାବ୍ଦରେ ଚନ୍ଦ୍ରାଦେବୀ କନ୍ୟାଟିଏ ପ୍ରସବ କଲେ, ତାହାର ନାମ ଦିଆଗଲା ସର୍ବମଙ୍ଗଳା ।

ବୟସ ବଢ଼ିବା ସଙ୍ଗେ ସଙ୍ଗେ ବାଳକ ଗଦାଧରର ଅଦ୍ଭୁତ ମେଧା ଓ ପ୍ରତିଭାର ବିକାଶ ଦେଖି କ୍ଷୁଦିରାମ ଆନନ୍ଦ ଓ ବିସ୍ମୟରେ ଅଭିଭୂତ ହେଲେ । ଗାଁର ଜମିଦାର ଲାହାବାବୁଙ୍କ ଘର ଆଗରେ ବିସ୍ତୃତ ଗୋଟିଏ ନାଟମନ୍ଦିର । ସେଥିରେ ଗାଆଁ ପିଲାଙ୍କ ପଢ଼ିବା ପାଇଁ ଚାଟଶାଳୀଟିଏ ଖୋଲାଯାଏ । ଯଥା ସମୟରେ ଗଦାଧରଙ୍କୁ ସେହି ଚାଟଶାଳୀକୁ ପଠାଗଲା; କିନ୍ତୁ ସେଠାରେ ପାଠ ପଢ଼ାରେ ସେ ବେଶୀ ଦୂର ଅଗ୍ରସର ହୋଇପାରିଲେ ନାହିଁ । ଗଦାଧର ପ୍ରାୟ ଚାଟଶାଳୀକୁ ନ ଯାଇ ସାଙ୍ଗମାନଙ୍କୁ ଧରି ଗାଁ ବାହାରେ ଖେଳ କୌତୁକରେ ମାତନ୍ତି । ପାଠପଢ଼ାରେ ନିୟମିତ ବା ନିଷ୍ଠାପର ନ ହେଲେ ସୁଦ୍ଧା ଗଦାଧରଙ୍କର ଅଲୌକିକ ମେଧା ଏବଂ ଶ୍ରୁତିଶକ୍ତି ଥିଲା । ଥରେ ଶୁଣିଲ

ମାନଙ୍କ ଦେବଦେବୀଙ୍କ ସ୍ତୋତ୍ରାଦି ତାଙ୍କର ମନେ ରହିଯାଉଥିଲା । ଏପରିକି ରାମାୟଣ-ମହାଭାରତର ବହୁ ଉପାଖ୍ୟାନ ସେ ଥରେ ଶୁଣି ମନେରଖି ଦେଉଥିଲେ । କିନ୍ତୁ ଅଙ୍କ ସେ ଭଲ ପାରୁ ନ ଥିଲେ; ଗଣିକିଆ ତାଙ୍କର ମନେ ରହୁନଥିଲା କି ଶୁଭଙ୍କରୀ ସେ ବୁଝିପାରୁ ନ ଥିଲେ । ଅନ୍ୟ ଦିଗରେ ତାଙ୍କର ଅନୁକରଣ ଓ ଉଦ୍ଭାବନୀ ଶକ୍ତି ଦିନୁଦିନ ନୂତନ ଦିଗରେ ପ୍ରସାରିତ ହୋଇ ଚାଲିଥାଏ । କ୍ରମେ ଶୈଶବକାଳୀନ ମାଧୁର୍ଯ୍ୟ ଏପରି ଘନୀଭୂତ ହୋଇଉଠିଲା ଯେ ସେ ସମସ୍ତଙ୍କର ପ୍ରିୟପାତ୍ର ହୋଇଉଠିଲେ । ଭୂରସୁବୋ ଗ୍ରାମର ବିଶିଷ୍ଟ ଦାତା ଓ ଭକ୍ତ ଜମିଦାର ମାଣିକରାମ ବନ୍ଦୋପାଧ୍ୟାୟ (ମାଣିକରାଜା) କ୍ଷୁଦିରାମଙ୍କ ଧର୍ମପରାୟଣତାରେ ଏତେ ଆକୃଷ୍ଟ ହୋଇପଡ଼ିଥିଲେ ଯେ ସେ ତାଙ୍କ ସଙ୍ଗେ ନିବିଡ଼ ବନ୍ଧୁତ୍ୱରେ ବାନ୍ଧିହୋଇ ଯାଇଥିଲେ । ଯେତେବେଳେ ଗଦାଧରଙ୍କୁ ମାତ୍ର ଛଅବର୍ଷ, ଦିନେ ସେ ବାପାଙ୍କ ସଙ୍ଗେ ମାଣିକରାଜାଙ୍କ ଉଆସକୁ ଯାଇଥିଲେ । ସେଠାକୁ ଯାଇ ସେ ଉଆସର ଲୋକଙ୍କ ସଙ୍ଗେ ଏପରି ଚିରପରିଚିତ ଭଳି ସମ୍ବନ୍ଧ ଲଗାଇ ଦେଲେ, ଏପରି ମଧୁର ବ୍ୟବହାରରେ ସମସ୍ତଙ୍କୁ ମନେଇରଖିଲେ ଯେ ସେଦିନଠୁଁ ସେ ସେମାନଙ୍କର ଅତିପ୍ରିୟ ହୋଇଉଠିଲେ ।

ପିଲାଦିନେ ଗଦାଧର ଥିଲେ ଖୁବ୍ ସ୍ୱାସ୍ଥ୍ୟବାନ । ଆକାଶଚାରୀ ପକ୍ଷୀଟିଏ ଭଳି ସେ ଅପୂର୍ବ ମୁକ୍ତିର ଉଲ୍ଲାସରେ ସବୁବେଳେ ଘୂରି ବୁଲୁଥିଲେ । ତାଙ୍କର ଚିତ୍ତ ସର୍ବଦା ପ୍ରସନ୍ନ ଥିଲା । ବେଳେବେଳେ କିନ୍ତୁ ସେ ଏକପ୍ରକାର ଅଦ୍ଭୁତ ଭାବମୟ ଅବସ୍ଥାରେ ରହିଯାଉଥିଲେ । କୌଣସି ବିଷୟରେ ଯଦି ତାଙ୍କର ଚିତ୍ତ ଦୈବାତ୍ ଏକାଗ୍ର ହୋଇଯାଉଥିଲା, ତେବେ ସେ ସେଥିରେ ଏତେ ନିବିଷ୍ଟ ହୋଇ ପଡ଼ୁଥିଲେ ଯେ ନିଜର ଦେହଜ୍ଞାନ ସୁଦ୍ଧା ରହୁ ନ ଥିଲା । ଥରକର କଥା । ସାତବର୍ଷର ଗଦାଧର ଦିନେ ସାଙ୍ଗମାନଙ୍କ ସହିତ ଗାଆଁର ବିଲଆଡ଼େ ଯାଇ ବୁଲୁଥିଲେ । ହଠାତ୍ ଆକାଶରେ ଖଣ୍ଡିଏ କଳାମେଘ ଉଠି ଚାରିଆଡ଼େ ଘୋଟିଗଲା । ସେହି କଳାମେଘ କୋଳରେ ପୁଣି ଦେଖା ଦେଲେ ଧାଡ଼ିଏ ଧଳା ବଗ । ସେହି ଘନକୃଷ୍ଣ ମେଘର ପୃଷ୍ଠଭୂମିରେ ଏହି ବିସ୍ତାରପକ୍ଷ ଶୁଭ୍ର ବଲାକାମାନଙ୍କର ସ୍ୱଚ୍ଛନ୍ଦ ସୁନ୍ଦର ଗତି ଦେଖୁ ଦେଖୁ ବାଳକ

ଗଦାଧରଙ୍କର ଭାବପ୍ରବଣ ଚିତ୍ତ ବିହ୍ୱଳିତ ହୋଇ କେଉଁ ଅନନ୍ତ ରାଜ୍ୟକୁ ଚାଲିଗଲା । ଭାବାବେଶରେ ସେ ମୂର୍ଚ୍ଛିତ ହୋଇପଡ଼ିଲେ । ସାଥୀମାନେ ଏ ଅବସ୍ଥା ଦେଖି ଡରିଗଲେ ଏବଂ ଦୌଡ଼ି ଯାଇ ବାପାମାଆଙ୍କୁ ଜଣାଇଦେଲେ । ଅନ୍ୟମାନେ ମୂର୍ଚ୍ଛିତ ବାଳକଟିକୁ ଧରାଧରି କରି ଘରକୁ ନେଇ ଆସିଲେ । ଘରେ ସେବା ଶୁଶ୍ରୂଷା ପରେ ତାଙ୍କର ଚେତା ଫେରି ଆସିଲା ଓ ସେ ପୂର୍ବବତ୍ ସୁସ୍ଥ ବୋଧ କଲେ । ଏହି ଭାବତନ୍ମୟତାର ଅପର ନାମ ହେଲା ଭାବ-ସମାଧି । ଏଭଳି ଭାବ-ସମାଧି ଯୋଗୀସାଧକମାନଙ୍କର ହୁଏ; କିନ୍ତୁ ସାଧନଭଜନ ବ୍ୟତୀତ ଯେ ଗଦାଧରଙ୍କ ସଦୃଶ ବାଳକଟିର ଏଭଳି ଅବସ୍ଥା ଆସିପାରେ ତାହା କ୍ଷୁଦିରାମଙ୍କ ଭଳି ଶାସ୍ତ୍ରଜ୍ଞ ସାଧକ ମଧ୍ୟ ଧାରଣା କରିପାରିଲେ ନାହିଁ । ତେଣୁ ସେ ଗଦାଧରଙ୍କ ସ୍ୱାସ୍ଥ୍ୟବିଷୟରେ ଉଦ୍‌ବିଗ୍ନ ହୋଇପଡ଼ିଲେ ଓ ଯେପରି ଏହା ଆଉ ନ ଘଟେ, ସେ ଦିଗରେ ନାନା ଉପାୟ ଉଦ୍‌ଭାବନ କରିବାକୁ ଲାଗିଲେ । ଯାହା ହେଉ, କାଳକ୍ରମେ ବାଳକଟିର ସ୍ୱାସ୍ଥ୍ୟର ଆଉ କୌଣସି ବ୍ୟତିକ୍ରମ ନ ହେବାର ଦେଖି ସମସ୍ତେ ନିଶ୍ଚିନ୍ତ ହେଲେ ।

ଆଉଥରେ ମଧ୍ୟ ଗଦାଧରଙ୍କର ଏହିଭଳି ଗଭୀର ଭାବାବେଶ ହୋଇଥିଲା । ସେତେବେଳେ ତାଙ୍କୁ ପ୍ରାୟ ଆଠବର୍ଷ ବୟସ । କାମାରପୁକୁରର ପ୍ରାୟ ଏକ କୋଶ ଉତ୍ତରକୁ ଆନୁଡ଼ ବୋଲି ଗ୍ରାମରେ ଦେବୀ ବିଶାଳାକ୍ଷିଙ୍କର ଖୁବ୍ ମହିମା ଓ ପ୍ରସିଦ୍ଧି ଥିଲା । ଗୋଟିଏ ପ୍ରାନ୍ତରରେ ପ୍ରାୟତଃ ଶୂନ୍ୟ ଆକାଶତଳେ ଦେବୀଙ୍କର ଆସ୍ଥାନ ଥିଲା । ଖରାବର୍ଷାରୁ ରକ୍ଷା କରିବା ପାଇଁ କୃଷକମାନେ ମୂର୍ତ୍ତି ଉପରେ ପଳ କୁଡ଼ିଆର ସାମାନ୍ୟଗୋଟିଏ ଆଚ୍ଛାଦନମାତ୍ର କରିଦେଇଥିଲେ ଏବଂ ତାହା ପ୍ରତିବର୍ଷ ଛପର କରୁଥିଲେ । କାମାରପୁକୁରର କେତେକ ସ୍ତ୍ରୀଲୋକ ଥରେ ଦଳବଦ୍ଧ ହୋଇ ବିଶାଳାକ୍ଷିଦେବୀଙ୍କଠାରେ ମାନସିକ ଥିବା ପୂଜା କରିବା ଉଦ୍ଦେଶ୍ୟରେ ଆନୁଡ଼ ଯିବାକୁ ପ୍ରସ୍ତୁତ ହେଲେ । ବାଳକ ଗଦାଧର ମଧ୍ୟ ସେମାନଙ୍କ ସାଙ୍ଗରେ ବାହାରିଲେ । ଠାକୁର ଦେବତାଙ୍କର ଯାହା ସ୍ତୁତି ପ୍ରାର୍ଥନା ତାଙ୍କୁ ଜଣାଥିଲା ସେସବୁ ସୁଲଳିତ କଣ୍ଠରେ ଗାନ କରି କରି ହୃଷ୍ଟଚିତ୍ତରେ ସେ ଚାଲିଥାଆନ୍ତି । କିନ୍ତୁ ଗାଆଁ ଶେଷ ମୁଣ୍ଡର ପ୍ରାନ୍ତରଟି ପାରି ହେବାର ଠିକ୍ ପୂର୍ବରୁ ଏକ ଅଭାବନୀୟ ଘଟନା ଘଟିଗଲା । ସହସା

ତାଙ୍କର ସୁଧାବୋଳା କଣ୍ଠରୁ ଗୀତ ବନ୍ଦ ହୋଇଗଲା । ତାଙ୍କର ଅଙ୍ଗପ୍ରତ୍ୟଙ୍ଗ ଅବଶ ଆଉ ଅଚଳ ହୋଇଗଲା । ଆଖିରୁ ଅବିରଳ ଅଶ୍ରୁଧାର ବହିବାକୁ ଲାଗିଲା । ପିଲାଟିର ଏଭଳି ଅବସ୍ଥା ଦେଖି ସ୍ତ୍ରୀଲୋକମାନେ ଖୁବ୍ ବିପନ୍ନା ହୋଇପଡ଼ିଲେ ଏବଂ ପିଲାଟିକୁ ଘେରଯାଇ କେହି ତା'ର ମୁଣ୍ଡରେ ପାଣି ଢାଳିଲେ—କେହି ଅବା ପଙ୍ଖା କରିବାକୁ ଲାଗିଲେ । କିନ୍ତୁ ଗଦାଧରଙ୍କ ଚେତା ଫେରିଲା ନାହିଁ । ସ୍ତ୍ରୀଲୋକମାନେ ଭାବିଲେ ବୋଧହୁଏ ଦେବୀ ବିଶାଳାକ୍ଷି ପିଲାଟି ଭିତରେ ଆବିର୍ଭୂତା ହୋଇଛନ୍ତି । ତେଣୁ ସେମାନେ ଗଦାଧରଙ୍କ ଗୃହପଟେ କରଯୋଡ଼ ହୋଇ ଦେବୀଜ୍ଞାନରେ ତାଙ୍କୁ ସମ୍ବୋଧନ କରି ବାରମ୍ବାର ଆକୁଳସ୍ୱରରେ ପ୍ରାର୍ଥନା କରିବାକୁ ଲାଗିଲେ—"ମା ! ବିଶାଳାକ୍ଷି ! ପ୍ରସନ୍ନା ହୁଅ ! ମା' ରକ୍ଷାକର ! ମା' ବିଶାଳାକ୍ଷି ! ଆଖି ଖୋଲି ଟିକିଏ ଚାହଁ ମା ! ଅକୂଳରେ କୂଳ ଦିଅ ମା ! କୃପା କର ମା ! ମା ଗୋ ମା !"

ଆଶ୍ଚର୍ଯ୍ୟ କଥା । ସରଳା ଭକ୍ତପ୍ରାଣା ସ୍ତ୍ରୀଲୋକମାନେ ଏହି ଭାବରେ ଦେବୀଙ୍କୁ ପ୍ରାର୍ଥନା କରିବା ମାତ୍ରେ ଗଦାଧରଙ୍କ ମୁହଁରେ ହସ ଫୁଟି ଉଠିଲା ଏବଂ ଅଳ୍ପ ସମୟ ମଧ୍ୟରେ ସେ ପ୍ରକୃତିସ୍ଥ ହୋଇ ଉଠିଲେ । ପଚାରିବାରୁ ଗଦାଧର କହିଲେ ଯେ ଦେବୀ ବିଶାଳାକ୍ଷିଙ୍କର ଚିନ୍ତା କରୁ କରୁ ତାଙ୍କର ମନ ଦେବୀଙ୍କର ପାଦପଦ୍ମରେ ଲୀନ ହୋଇଗଲା ଏବଂ ସେ କିଳେ ଏପରି ମୂର୍ଚ୍ଛିତ ହୋଇ ପଡ଼ିଲେ ।

ସେହି ବାଲ୍ୟକାଳରେ ଗଦାଧର ଏହିଭଳି ଅନେକ ଥର ଉଚ୍ଚଭାବ-ଭୂମିରେ ଆରୂଢ଼ ହୋଇଯାଉଥିଲେ । ଥରେ ଗ୍ରାମରେ ଶିବରାତ୍ରି ମେଳା ହେଉଥିଲା । ସେହି ଗ୍ରାମର ସୀତାନାଥ ପାଇନଙ୍କ ଅଗଣାରେ ଶିବମନ୍ଦିର ସମ୍ମୁଖରେ ଶିବଙ୍କର ମହିମାସୂଚକ ଗୋଟିଏ ଯାତ୍ରାଭିନୟ ହେବାର ଥିଲା । ସନ୍ଧ୍ୟାବେଳକୁ ଜଣାଗଲା ଯେ ଯାତ୍ରାଦଳରେ ଯେଉଁ ପିଲାଟି ଶିବଙ୍କ ଭୂମିକାରେ ଓହ୍ଲାଇବା କଥା, ତା'ର ହଠାତ୍ ସାଂଘାତିକ ଦେହଖରାପ ହୋଇଯାଇଛି । ଯାତ୍ରାଦଳର ଓସ୍ତାଦ୍ ଜଣାଇଲେ ଯେ ଯଦି ଏ ଗାଁରୁ କେହି ବାଳକ ଶିବଙ୍କ ଭୂମିକାରେ ଅଭିନୟ କରିବାକୁ ରାଜି ହୁଏ, ତେବେ ସେ ରାତିରେ ଶିବଲୀଳା ଅଭିନୟ ଦେଖାଇପାରିବେ । ସେପରି ପିଲା ନ ମିଳିଲେ ଆଜି ରାତିରେ ବାଧ

ହୋଇ ଯାତ୍ରା ବନ୍ଦ ହେବ । କେତେକ ଗ୍ରାମବାସୀ ମତ ଦେଲେ ଯେ ଗଦାଧରର ବୟସ ଅଳ୍ପ ହେଲେ ମଧ୍ୟ ସେ ବହୁତ ଶିବଙ୍କ ସମ୍ପର୍କୀୟ ଗୀତ ଶିଖିଛି ଏବଂ ଶିବ-ବେଶରେ ବାହାରିଲେ ତାକୁ ଭଲ ମାନିବ । ସମସ୍ତଙ୍କ ଆଗ୍ରହରେ ଗଦାଧର ସେହି ଭୂମିକାରେ ଅଭିନୟ କରିବାକୁ ରାଜି ହେଲେ । ଯଥା ସମୟରେ ଯାତ୍ରା ଆରମ୍ଭ ହେଲା । ଗଦାଧର ଶିବବେଶ ହୋଇ ବେଶଘରେ ଚୁପ୍‌ଚାପ୍ ଶିବଙ୍କ ଭାବନାରେ ତନ୍ମୟ ହୋଇ ବସିଥାନ୍ତି । ଏହି ସମୟରେ ଅଭିନୟପୀଠରୁ ଡାକରା ଆସିଗଲା । ତାହା ଶୁଣି ଗଦାଧର ଏକପ୍ରକାର ଉନ୍ମନା ହୋଇ କୌଣସି ଆଡ଼କୁ ଲକ୍ଷ୍ୟ ନ କରି ଧୀର ମନ୍ଥର ଗତିରେ ସଭାସ୍ଥଳରେ ଉପସ୍ଥିତ ହେଲେ ଏବଂ ସେଠାରେ ସ୍ଥିରଭାବରେ ଠିଆ ହୋଇ ରହିଲେ । ସଭାର ସମବେତ ନରନାରୀ ଆଶ୍ଚର୍ଯ୍ୟ ହୋଇ ଦେଖିଲେ ଯେ ସତେଜ ଜଟାଜୁଟଧାରୀ, ବ୍ୟାଘ୍ରଚର୍ମ-ପରିହିତ, ବିଭୂତିମଣ୍ଡିତ ମହାଯୋଗୀ ଦେବଦେବ ମହାଦେବ ସେମାନଙ୍କ ସମ୍ମୁଖରେ ଧୀରସ୍ଥିର ପଦକ୍ଷେପରେ ଆସି ଅଟଳ ଅଚଳ ହୋଇ ଦଣ୍ଡାୟମାନ ରହିଛନ୍ତି । ବିଶେଷତଃ ତାଙ୍କର ସେହି ଅପାର୍ଥିବ ଅନ୍ତର୍ମୁଖୀ ନିର୍ବିଶେଷ ଦୃଷ୍ଟି ଓ ଅଧରକୋଣରେ ଈଷତ୍ ହାସ୍ୟରେଖା ଦେଖି ସଭାସ୍ଥ ଆବାଳବୃଦ୍ଧବନିତା ଆନନ୍ଦ ଓ ଭକ୍ତିରେ ଗଦ୍‌ଗଦ ହୋଇ ଆବେଗ କମ୍ପିତକଣ୍ଠରେ ଉଚ୍ଚସ୍ୱରରେ ପାଟିକରି ଉଠିଲେ—ହରିବୋଲ, ହରିବୋଲ, ହରିହରିବୋଲ ! ସରଳହୃଦୟା ପଲ୍ଲୀ ସୀମନ୍ତିନୀଗଣ ଆନନ୍ଦରେ ହୁଳହୁଳି-ଧ୍ୱନିରେ ଗଗନ-ପବନ ମୁଖରିତ କରିଦେଲେ । କେହି କେହି ଶଙ୍ଖଧ୍ୱନିରେ ସଭାସ୍ଥଳକୁ ନିନାଦିତ କରିବାକୁ ଲାଗିଲେ । ଶିବବେଶୀ ବାଳକ ଗଦାଧର କିନ୍ତୁ ସେହିଭଳି ସ୍ଥିରଭାବରେ ତ୍ରିଶୂଳ ଓ ଡମ୍ବରୁ ଧରି ଦଣ୍ଡାୟମାନ ରହିଥାଆନ୍ତି । ତାଙ୍କର ଚକ୍ଷୁଦ୍ୱୟରୁ ଅବିରଳ ଅଶ୍ରୁଧାରା ଝରୁଥାଏ । କିଛି ସମୟ ଏହିଭଳି ଅତୀତ ହୋଇଗଲା । କିନ୍ତୁ ସେ ସ୍ଥାନଚ୍ୟୁତ ହେଉନଥାନ୍ତି କି ତାଙ୍କ ପାଟିରୁ କିଛି କଥା ବାହାରୁ ନ ଥାଏ । ବୁଝାଗଲା ଯେ ସେ ସେହି ଦଣ୍ଡାୟମାନ ଅବସ୍ଥାରେ ସଂଜ୍ଞାହୀନ ହୋଇଛନ୍ତି । ଏତିକିରେ ସେ ରାତିର ଯାତ୍ରା ଭାଙ୍ଗିଗଲା ଏବଂ ତାଙ୍କୁ କାନ୍ଧରେ ପକାଇ ଘରକୁ ଅଣାଗଲା । ସେଦିନ ସାରା ରାତି ତାଙ୍କର ସଂଜ୍ଞା ଫେରାଇବା ଲାଗି ବହୁ ପ୍ରଯତ୍ନ କଲେ ମଧ୍ୟ କୌଣସି ପ୍ରକାରେ

ସେ ପ୍ରକୃତିସ୍ଥ ହେଲେ ନାହିଁ । ସୂର୍ଯ୍ୟୋଦୟ ବେଳକୁ ଯାଇ ତାଙ୍କର ସେହି ଭାବାବେଶ କଟିଲା ଏବଂ ସେ ବାହ୍ୟସଚେତନ ହେଲେ ।

ଏହିପରି ଦିନ ଗଡ଼ି ଚାଲିଲା । ୧୮୪୩ ମସିହାର ଶରତଋତୁ । ଶାରଦୀୟା ମହାପୂଜାର ସମୟ । କ୍ଷୁଦିରାମଙ୍କର ଭଣଜା ରାମଚାନ୍ଦ ତାଙ୍କ ନିଜ ଗ୍ରାମ ଛିଲମ୍‌ପୁରରେ ପ୍ରତିବର୍ଷ ଏହି ସମୟରେ ଦେବୀପୂଜା ଅନୁଷ୍ଠାନ କରନ୍ତି । ଏଥିରେ ସେ ବହୁ ଅର୍ଥ ନିଃସଙ୍କୋଚରେ ବ୍ୟୟ କରନ୍ତି । କ୍ଷୁଦିରାମ ସେତେବେଳେ ଅଠଷଠି ବର୍ଷ ଅତିକ୍ରମ କରିବାକୁ ବସିଲେଣି । କିଛି ବର୍ଷ ହେଲା ତାଙ୍କୁ ମଝେ ମଝେ ଅଜୀର୍ଣ୍ଣ ଆଉ ଗ୍ରହଣୀ ରୋଗ ଆକ୍ରାନ୍ତ କରୁଥାଏ । ଏହି ରୋଗରେ ତାଙ୍କର ସୁଦୃଢ଼ ଦେହ ମଧ୍ୟ ଭାଙ୍ଗି ପଡ଼ିଥାଏ । ସେ ଦୁର୍ବଳ ହୋଇ ଯାଇଥାନ୍ତି । ସେହି ବର୍ଷ ବିଜୟା ପର୍ବରେ ସବୁ ବର୍ଷ ପରି ପ୍ରିୟ ଭଣଜା ରାମଚାନ୍ଦଙ୍କ ସାଦର ନିମନ୍ତ୍ରଣରେ ରାମକୁମାରକୁ ଧରି ସେ ଛିଲମ୍‌ପୁର ଗଲେ । ରାମଚାନ୍ଦ ମାମୁଁ ଆଉ ମାମୁଁପୁଅ ଭାଇଙ୍କୁ ପାଇ ସେ ଖୁବ୍ ଖୁସୀ ହେଲେ । କିନ୍ତୁ ଦୁର୍ଭାଗ୍ୟର କଥା—ଛିଲମ୍‌ପୁରରେ ପହଞ୍ଚିବା ପରେ ପରେ କ୍ଷୁଦିରାମଙ୍କର ଗ୍ରହଣୀ ରୋଗ ପୁଣି ଥରେ ଆରମ୍ଭ ହୋଇଗଲା ଏବଂ ସଙ୍ଗେ ସଙ୍ଗେ ପ୍ରବଳ ହୋଇ ଉଠିଲା । ନବମୀ ପୂଜାର ଦିନ ଓ ରାତି କୌଣସି ପ୍ରକାରେ କଟିଗଲା । ବିଜୟାଦଶମୀ ଦିନ କ୍ଷୁଦିରାମ ଏତେ ଦୁର୍ବଳ ହୋଇପଡ଼ିଲେ ଯେ ତାଙ୍କ ପାଟିରୁ ଆଉ କଥା ବାହାରିଲା ନାହିଁ । କ୍ରମେ ଅପରାହ୍ଣ ହେଲା । ରାମଚାନ୍ଦ ପ୍ରତିମା ବିସର୍ଜନ ପୂଜା ଶେଷ କରି ମାମୁଁଙ୍କ ପାଖକୁ ଆସି ଦେଖିଲେ ଯେ ତାଙ୍କର ପ୍ରାୟ ଅନ୍ତିମକାଳ ଉପସ୍ଥିତ । ରାମଚାନ୍ଦ, ହେମାଙ୍ଗିନୀ ଓ ରାମକୁମାର ତାଙ୍କର ନିର୍ଦ୍ଦେଶ ଅନୁସାରେ ତାଙ୍କୁ ଧରାଧରି କରି ଅତି ସନ୍ତର୍ପଣରେ ଶଯ୍ୟାରେ ବସାଇଦେଲେ । ସେହି ବସିବା ଅବସ୍ଥାରେ କ୍ଷୁଦିରାମ ତିନିଥର ରଘୁବୀରଙ୍କ ନାମୋଚ୍ଚାରଣ କରୁକରୁ ଶେଷ ନିଃଶ୍ୱାସ ତ୍ୟାଗ କଲେ । ସିନ୍ଧୁରେ ବିନ୍ଦୁ ମିଳିତ ହୋଇଗଲା । ତା' ପରେ ଅଶୌଚାନ୍ତେ ରାମକୁମାର ରାମଚାନ୍ଦଙ୍କ ଅର୍ଥ ସାହାଯ୍ୟରେ ଶାସ୍ତ୍ରବିଧାନାନୁସାରେ ବୃଷୋତ୍ସର୍ଗ ଓ ବହୁ ବ୍ରାହ୍ମଣଙ୍କୁ ଭୋଜନ କରାଇ ସ୍ୱର୍ଗସ୍ଥ ପିତାଙ୍କର ଅନ୍ତ୍ୟେଷ୍ଟିକ୍ରିୟା ସମ୍ପୂର୍ଣ୍ଣ କଲେ ।

# ତୃତୀୟ ଅଧ୍ୟାୟ

# କିଶୋର ଗଦାଧର

କ୍ଷୁଦିରାମଙ୍କ ଦେହତ୍ୟାଗ ପରେ ପରେ ତାଙ୍କ ପରିବାରର ଜୀବନ-ଧାରାରେ ବିଶେଷ ପରିବର୍ତ୍ତନ ଘଟିଲା । ଦୀର୍ଘ ଚଉରାଳିଶି ବର୍ଷ କାଳ ଯାହାଙ୍କୁ ଜୀବନର ନିତ୍ୟ ସହଚରରୂପେ ଲାଭ କରିଥିଲେ, ତାଙ୍କୁ ଚିରଦିନ ଲାଗି ହରାଇ ଚନ୍ଦ୍ରାଦେବୀ ବର୍ତ୍ତମାନ ଜଗତକୁ ଶୂନ୍ୟମୟ ଦେଖିଲେ ଏବଂ ପ୍ରାଣରେ ତାଙ୍କର ଅଭାବ ସର୍ବଦା ଗଭୀର ଭାବରେ ଅନୁଭବ କଲେ । ସାତବର୍ଷର ପୁଅ ଗଦାଧର ଓ ଚାରିବର୍ଷର ଝିଅ ସର୍ବମଙ୍ଗଳାକୁ କୋଳରେ ଧରି ଶ୍ରୀଶ୍ରୀରଘୁବୀରଙ୍କୁ ଆଶ୍ରୟ କରି ଚନ୍ଦ୍ରାଦେବୀ ସେହି ଦୁଃଖର ଦିନଗୁଡ଼ିକୁ କୌଣସି ପ୍ରକାରେ ଅତିବାହିତ କରୁଥାଆନ୍ତି; କିନ୍ତୁ ଇତିମଧ୍ୟରେ ବାଳକ ଗଦାଧର କ୍ରମଶଃ ଚିନ୍ତାଶୀଳ ଏବଂ ନିର୍ଜନତାପ୍ରିୟ ହୋଇଉଠୁଥା'ନ୍ତି । ବାଳକ ଗଦାଧର ପୂର୍ବଭଳି ମହାନନ୍ଦରେ ହାସ୍ୟ କୌତୁକ କରି ସମୟ କଟାଉଥିଲେ ମଧ୍ୟ କେଜାଣି କାହିଁକି ବେଳେବେଳେ ଭୂତିର୍ ଖାଲ୍ ଶ୍ମଶାନରେ କିମ୍ବା ମାଣିକରାଜାଙ୍କର ସେହି ବିଶାଳ ନିର୍ଜନ ଆମ୍ରକାନନରେ ଏକାକୀ ଉଦାସ ଭାବରେ ବିଚରଣ କରିବାର ସମସ୍ତେ ଲକ୍ଷ୍ୟ କରୁଥାନ୍ତି ।

ସ୍ୱର୍ଗତ ପିତାଙ୍କର ଅଭାବବୋଧ ବର୍ତ୍ତମାନ ଗଦାଧରଙ୍କୁ ଗୋଟିଏ ଅଭିନବ ବିଷୟରେ ପ୍ରବୃତ୍ତ କରାଇଲା । ଗ୍ରାମର ଅଗ୍ନିକୋଣରେ ଥିଲା ଗୋଟିଏ ପାନ୍ଥନିବାସ । ଲାହାବଂଶୀୟ ଜମିଦାର ଏହି ପାନ୍ଥନିବାସଟି କରିଥିଲେ । ଶ୍ରୀଜଗନ୍ନାଥ ଦର୍ଶନାଭିଳାଷୀ ପୁରୀଗାମୀ ଯାତ୍ରୀମାନେ ଏଠାରେ ସୁବିଧାରେ ଆଶ୍ରୟ ନେଇପାରୁଥିଲେ । ସବୁବେଳେ ପ୍ରାୟ ଏହି ପାନ୍ଥନିବାସଟି ଭକ୍ତ ଯାତ୍ରୀ ଓ ସାଧୁସନ୍ନ୍ୟାସୀଙ୍କର ସମାଗମରେ କୋଳାହଳପୂର୍ଣ୍ଣ ହୋଇ ରହିଥିଲା । କାରଣ ପୁରୀ ଫେରନ୍ତା ସାଧୁସନ୍ନ୍ୟାସୀମାନେ ମଧ୍ୟ ଏଠାରେ କିଛିଦିନ ବିଶ୍ରାମ ନେଉଥିଲେ ଏବଂ ନିକଟସ୍ଥ ଗାଁଗଣ୍ଡାରୁ ଭିକ୍ଷା ସଂଗ୍ରହ କରୁଥିଲେ । ଗଦାଧର

ଏଣିକି ପ୍ରତିଦିନ ସେହି ପାନ୍ଥନିବାସକୁ ଯିବା ଆସିବା କରିବାକୁ ଲାଗିଲେ ଏବଂ ସାଧୁସନ୍ନ୍ୟାସୀମାନଙ୍କ ସଙ୍ଗେ କ୍ରମଶଃ ତାଙ୍କର ପରିଚୟ ବଢ଼ିଲା । ସେହି ସମୟରେ ସେ ସେମାନଙ୍କର ରନ୍ଧନ ଲାଗି ପାଣି ଯୋଗାଇ ଦେଉଥିଲେ, ଜାଳେଣୀ କାଠ ଯୋଗାଇ ଦେଉଥିଲେ ଏବଂ ଏପରି ଅନେକ ଛୋଟ ଛୋଟ ସେବା କରି ସେମାନଙ୍କର ଖୁବ୍ ପ୍ରିୟ ହୋଇଉଠିଥିଲେ – ଘନିଷ୍ଠ ହୋଇ ଉଠିଥିଲେ । ସାଧୁସନ୍ନ୍ୟାସୀମାନେ ପୁଅ ଉପରେ ପ୍ରସନ୍ନ ହେଉଛନ୍ତି, ଆଶୀର୍ବାଦ କରୁଛନ୍ତି, ଏତଦ୍ଦ୍ୱାରା ପୁଅର ମଙ୍ଗଳ ହେବ, ଏହା ଭାବି ମା' ଚନ୍ଦ୍ରାଦେବୀ ପୁଅର ଏହି ସାଧୁସଙ୍ଗକୁ ପ୍ରୀତିଦୃଷ୍ଟିରେ ଦେଖୁଥିଲେ । କିନ୍ତୁ କ୍ରମେ ଚନ୍ଦ୍ରାଦେବୀ ଲକ୍ଷ୍ୟ କଲେ—ଭୋଳାନାଥ ପୁଅଟି କେଉଁ ଦିନ ବିଭୂତିଭୂଷଣ ହୋଇ ଘରକୁ ଫେରୁଛି ତ, କେଉଁ ଦିନ ଚନ୍ଦନତିଳକରେ ସର୍ବାଙ୍ଗ ମଣ୍ଡିତ କରି ଆସୁଛି—ପୁଣି କେଉଁ ଦିନ ବା ସାଧୁସନ୍ନ୍ୟାସୀଙ୍କ ପରି କୌପୀନ ଓ ବହିର୍ବାସ ପିନ୍ଧି ଘରକୁ ଆସୁଛି । ଏସବୁ ଆଚରଣ ଦେଖି ମାଆଙ୍କର ମନ ସ୍ୱାଭାବିକଭାବେ ଉଦ୍‌ବିଗ୍ନ ହୋଇ ପଡ଼ିଲା । ତାଙ୍କ ମନରେ ଆଶଙ୍କା ହେଲା—ସାଧୁମାନେ ଏପରି କରି ଦିନେ ତାଙ୍କର ଏହି ଭାବଭୋଳା ପୁଅଟିକୁ ଚେଲା କରି ସାଙ୍ଗରେ ଧରି ନେଇଯିବେ ନାହିଁ ତ ! ଦିନେ ମନର ଆଶଙ୍କା ସେ ଗଦାଧରଙ୍କ ଆଗରେ କହି କାନ୍ଦିବାକୁ ଲାଗିଲେ । ମାଆଙ୍କର କାନ୍ଦଣା ଦେଖି ଗଦାଧର ମନେମନେ ସଂକଳ୍ପ କଲେ ଯେ ସେ ଆଉ ସନ୍ନ୍ୟାସୀମାନଙ୍କ ପାଖକୁ କେବେହେଲେ ଯିବେ ନାହିଁ । ମାଆଙ୍କୁ ମଧ୍ୟ ସେ ତାହା ଜଣାଇ ଦେଲେ । ମାଆ ନିଶ୍ଚିନ୍ତା ହେଲେ । ଏଣେ ଗଦାଧର ତା'ପର ଦିନ ସାଧୁମାନଙ୍କ ନିକଟରୁ ଶେଷ ବିଦାୟ ନେବା ଲାଗି ପାନ୍ଥନିବାସକୁ ଗଲେ ଏବଂ ସାଧୁମାନଙ୍କୁ ମାଆଙ୍କର ଆଶଙ୍କା କଥା ନିବେଦନ କଲେ । ସେକଥା ଶୁଣି ସାଧୁମାନେ ଚନ୍ଦ୍ରାଦେବୀଙ୍କ ପାଖକୁ ଆସି ଜଣାଇଲେ ଯେ ଗଦାଧରଙ୍କୁ ଚେଲା କରି ନେବାର ସାମାନ୍ୟତମ ଅଭିଳାଷ ସେମାନଙ୍କ ମନରେ ଆଦୌ ଉଦିତ ହୋଇ ନାହିଁ ଏବଂ ପିତାମାତାଙ୍କ ଅନୁମତି ନ ନେଇ ଏଭଳି ଅଳ୍ପବୟସ୍କ ପିଲାକୁ ସାଙ୍ଗରେ ଭୁଲାଇ ନେଇଯିବା ଅପହରଣବୃତ୍ତି ଛଡ଼ା ଆଉ କିଛି ନୁହେଁ । ପ୍ରକୃତ ସାଧୁମାନଙ୍କ ପକ୍ଷରେ ଏହା ଆଚରଣବିରୁଦ୍ଧ ବିଷମ ଅପରାଧ ବୋଲି ବୁଝିବାକୁ ହେବ । ଏଭଳି ସାଧୁ-

କନୋଚିତ ଆଶ୍ୱାସନାବାକ୍ୟ ଶୁଣି ଚନ୍ଦ୍ରାଦେବୀଙ୍କ ମନରୁ ଆଶଙ୍କାର ମେଘ ଉଡ଼ିଗଲା ଏବଂ ସେମାନଙ୍କ ଅନୁରୋଧରେ ସେ ଗଦାଧରଙ୍କୁ ପୂର୍ବବତ୍ ସେମାନଙ୍କ ପାଖକୁ ଯିବା ଆସିବା ଲାଗି ଅନୁମତି ଦେଲେ ।

ଗଦାଧର କ୍ରମେ ନବମ ବର୍ଷ ଉତ୍ତୀର୍ଣ୍ଣ ହେବାକୁ ବସିଲେ । ଏତିକି-ବେଳେ ବ୍ରାହ୍ମଣ ଘରେ ବ୍ରତୋପନୟନର ବିଧି । ରାମକୁମାର ସେଥିପାଇଁ ଆୟୋଜନ କଲେ । କମାରକନ୍ୟା ଧନୀ ଆଗରୁ ଗଦାଧରଙ୍କୁ ଅନୁରୋଧ କରିଥିଲା ଯେ ସେ ଯେପରି ଉପନୟନ ବେଳେ ତା' ନିକଟରୁ ପ୍ରଥମ ଭିକ୍ଷା ଗ୍ରହଣ କରି ତାକୁ ମାଆ ବୋଲି ସମ୍ବୋଧନ କରନ୍ତୁ—ସେତିକିରେ ତା'ର ଜୀବନ କୃତାର୍ଥ ହେବ । ଗଦାଧର ମଧ୍ୟ ଧନୀର ଅକୃତ୍ରିମ ବାତ୍ସଲ୍ୟରେ ମୁଗ୍ଧ ହୋଇ ତା'ର ଏହି ଅଭିଳାଷ ପୂର୍ଣ୍ଣ କରିବେ ବୋଲି ପ୍ରତିଶ୍ରୁତି ଦେଇଥିଲେ । ବିଶ୍ୱାସୀ ଧନୀ ଏ କଥାରେ ବିଶ୍ୱାସ ରଖି ସେହି ଦିନଠାରୁ ତା'ର ସାଧ୍ୟମତେ ଟଙ୍କା ପଇସା ସଂଗ୍ରହ କରି ସଞ୍ଚୟ କରୁଥିଲା ଓ ଏହି ସମୟକୁ ଅପେକ୍ଷା କରି ରହିଥିଲା । ଉପନୟନର ବ୍ୟବସ୍ଥା ଦେଖି ଗଦାଧର ତାଙ୍କର ବଡ଼ ଭାଇ ରାମକୁମାରଙ୍କୁ ଏହି କଥା କହିଲେ; କିନ୍ତୁ ଏଭଳି ବିଷୟ ତ ପ୍ରଥାରୂପେ ଏ ବଂଶରେ କେବେ ଚଳି ନାହିଁ ! ତେଣୁ ରାମକୁମାର ଏ ପ୍ରସ୍ତାବରେ ଅସମ୍ମତ ହେଲେ । ଏଣେ କିନ୍ତୁ ଗଦାଧର ନିଜ ପ୍ରତିଶ୍ରୁତି ଲଙ୍ଘନ କରିବେ ନାହିଁ ବୋଲି ବିଷମ ଜିଦ୍ ଧରିଲେ । ସେ କହିଲେ—ଯଦି ଏ କଥା କରା ନ ଯାଏ, ତେବେ ତାଙ୍କୁ ସତ୍ୟଭଙ୍ଗର ଅପରାଧରେ ଦୋଷୀ ହେବାକୁ ପଡ଼ିବ ଏବଂ ସେ ମିଛୁଆ ହୋଇଯିବେ । ମିଥ୍ୟାବାଦୀ ଲୋକ ବ୍ରାହ୍ମଣୋଚିତ ଯଜ୍ଞୋପବୀତ ଧାରଣରେ କେବେ ଅଧିକାରୀ ହୋଇ ପାରିବ ନାହିଁ । ଶେଷକୁ ଧର୍ମଦାସ ଲାହାଙ୍କ କାନକୁ ଏ କଥା ଗଲା । ସେ ଏହା ଶୁଣି ରାମକୁମାରଙ୍କୁ ବୁଝାଇଲେ । ସେ କହିଲେ—ଯଦିଓ ଏ ବଂଶରେ କେବେ ଏଭଳି କଥା ଘଟି ନାହିଁ, କିନ୍ତୁ ବହୁ ସଦ୍‌ବଂଶଜ ବ୍ରାହ୍ମଣ-ପରିବାରରେ ଏଭଳି ଘଟନା ଘଟିବାର ଜଣାଅଛି । ଏଭଳି ପ୍ରବୀଣ ପିତୃବନ୍ଧୁଙ୍କ ମୁହଁରୁ ଏତିକି ଶୁଣି ରାମକୁମାର ଓ ଅନ୍ୟମାନେ ଆଉ କିଛି ଆପତ୍ତି ଉଠାଇଲେ ନାହିଁ । ଅତଃପର ଯଥାବିଧାନରେ ହୃଷ୍ଟଚିତ୍ତ ଗଦାଧରଙ୍କର ଉପନୟନ ହୋଇଗଲା ଏବଂ ସେ ପବିତ୍ର ଯଜ୍ଞୋପବୀତ ସ୍କନ୍ଧରେ

ଧାରଣ କରି ସନ୍ଧ୍ୟା, ପୂଜା ପ୍ରଭୃତି ବ୍ରାହ୍ମଣୋଚିତ କାର୍ଯ୍ୟରେ ମନୋନିବେଶ କଲେ ।

ଏହି ସମୟରେ ଦିନେ ଏପରି ଏକ ଘଟଣା ଘଟିଲା ଯେଉଁଥିରେ ଗ୍ରାମବାସୀମାନେ ଗଦାଧରଙ୍କ ଅଲୌକିକ ପ୍ରତିଭାର ପରିଚୟ ପାଇ ଅତିଶୟ ବିସ୍ମିତ ହୋଇଉଠିଲେ । ଗ୍ରାମର ଜମିଦାର ଲାହାବାବୁଙ୍କର ଘରେ ଶ୍ରାଦ୍ଧୋତ୍ସବ ହେଉଥିଲା । ସେହି ଉପଲକ୍ଷରେ ଉକ୍ତ ଅଞ୍ଚଳର ଖ୍ୟାତନାମା ପଣ୍ଡିତମାନଙ୍କୁ ନିମନ୍ତ୍ରଣ କରାଯାଇଥିଲା । ସେଦିନ ପଣ୍ଡିତସଭାରେ କୌଣସି ବିଷୟ ନେଇ ତର୍କର ଖୁବ ଗୋଟାଏ ଝଡ଼ ଉଠିଲା । ବହୁ ତର୍କବିତର୍କ ପରେ ମଧ୍ୟ ଗୋଟିଏ ପ୍ରଶ୍ନର କୌଣସି ପ୍ରକାର ଶାସ୍ତ୍ରୀୟ ମୀମାଂସା ହୋଇପାରିଲା ନାହିଁ । ଏହି ସମୟରେ ବାଳକ ଗଦାଧର ପରିଚିତ ଜଣେ ପଣ୍ଡିତଙ୍କୁ କହିଲେ—"କଥା-ଟାର ଏହି ପ୍ରକାର ମୀମାଂସା ହୋଇପାରେ କି ?" ଏ କଥା ଶୁଣିବା ମାତ୍ରେ ସମସ୍ତେ ଏକବାକ୍ୟରେ ସ୍ୱୀକାର କରିଗଲେ ଯେ ଏହା ହିଁ ସେହି ପ୍ରଶ୍ନର ଏକମାତ୍ର ସମାଧାନ । କେହି କେହି ଆନନ୍ଦ ପରିପ୍ଳୁତ ଅନ୍ତରରେ ଗଦାଧରଙ୍କୁ କୋଳରେ ନେଇ ବସାଇ ଆଶୀର୍ବାଦ କରିବାକୁ ଲାଗିଲେ । କେହିଅବା ସ୍ତମ୍ଭିତପ୍ରାୟ ହୋଇ ତାଙ୍କୁ ଦୈବଶକ୍ତିସମ୍ପନ୍ନ ଭାବି ତାଙ୍କ ଆଡ଼କୁ ଚାହିଁ ରହିଲେ ।

ଯେ ଯାହା ହେଉ, ଉପନୟନ ହେବା ପରେ ଗଦାଧରଙ୍କ ଭାବ-ପ୍ରବଣ ହୃଦୟ ନିଜ ପ୍ରକୃତିର ଅନୁକୂଳ ପୂଜା ଓ ଧ୍ୟାନରେ ଏକାଗ୍ର ହୋଇ ତାଙ୍କୁ ଭାବସମାଧି ବା ସବିକଳ୍ପ ସମାଧିର ଅଧିକାରୀ କଲା । ଏହି ସମାଧି ସାହାଯ୍ୟରେ ତାଙ୍କ କୈଶୋର ଜୀବନରେ ନାନା ଦିବ୍ୟ ଦର୍ଶନ ମଧ୍ୟ ବେଳେବେଳେ ଉପସ୍ଥିତ ହେଲା । କହିବା ବାହୁଲ୍ୟ, ସେହି ବୟସରେ ସୁଦ୍ଧା ବିଭିନ୍ନ ଦେବଦେବୀଙ୍କର ଉପାସକମାନଙ୍କ ପ୍ରତି ଗଦାଧରଙ୍କର କୌଣସି ବିଦ୍ୱେଷଭାବ ନ ଥିଲା । ସେ ସମସ୍ତଙ୍କୁ ଆପଣାର ମନେ କରୁଥିଲେ । ଧର୍ମପ୍ରବୃତ୍ତିର ଏପରି ଉତ୍ତରୋତ୍ତର ପରିଣତି ହେଲେ ମଧ୍ୟ ବିଦ୍ୟାଭ୍ୟାସରେ ଗଦାଧରଙ୍କର ଦିନୁଦିନ ଅନୁରାଗ ହ୍ରାସ ପାଇବାରେ ଲାଗିଲା । କାରଣ ତାଙ୍କର ଅନ୍ତର୍ଦୃଷ୍ଟି ବା ସୂକ୍ଷ୍ମ ଦୃଷ୍ଟି ତାଙ୍କୁ ବର୍ତ୍ତମାନ ସବୁ ବ୍ୟକ୍ତିଙ୍କ କାର୍ଯ୍ୟର

ଉଦ୍ଦେଶ୍ୟ ନିରୂପଣରେ ପ୍ରଥମେ ପ୍ରରୋଚିତ କରାଉଥିଲା; ଏହା ସଙ୍ଗେ ସଙ୍ଗେ ତାଙ୍କ ପିତାଙ୍କର ବୈରାଗ୍ୟ, ଈଶ୍ୱରଭକ୍ତି, ସତ୍ୟ, ସଦାଚାର ଓ ଧର୍ମ-ପରାୟଣତାଦି ଗୁଣସବୁକୁ ଆଦର୍ଶରୂପେ ସମ୍ମୁଖରେ ରଖି ସେଗୁଡ଼ିକର ଆଚରଣର ମୂଲ୍ୟ ନିର୍ଦ୍ଦେଶରେ ପ୍ରବୃତ୍ତ କରାଉଥିଲା । ଏହିରୂପେ ଦୁଇଟି ବର୍ଷ କଟିଗଲା ଏବଂ ଗଦାଧର କ୍ରମେ ଦ୍ୱାଦଶ ବର୍ଷ ବୟସରେ ଉପନୀତ ହେଲେ । ଇତିମଧ୍ୟରେ ରାମକୁମାର ଦେଖିଲେ ଯେ ରାମେଶ୍ୱରଙ୍କର ବିବାହ ବୟସ ହୋଇଗଲାଣି । କାମାରପୁକୁର ନିକଟବର୍ତ୍ତୀ ଗୌରହାଟି ନାମକ ଗ୍ରାମନିବାସୀ ରାମସଦୟ ବନ୍ଦୋପାଧ୍ୟାୟଙ୍କ ଭଗିନୀ ସହିତ ରାମେଶ୍ୱରଙ୍କର ବିବାହ ସ୍ଥିର ହୋଇଗଲା ଏବଂ ତତ୍ ସଙ୍ଗେ ସଙ୍ଗେ ରାମସଦୟଙ୍କ ସହିତ ନିଜର ଭଗିନୀ ସର୍ବମଙ୍ଗଳାଙ୍କର ମଧ୍ୟ ପରିଣୟ ହୋଇଗଲା ।

ରାମକୁମାରଙ୍କ ପାରିବାରିକ ଜୀବନରେ ଇତିମଧ୍ୟରେ ଆଉ ଗୋଟିଏ ବିଶେଷ ଘଟଣା ଉପସ୍ଥିତ ହେଲା । ତାଙ୍କର ପତ୍ନୀଙ୍କର ଗର୍ଭୋଦୟ ହେବାର ଦେଖି ପରିବାରର ସମସ୍ତେ ଆନନ୍ଦିତ ହେବା ସଙ୍ଗେ ସଙ୍ଗେ ଆଶଙ୍କିତ ମଧ୍ୟ ହେଲେ । ସମସ୍ତେ ଆଗରୁ ରାମକୁମାରଙ୍କ ମୁଖରୁ ଶୁଣିଥିଲେ ଯେ ଗର୍ଭଧାରଣ କଲେ ତାଙ୍କ ପତ୍ନୀଙ୍କର ମୃତ୍ୟୁ ହେବାର ସମ୍ଭାବନା ରହିଛି । ବର୍ତ୍ତମାନ ପତ୍ନୀଙ୍କର ପ୍ରସବକାଳ ନିକଟବର୍ତ୍ତୀ ହେବାର ଦେଖି ସେ ନିଜର ପୂର୍ବ ଗଣନା ସ୍ମରଣ କରି ଅଧିକତର ବିଷଣ୍ଣ ହେବାକୁ ଲାଗିଲେ । କ୍ରମେ ସେହି ମୁହୂର୍ତ୍ତ ବାସ୍ତବିକ୍ ଉପସ୍ଥିତ ହେଲା—ତାଙ୍କର ପତ୍ନୀ ଗୋଟିଏ ସୁନ୍ଦର ପୁତ୍ର ପ୍ରସବ କରି ତା'ର ମୁହଁକୁ ଚାହିଁ ଚାହିଁ ସେହି ସୂତିକାଗୃହରେ ସ୍ୱର୍ଗାରୋହଣ କଲେ । ରାମକୁମାରଙ୍କ ଦରିଦ୍ର ସଂସାର ଭିତରେ ଏହି ଶୋଚନୀୟ ଦୁର୍ଘଟନାରେ ସମସ୍ତେ ପୁନଶ୍ଚ ଗଭୀର ଶୋକରେ ମୂହ୍ୟମାନ ହୋଇପଡ଼ିଲେ ।

ପତ୍ନୀଙ୍କର ଏଭଳି ଶୋଚନୀୟ ମୃତ୍ୟୁ ପରେ ରାମକୁମାରଙ୍କର ଦୁଃଖ ଦୁର୍ଦ୍ଦିନ କ୍ରମେ ଅସହନୀୟ ହେଲା । ଲକ୍ଷ୍ମୀଜଳା ଜମିରେ ପ୍ରଚୁର ଧାନ ଫଳିଲେ ମଧ୍ୟ ଲୁଗାପଟା ତେଲଲୁଣ ଆଦି ପ୍ରତିଦିନର ଖରଚ ତୁଲାଇବା ଲାଗି ପଇସା ଅଣ୍ଟିଲା ନାହିଁ । ଘରେ ଅଭାବ ଅସୁବିଧା ଦିନକୁ ଦିନ ବଢ଼ି ଚାଲିଲା । ସଂସାର ଚଳାଇବାକୁ ଧାର କରଜ କରୁକରୁ କ୍ରମେ ରାମକୁମାର ଭୟଙ୍କର ଋଣଜାଲରେ

ବୁଡ଼ିଗଲେ । ବନ୍ଧୁମାନେ ଅନ୍ୟତ୍ର ଯାଇ ଆୟର ପନ୍ଥା ଖୋଜିବାକୁ ପରାମର୍ଶ ଦେଲେ । ରାମକୁମାର ମଧ୍ୟ ସେଥିଲାଗି ପ୍ରସ୍ତୁତ ହେଲେ । ପତ୍ନୀ-ବିୟୋଗର ଅଳ୍ପ ଦିନ ପରେ ରାମକୁମାର ରାମେଶ୍ୱରଙ୍କ ଉପରେ ସଂସାରର ଭାର ଅର୍ପଣ କରି କଲିକତା ଆସିଲେ । ସେଠାରେ ଝାମାପୁକୁର ନାମକ ପାଡ଼ାରେ ସଂସ୍କୃତ ଟୋଲଟିଏ ଖୋଲି କେତେକ ଛାତ୍ର ସଂଗ୍ରହ କରି ପଢ଼ାଇଲେ ।

ବର୍ତ୍ତମାନଠାରୁ ଘର ସଂସାରର ସମସ୍ତ ଦାୟିତ୍ୱ ଏବଂ ରାମକୁମାରଙ୍କର ନବଜାତ ଶିଶୁଟିର (ଅକ୍ଷୟର) ଲାଳନପାଳନର ଭାର ଚନ୍ଦ୍ରାଦେବୀଙ୍କ ଉପରେ ପଡ଼ିଲା । ମଝିଆଁ ପୁଅ ରାମେଶ୍ୱରଙ୍କର ସ୍ତ୍ରୀ ସେତେବେଳକୁ ଅଳ୍ପବୟସ୍କା ବାଳିକା ମାତ୍ର । ତା' ଉପରେ କୌଣସି ଦାୟିତ୍ୱ ଦିଆଯାଇ ନ ପାରେ । ଅଠାବନବର୍ଷ ବୟସରେ ସଂସାରର ସମସ୍ତ ଭାର କାନ୍ଧ ଉପରକୁ ନେଇ ତୁଲାଇବା କ'ଣ ଏତେ ସହଜସାଧ୍ୟ ବିଷୟ ? ସକଳ କଷ୍ଟ ସତ୍ତ୍ୱେ ଚନ୍ଦ୍ରାଦେବୀ ଭାବିଲେ—ଏସବୁ ସେହି ପରମାରାଧ୍ୟ ଶ୍ରୀରଘୁବୀରଙ୍କର ଇଚ୍ଛା ! ବିନା ଆପତ୍ତିରେ ସେ ସମସ୍ତ ଦାୟିତ୍ୱ ନୀରବରେ ନିଜ ଉପରକୁ ନେଇନେଲେ । ରାମେଶ୍ୱର ଥିଲେ ଜଣେ କୃତବିଦ୍ୟ ବ୍ୟକ୍ତି । ମାତ୍ର ପଲ୍ଲୀ ଅଞ୍ଚଳରେ ସେ କିଛି ଅର୍ଥ ଉପାର୍ଜନର ପନ୍ଥା ପାଇଲେ ନାହିଁ । ସେ ଥିଲେ ସାଧୁସଙ୍ଗପ୍ରିୟ ଓ ଖୁବ୍ ଦାନଶୀଳ, ମୁକ୍ତହସ୍ତ । ଆୟରୁ ବ୍ୟୟ ଅଧିକ କରିପକାନ୍ତି । ଭାବନ୍ତି—ଯାହା କରିବେ ରଘୁବୀର ' ଏପରି ଭାବରେ ଦିନ କଟୁଥାଏ । କେବଳ ଏତିକି ନୁହେଁ, ସାନ ଭାଇ ଗଦାଧର ପାଠ ପଢ଼ୁଛି କି ନାହିଁ, କିପରି ପଢ଼ୁଛି—ଏସବୁ ବିଷୟରେ ମଧ୍ୟ ସେ ଉଦାସୀନ ଥାଆନ୍ତି । ଏଣେ ଗଦାଧର ଦିନେ ଦିନେ ବିଦ୍ୟାଳୟକୁ ଯାଆନ୍ତି ତ—ବାକି ସମୟ କଟାଇଦିଅନ୍ତି ମାଆଙ୍କୁ ଘରକାମରେ ସାହାଯ୍ୟ କରିବାରେ—ଏବଂ ରଘୁବୀରଙ୍କର ସେବାପୂଜା କର୍ମରେ । ଏଥିରେ ଗାଁର ସ୍ତ୍ରୀଲୋକମାନେ ତାଙ୍କ ସହିତ ଅଧିକ ମିଶିବାର ସୁଯୋଗ ପାଆନ୍ତି । କାରଣ ଘରର କାମଦାମ ସାରି ଅବସର ବେଳେ ସେମାନେ ଆସନ୍ତି ଚନ୍ଦ୍ରାଦେବୀଙ୍କ ପାଖକୁ । ସେତେବେଳେ ଯଦି ଗଦାଧରଙ୍କୁ ସେଠାରେ ଦେଖନ୍ତି ତେବେ ସେମାନେ ତାଙ୍କୁ କେବେ ଗୀତ ବୋଲିବା ଲାଗି କିମ୍ବା ଧର୍ମ-ଉପାଖ୍ୟାନଟିଏ ପଢ଼ି ଶୁଣାଇବା ଲାଗି ଅନୁରୋଧ କରନ୍ତି । ଏହିଭାବରେ ସେମାନଙ୍କ ଆଗରେ

# ଠାକୁରଙ୍କ ବଂଶ ତାଲିକା

- ମାଣିକରାମ ଚଟ୍ଟୋପାଧ୍ୟାୟ
  - କ୍ଷୁଦିରାମ
    - ରାମକୁମାର
    - କାତ୍ୟାୟନୀ
      - ସାରଦାଚରଣ
      - ଶୀତଳମଣି
    - ରାମେଶ୍ୱର
      - ରାମଲାଲ
      - ଲକ୍ଷ୍ମୀ
      - ଶିବରାମ
    - ଶ୍ରୀରାମକୃଷ୍ଣ
    - ସର୍ବମଙ୍ଗଳା
  - ରାମଶୀଳା = ଭାଗବତ ବନ୍ଦୋପାଧ୍ୟାୟ
    - ରାମଚାନ୍ଦ ବନ୍ଦୋପାଧ୍ୟାୟ
    - ଶ୍ରୀମତୀ ହେମାଙ୍ଗିନୀ = କୃଷ୍ଣଚନ୍ଦ୍ର ମୁଖୋପାଧ୍ୟାୟ
      - ରାଘବ
      - ରାମରତନ
      - ହୃଦୟ
      - ରାଜାରାମ
  - ନିଧିରାମ
  - କାନାଇରାମ
    - ରାମତାରକ (ହଳଧାରୀ)
    - କାଳିଦାସ
      - ଦୀନନାଥ
      - ରାମଦାସ
      - ହରମଣି

ଧର୍ମପୁସ୍ତକ ପଢ଼ିବା ବା ସଙ୍ଗୀତ ଶୁଣାଇବା ଗଦାଧରଙ୍କ ପକ୍ଷରେ ଏକ କର୍ତ୍ତବ୍ୟ ନୈମିତ୍ତିକ ବିଷୟ ହୋଇଗଲା । ଗଦାଧରଙ୍କର ଜ୍ୱଳନ୍ତ ଦେବଭକ୍ତି, ତନ୍ମୟ ଚିତ୍ତରେ ପୁରାଣପାଠ, ମଧୁର କଣ୍ଠନିଃସୃତ ସଙ୍ଗୀତ ସହିତ ସେମାନଙ୍କ ସଙ୍ଗେ ଆତ୍ମୀୟସୁଲଭ ବ୍ୟବହାର ଦେଖି ସେହି ପଲ୍ଲିବାସିନୀ ରମଣୀମାନଙ୍କର ସରଳ କୋମଳ ହୃଦୟରେ ଅପୂର୍ବ ଭକ୍ତି ଏବଂ ପ୍ରୀତିଭାବର ଉଦୟ ହେଉଥିଲା ।

ସେହି ଗାଁରେ ଦୁର୍ଗାଦାସ ପାଇନ ନାମରେ ଜଣେ ବଣିକ ଥିଲେ । ସେ ଯଦିଓ ଗଦାଧରଙ୍କୁ ଖୁବ୍ ସ୍ନେହ ଶ୍ରଦ୍ଧା କରୁଥିଲେ, ତଥାପି ଗାଁର ସ୍ତ୍ରୀଲୋକଙ୍କ ସହିତ ତାଙ୍କର ଏତେ ଘନିଷ୍ଠ ମିଳାମିଶା ଏବଂ ଯେ କୌଣସି ସମୟରେ ସେମାନଙ୍କୁ ଅନ୍ତଃପୁରରେ ଯାଇ ଭେଟିବା କଥାଟାକୁ ସେ ଆଦୌ ପସନ୍ଦ କରିପାରୁ ନ ଥିଲେ । ତେଣୁ ସେ ଏଥିରେ ଆପତ୍ତି ଉଠାଇଲେ । ତାଙ୍କର ମତ ଥିଲା—ସେ ଯେ କେହି ହେଉ ସ୍ତ୍ରୀଲୋକଙ୍କ ସଙ୍ଗେ ଏଭଳି ମିଳାମିଶା ଭଲ ନୁହେଁ । ଦିନେ ସେ ତାଙ୍କର ଜଣେ ଆତ୍ମୀୟଙ୍କ ପାଖରେ ଅହଙ୍କାର କରି କହୁଥିଲେ, "ମୋ ଘର ଭିତରେ କେହି ପଶି ପାରିବେ ନାହିଁ କି ସ୍ତ୍ରୀଲୋକଙ୍କ ସଙ୍ଗେ ମିଳାମିଶା କରିପାରିବେ ନାହିଁ । ମୋ ଘରର ସ୍ତ୍ରୀଲୋକଙ୍କୁ କେହି କେବେ ଦେଖି ମଧ୍ୟ ନ ଥିବ । ମୁଁ ଖୁବ କାଇଦା କଟକଣାରେ ସେମାନଙ୍କୁ ଅବରୋଧ କରି ରଖିଛି ।" ସେ ଏପରି କହୁଥିଲାବେଳେ ହଠାତ୍ ଗଦାଧର ପହଞ୍ଚିଗଲେ । ଏକଥା ଶୁଣି ସେ କହିଲେ, "ପରଦା ଘୋଡ଼ାଇ କ'ଣ କେହି ସ୍ତ୍ରୀଲୋକଙ୍କୁ ରକ୍ଷା କରିପାରିବ ? ସତ୍ ଶିକ୍ଷା ଆଉ ଦେବଭକ୍ତି ପ୍ରଭାବରେ ହିଁ ସେମାନେ ସୁରକ୍ଷିତା ହୁଅନ୍ତି । ମୁଁ ଯଦି ଇଚ୍ଛା କରିବି, ତେବେ ତୁମ ଘରର ସବୁ ସ୍ତ୍ରୀଲୋକଙ୍କୁ ଦେଖିପାରିବି ଓ ସବୁ କଥା ମଧ୍ୟ ଜାଣିପାରିବି ।"

ଦୁର୍ଗାଦାସ ଏକଥା ଶୁଣି ଆହୁରି ଅହଙ୍କାରୀ ହୋଇଉଠିଲେ । ଟାଣ-ଗଳାରେ କହିଲେ, "କେମିତି ଜାଣିପାରିବ, ଜାଣିଲି ଦେଖି ।" ଗଦାଧର ମଧ୍ୟ ଉତ୍ତର ଦେଲେ, "ଆଚ୍ଛା ତା'ହେଲେ ଦେଖିବା"

ଏତିକି କହି ସେ ସେଠାରୁ ଚାଲି ଆସିଲେ ।

ଏହାପରେ ଦିନକର କଥା । ସନ୍ଧ୍ୟା ହେବାକୁ ଅଳ୍ପ ଡେରି ଅଛି । ଗଦାଧର ଗୋଟିଏ ମୋଟା ମଇଳା ଶାଢ଼ୀ ପିନ୍ଧି ରୂପାର କାଚ ଏଣୁ ତେଣୁ

ଗହଣା ଲଗାଇ ଜଣେ ଦରିଦ୍ରା ତନ୍ତୀ ସ୍ତ୍ରୀଲୋକର ବେଶ ଧରି ଗୋଟିଏ ଟୋକେଇ କାଖରେ ଧରି, ଓଢ଼ଣାରେ ମୁହଁ ଲୁଚାଇ ହାଟ ଆଡ଼ୁ ଦୁର୍ଗାଦାସଙ୍କ ଘରଆଡ଼କୁ ଆସିଲେ । ତାଙ୍କ ଦାଣ୍ଡ ଦୁଆର ମୁହଁରେ ଠିଆ ହୋଇ ଦେଖିଲେ ଦୁର୍ଗାଦାସ ପିଣ୍ଡାରେ ବସି ତାଙ୍କର ବନ୍ଧୁମାନଙ୍କ ସଙ୍ଗେ ଗପସପରେ ମାତିଛନ୍ତି । ତନ୍ତୀଆଣୀ ବେଶଧାରୀ ଗଦାଧର ଅନୁଚ୍ଚ ସ୍ୱରରେ କହିଲେ, "ଆଜ୍ଞା ! ଅମୁକ ଗାଁର ମୁଁ ତନ୍ତୀଘରର ବୋହୂ । ହାଟକୁ ଆସିଥିଲି ସୂତା ବିକିବା ପାଇଁ । ମୋର ସାଙ୍ଗସାଥୀମାନେ ମତେ ଯେ ଯୁଆଡ଼େ ଛାଡ଼ି ଚାଲିଗଲେ । ସନ୍ଧ୍ୟା ହୋଇ ଆସିଲାଣି । ଏକୁଟିଆ ଯିବାକୁ ଡର ଲାଗିବ । ଆଜି ରାତିଟା ମୋତେ ଆପଣଙ୍କ ଘରେ ଆଶ୍ରୟ ଦିଅନ୍ତୁ ।"

ଦୁର୍ଗାଦାସ ସ୍ତ୍ରୀଲୋକଟିର ବିପନ୍ନ ଅବସ୍ଥା ଦେଖି ତା'ର ପ୍ରାର୍ଥନାରେ ରାଜି ହୋଇ ତାକୁ ଘର ଭିତରକୁ ପଠାଇଦେଲେ । ଘର ଭିତରେ ସ୍ତ୍ରୀ-ଲୋକମାନେ ଏହି ଅସହାୟା ତନ୍ତୀଘରର ବୋହୂଟିକୁ ଦେଖି ଦୟା କଲେ । ତା'ର ବିଶ୍ରାମ ପାଇଁ ଜାଗାଟିଏ ଛାଡ଼ିଦେଲେ ଏବଂ ମୁଢ଼ିଚୁଡ଼ା ଯାହା ଘରେ ଥିଲା ତାକୁ ଜଳଖିଆ କରିବା ପାଇଁ ଦେଲେ । ଗଦାଧର ସେଠାରେ ବିଶ୍ରାମ ନେଲେ, ଖିଆପିଆ କଲେ । ତା' ଭିତରେ ସେ ଘର ଭିତରର ସବୁକଥା ଜାଣି ନେଲେ । ପ୍ରତ୍ୟେକ ସ୍ତ୍ରୀଲୋକର ଗତିବିଧି ଆଚାର ବ୍ୟବହାର ତନ୍ନତନ୍ନ କରି ଲକ୍ଷ୍ୟ କରିନେଲେ ଏବଂ ସେମାନଙ୍କର ବାକ୍ୟାଳାପ ମଧ୍ୟ ସବୁ ମନ ଦେଇ ଶୁଣିନେଲେ । ରାତି ଆସି ପ୍ରାୟ ପ୍ରହରେ ହେଲା । ଏଣେ ଗଦାଧରଙ୍କୁ ଏତେ ରାତିଯାଏ ଘରକୁ ଫେରି ନ ଥିବା ଦେଖି ଚନ୍ଦ୍ରାଦେବୀ ବ୍ୟସ୍ତ ହୋଇ ରାମେଶ୍ୱରଙ୍କୁ ଅନୁସନ୍ଧାନ ଲାଗି ପଠାଇଲେ । ରାମେଶ୍ୱର ଦୁର୍ଗାଦାସଙ୍କ ଘର ପର୍ଯ୍ୟନ୍ତ ଯାଇ ସେଠାରେ ଗଦାଧରଙ୍କ ନାମ ଧରି ଉଚ୍ଚ ସ୍ୱରରେ ଡାକିବାକୁ ଲାଗିଲେ । ତାଙ୍କର ସ୍ୱର ଶୁଣି ଗଦାଧର "ଭାଇ ! ଯାଉଛି, ଯାଉଛି" କହି ଦ୍ରୁତପଦରେ ଘର ଭିତରୁ ବାହାରି ଆସି ଭାଇ ପାଖରେ ପହଞ୍ଚିଲେ । ଏହା ଜାଣିପାରି ଦୁର୍ଗାଦାସ ପ୍ରଥମେ କିଛି ଅପ୍ରତିଭ ଏବଂ ରୁଷ୍ଟ ହୋଇ ପଡ଼ିଲେ । କିନ୍ତୁ ପରେ ପରେ ଗଦାଧର କେଡ଼େ ଚମତ୍କାର ଭାବେ ତନ୍ତୀଆଣୀ ବେଶ ପିନ୍ଧି ଏତେ ସୁନ୍ଦର ଅଭିନୟ କରି ତାଙ୍କୁ ଠକିଦେଇ ପାରିଲେ—ଏହା କହି ହସି

ହସି ଗଡ଼ିଗଲେ । ସେହିଦିନଠାରୁ ତାଙ୍କ ଘରେ ଗଦାଧର ଉପସ୍ଥିତ ହେଲେ ଦୁର୍ଗାଦାସଙ୍କ ପରଦାନଶୀନା ସ୍ତ୍ରୀଲୋକମାନେ ତାଙ୍କ ପାଖକୁ ବିନାବାଧାରେ ଯିବା ଆସିବା କଲେ ।

ଗଦାଧରଙ୍କୁ ବର୍ତ୍ତମାନ ଚଉଦ ବର୍ଷ ବୟସ । କ୍ରମେ ତାଙ୍କର ଭକ୍ତି ଏବଂ ଭାବୁକତା ଏତେ ବୃଦ୍ଧି ପାଇଲା ଯେ ପାଠଶାଳାର ଅର୍ଥକରୀ ଶିକ୍ଷା ତାଙ୍କ ପକ୍ଷରେ ନିତାନ୍ତ ନିଷ୍ପ୍ରୟୋଜନ ମନେ ହେଲା । ତାଙ୍କର ବୋଧ ହେଲା ଯେ ସେ ଅନ୍ୟ କାର୍ଯ୍ୟ କରିବାକୁ ଜନ୍ମଗ୍ରହଣ କରିଛନ୍ତି । ଧର୍ମସାକ୍ଷାତ୍‌କାର ଲାଗି ସେ ତାଙ୍କର ସମସ୍ତ ଶକ୍ତି ନିୟୋଜିତ କରିବାକୁ ମନସ୍ଥ କଲେ । ନିଜ ଜୀବନ ଭବିଷ୍ୟତରେ କେଉଁଭାବରେ ପରିଚାଳିତ କରିବାକୁ ହେବ, ଏ ପ୍ରଶ୍ନ ତାଙ୍କ ମନରେ ଯେତେବେଳେ ଉଦିତ ହେଉଥିଲା, ସେତେବେଳେ ତାଙ୍କର ବିଚାରଶୀଳ ବୁଦ୍ଧି ତାଙ୍କ ଆଗରେ କଳ୍ପନାରେ ଯେଉଁ ଛବିଟିଏ ତାଙ୍କ ସମ୍ବନ୍ଧରେ ଉଜ୍ଜ୍ୱଳ ଭାବରେ ଦେଖାଉଥିଲା, ତାହା ହେଲା—ଈଶ୍ୱରଙ୍କ ପ୍ରତି ଏକାନ୍ତ ନିର୍ଭରଶୀଳ, ଗୈରିକବସନ-ପରିହିତ, ଭିକ୍ଷାଲବ୍ଧ-ଭୋଜନକାରୀ, ନିଃସଙ୍ଗ ବିଚରଣକାରୀ, ପବିତ୍ର ଅଗ୍ନିଧାରୀ ସନ୍ୟାସୀଟିଏ ।

ଏହି ସମୟରେ ମଧ୍ୟ ତଦନୁରୂପ ଘଟଣାଟିଏ ଘଟିଲା, ଯାହା ଫଳରେ କି ଗଦାଧର ସେହି ଅର୍ଥକରୀ ବିଦ୍ୟାଭ୍ୟାସ ପରିତ୍ୟାଗ କରିବାର ସୁଯୋଗ ପାଇଗଲେ । ଗଦାଧରଙ୍କର ତ ଅଭିନୟ-ଶକ୍ତି ଖୁବ୍ ବିଚକ୍ଷଣ ଥିଲା । ତାହା ଦେଖି ଗାଆଁର ସଙ୍ଗୀମାନେ ଗୋଟିଏ ଯାତ୍ରାଦଳ ଗଢ଼ିବାର ପ୍ରସ୍ତାବ ଆଣିଲେ । ଗଦାଧର ସେଥିରେ ରାଜି ହୋଇଗଲେ । ଯାତ୍ରାଦଳ ଗଢ଼ାଗଲା । ଗଦାଧର ହେଲେ ଓସ୍ତାଦ୍ । ଶ୍ରୀରାମଚନ୍ଦ୍ର ଓ ଶ୍ରୀକୃଷ୍ଣଙ୍କ ଲୀଳା ସମ୍ବନ୍ଧୀୟ ଯାତ୍ରା ବହିମାନ ଆଣି ସେ ପିଲମାନଙ୍କୁ ଗୀତ ଓ ବଚନିକାମାନ ଶିଖାଇଲେ । ଶିଖିସାରି ସେମାନେ ମାଣିକରାଜାଙ୍କ ଆମ୍ବତୋଟାରେ ସେହିସବୁ ଅଭିନୟ ଆରମ୍ଭ କଲେ । ପ୍ରତିଦିନ ଏମାନଙ୍କର ଗୀତ ଓ ବଚନିକାରେ ଆମ୍ବ-ତୋଟାଟି ମୁଖରିତ ହୋଇ ଉଠୁଥାଏ । ଶୁଣାଯାଏ ଏହି ଅଭିନୟକାଳରେ ମଧ୍ୟ ଗଦାଧରଙ୍କର ବେଳେବେଳେ ଭାବସମାଧି ହୋଇଯାଉଥାଏ । ଏହି ପରି ସଂକୀର୍ତ୍ତନ ଓ ଅଭିନୟରେ ଗଦାଧର ବହୁ ସମୟ ଅତିବାହିତ

କଲେ । ଫଳରେ ପାଠଶାଳାକୁ ଯିବା କ୍ରମଶଃ ବନ୍ଦ ହୋଇ ଆସିଲା । ଏହାବି ଭିତରେ ମଧ୍ୟ ଗଦାଧର ମା' ଚନ୍ଦ୍ରାଦେବୀଙ୍କୁ ଘର-କାମରେ ସାହାଯ୍ୟ କରୁଥାଆନ୍ତି ।

ଏହିଭଳି କଟିଗଲା ଅଧିକ ତିନିବର୍ଷ । ଗଦାଧର ସତର ବର୍ଷ ବୟସରେ ପଦାର୍ପଣ କଲେ ।

ଏଣେ ତିନି ବର୍ଷ କାଳ ପରିଶ୍ରମ ଫଳରେ ରାମକୁମାରଙ୍କର ଚତୁଷ୍ପାଠୀରେ ଛାତ୍ରସଂଖ୍ୟା ବେଶ୍ ବୃଦ୍ଧି ପାଇଯାଇଥିଲା ଓ ତାଙ୍କର ଉପାର୍ଜ୍ଜନ ମଧ୍ୟ ପୂର୍ବାପେକ୍ଷା କିଛି ଅଧିକ ହୋଇଥିଲା । ରାମକୁମାର ଗଦାଧରଙ୍କର ପାଠପଢ଼ାରେ ଏପରି ଉଦାସୀନତା ଲକ୍ଷ୍ୟ କରି ମାଆ ଏବଂ ରାମେଶ୍ୱରଙ୍କ ସହିତ ପରାମର୍ଶ କଲେ ଗଦାଧରଙ୍କୁ ତାଙ୍କ ପାଖକୁ କଲିକତା ନେଇ ଆସିବା ପାଇଁ । ଗଦାଧର ତ ବଡ଼ ଭାଇ ରାମକୁମାରଙ୍କୁ ପିତୃତୁଲ୍ୟ ଭକ୍ତି କରୁଥିଲେ; ତେଣୁ ସେ ଏ ପ୍ରସ୍ତାବରେ ରାଜି ହୋଇଗଲେ । ତାଙ୍କର ମନେହେଲା— ଅନ୍ତତଃ କଲିକତା ଯାଇ ସେ ତାଙ୍କର ବଡ଼ ଭାଇଙ୍କୁ ଯେକୌଣସି ଭାବରେ ସାହାଯ୍ୟ କରିପାରିବେ ।

ତା'ପରେ ଗୋଟିଏ ଶୁଭ ଦିନ ଦେଖି ଶୁଭ ମୁହୂର୍ତ୍ତରେ ରାମକୁମାର ଗଦାଧରଙ୍କୁ ଧରି ରଘୁବୀରଙ୍କୁ ପ୍ରଣାମପୂର୍ବକ ମାଆଙ୍କର ପଦଧୂଳି ନେଇ କଲିକତା ଯାତ୍ରା କଲେ ।

# ଚତୁର୍ଥ ଅଧ୍ୟାୟ

## ଦକ୍ଷିଣେଶ୍ୱର ମନ୍ଦିରରେ

ବର୍ତ୍ତମାନ ଗଦାଧର କଲିକତାରେ । ନିଜର ମନୋମତ ପୂଜାଦି କାର୍ଯ୍ୟ ପାଇ ସେ ଖୁବ୍ ଖୁସୀ । ତା' ସଙ୍ଗେ ସଙ୍ଗେ ବଡ଼ ଭାଇଙ୍କର କିଛି ସେବା ମଧ୍ୟ କରନ୍ତି ଏବଂ ତାଙ୍କ ପାଖରେ କିଛି ପାଠ ମଧ୍ୟ ପଢ଼ନ୍ତି । ଏକେ ତ ଗଦାଧର ଥିଲେ ପ୍ରିୟଦର୍ଶନ । ତା'ଛଡ଼ା ତାଙ୍କର ବହୁବିଧ ସଦ୍‌ଗୁଣାବଳୀ ଦେଖି ଅଳ୍ପକାଳ ମଧ୍ୟରେ ଯଜମାନଙ୍କ ପରିବାରବର୍ଗ ସମସ୍ତେ ତାଙ୍କୁ ଖୁବ୍ ଭଲ ପାଇଲେ । କାମାରପୁକୁର ଭଳି ଏଠାରେ ମଧ୍ୟ ଏହିସବୁ ସଂଭ୍ରାନ୍ତ ପରିବାରର ମହିଳାଗଣ ତାଙ୍କର କର୍ମଦକ୍ଷତା, ସରଳ ବ୍ୟବହାର, ମଧୁର ଆଳାପ ଏବଂ ଦେବଭକ୍ତି ଦର୍ଶନରେ ବିମୁଗ୍ଧ ହୋଇ ତାଙ୍କ ନିକଟକୁ ନିଃସଙ୍କୋଚରେ ଯାତାୟାତ କରୁଥିଲେ । ଗଦାଧରଙ୍କ ମଧୁର କଣ୍ଠରୁ ଭଜନ ଶୁଣିବାକୁ ସେମାନେ ଅତ୍ୟନ୍ତ ଆଗ୍ରହ ଦେଖାଉଥିଲେ । ଗଦାଧର ମଧ୍ୟ ଅବସର ପାଇଲାମାତ୍ରେ ଏହିସବୁ ସମବେତ ନାରୀପୁରୁଷଙ୍କ ସହିତ ମିଳିତ ହୋଇ ଆନନ୍ଦରେ ଦିନ କାଟୁଥିଲେ । ସୁତରାଂ କଲିକତାକୁ ଆସି ସୁଦ୍ଧା ତାଙ୍କର ବିଦ୍ୟାଶିକ୍ଷାରେ ବେଶୀ କିଛି ଉନ୍ନତି ହେଲା ନାହିଁ । ପରିଶେଷରେ କର୍ତ୍ତବ୍ୟଜ୍ଞାନର ପ୍ରେରଣାରେ ରାମକୁମାର ଦିନେ ସାନ ଭାଇକୁ ପାଠଶାଠ ପଢ଼ୁ ନ ଥିବାରୁ ସାମାନ୍ୟ ତିରସ୍କାର କଲେ । ବଡ଼ ଭାଇଙ୍କର ତିରସ୍କାର ଓ ଅନୁଯୋଗ ଶୁଣି ଗଦାଧର ସେଦିନ ଦୃଢ଼କଣ୍ଠରେ ଉତ୍ତର ଦେଲେ, "ଚାଉଳ କଦଳୀ ବନ୍ଧା ବିଦ୍ୟା ମତେ ଶିଖିବାକୁ ଭଲ ଲାଗୁ ନାହିଁ । ମୁଁ ଏପରି ବିଦ୍ୟା ଶିଖିବାକୁ ଚାହେଁ, ଯେଉଁଥିରେ ଜ୍ଞାନୋଦୟ ହୋଇ ମନୁଷ୍ୟ ବାସ୍ତବିକ କୃତାର୍ଥ ହୋଇପାରିବ ।" ଅଳ୍ପବୟସ୍କ ବାଳକ ମୁହଁରୁ ଏ କଥା ଶୁଣି ରାମକୁମାର ସେଦିନ ଏହା ଉପରେ ବିଶେଷ କିଛି ଗୁରୁତ୍ୱ ଦେଲେ ନାହିଁ । ସେ ଭାବିଲେ —ପିଲାଦିନୁଁ ବାପମାଆଙ୍କ ପାଖରେ ଅତି ଗେହ୍ଲାରେ ବଢ଼ିଛି ତ ! ତେଣୁ

ପ୍ରଥମଥର ପାଇଁ ତାଙ୍କ ମୁହଁରୁ ଭର୍ତ୍ସନା ଶୁଣି ଅଭିମାନ ବା ବିରକ୍ତିରେ ହୁଏତ ଏପରି ଉତ୍ତର ଦେଉଛୁ । ରାମକୁମାର ଚିରଦିନ ସବୁକଥା ପାଇଁ ଭଗବାନଙ୍କ ଉପରେ ନିର୍ଭର କରିଥାଆନ୍ତି । ତେଣୁ ନିରୁପାୟ ହୋଇ ଏ କଥାରେ ସେ ଆଉ ବିଶେଷ ମୁଣ୍ଡ ଖେଳାଇଲେ ନାହିଁ । ସବୁଦିନ ଭଳି ଭଗ୍ନ-ହୃଦୟରେ ଯାହା ଏତେଦିନ ଧରି କରିଆସିଛନ୍ତି ତାହା ହିଁ କରି ଚାଲିଲେ ।

ଏହି ସମୟରେ ଏକ ଅଚିନ୍ତନୀୟ ଘଟଣା ଘଟିଗଲା—ଯାହା କି ଉଜ୍ଜ୍ୱଳ ଆଲୋକରେଖା ସଦୃଶ ତାଙ୍କୁ ଜୀବନର ରାହା ଦେଖାଇ ଦେଲା ଏବଂ ସେ ନିଶ୍ଚିନ୍ତ ହୋଇଗଲେ । ଏହି ଘଟଣାରେ କିଶୋର ଗଦାଧରଙ୍କ ଆଧ୍ୟାତ୍ମିକ ଜୀବନର ବିକାଶପଥ ମଧ୍ୟ ସହସା ଉନ୍ମୁକ୍ତ ହୋଇଗଲା । ଆମେ ବର୍ତ୍ତମାନ ସେହି ଘଟଣାର ଅନୁସରଣ କରିବା ।

କଲିକତାର ଦକ୍ଷିଣାଂଶରେ ଜାନ୍‌ବଜାର ବୋଲି ଗୋଟିଏ ପଲ୍ଲୀ । ସେହି ପଲ୍ଲୀରେ ମାହିଷ୍ୟକୁଳସମ୍ଭୂତା ପ୍ରଥିତକୀର୍ତ୍ତି ରାଣୀ ରାସମଣିଙ୍କର ନିବାସ ଥିଲା । କ୍ରମଶଃ ଚାରୋଟି କନ୍ୟାର ଜନ୍ମ ପରେ ରାଣୀ ଚଉରାଳିଶି ବର୍ଷ ବୟସରେ ବିଧବା ହେଲେ । ସେହିଦିନଠାରୁ ସ୍ୱାମୀ ସ୍ୱର୍ଗତ ରାମଚନ୍ଦ୍ର ଦାସଙ୍କ ପ୍ରଭୂତ ସମ୍ପତ୍ତିର ତତ୍ତ୍ୱାବଧାନରେ ସ୍ୱୟଂ ନିଯୁକ୍ତା ହୋଇ ତା'ର ସମଧିକ ଶ୍ରୀବୃଦ୍ଧିସାଧନପୂର୍ବକ ସେ ଅଳ୍ପକାଳ ମଧ୍ୟରେ କଲିକତାର ଅଧିବାସୀଙ୍କ ନିକଟରେ ଖୁବ୍ ସୁପରିଚିତା ହୋଇଉଠିଲେ । ରାଣୀ ରାସମଣି କେବଳ ଯେ ବିଷୟସମ୍ପତ୍ତି ପରିଚାଳନାରେ ଆପଣାର ଦକ୍ଷତା ପ୍ରମାଣିତ କରିଥିଲେ ତା' ନୁହେଁ; ତାଙ୍କର ଈଶ୍ୱରବିଶ୍ୱାସ, ଓଜସ୍ୱିତା, ଦରିଦ୍ରମାନଙ୍କ ପ୍ରତି ନିରନ୍ତର ସହାନୁଭୂତି, ତାଙ୍କର ଅଜସ୍ର ଦାନ, ଅକାତର ଅନ୍ନବ୍ୟୟ, ପ୍ରଭୃତି ଅନୁଷ୍ଠାନଗୁଡ଼ିକ ତାଙ୍କୁ ସମସ୍ତଙ୍କର ଖୁବ୍ ପ୍ରିୟଭାଜନ କରି ଦେଇଥିଲା । ଇତିମଧ୍ୟରେ ରାସମଣିଙ୍କର ତୃତୀୟା କନ୍ୟା ଗୋଟିଏ ମାତ୍ର ପୁତ୍ର ପ୍ରସବ କରି ମୃତ୍ୟୁମୁଖରେ ପଡ଼ିଲେ; କିନ୍ତୁ ମୃତଦାର ଏହି ଜାମାତା ମଥୁରାନାଥ ସୁଶ୍ରୀ ଏବଂ ବିଚକ୍ଷଣ ବିଷୟବୁଦ୍ଧିସମ୍ପନ୍ନ ବ୍ୟକ୍ତି ଥିଲେ । ରାସମଣି ପୁନର୍ବାର ତାଙ୍କର ଚତୁର୍ଥୀ କନ୍ୟା ଜଗଦମ୍ବା ଦାସୀଙ୍କ ସହ ଏହି ଜାମାତାଙ୍କର ବିବାହ କରାଇଦେଲେ ଏବଂ ମଥୁରାନାଥଙ୍କୁ ପ୍ରାୟ ଘରଜୋଇଁଆ କରି

ରଖି ତାଙ୍କ ଉପରେ ବିଷୟସମ୍ପତ୍ତିର ଅଧିକାଂଶ ଦାୟିତ୍ୱ ଅର୍ପଣ କରି କ୍ରମେ ନିଜକୁ ସେହିସବୁ ଜଞ୍ଜାଳରୁ ଧୀରେ ଧୀରେ ଅପସରାଇ ଆଣିଲେ ଏବଂ ଜୀବନର କ୍ଷଣସ୍ଥାୟିତ୍ୱ ଅନୁଭବ କରି ପୂଜାଧ୍ୟାନଧାରଣାଦିରେ ଅଧିକାଂଶ ସମୟ ଅତିବାହିତ କରିବାକୁ ଲାଗିଲେ ।

ଗୁଣବତୀ ରାଣୀ ରାସମଣିଙ୍କର କାଳୀଙ୍କ ପ୍ରତି ଖୁବ୍ ଭକ୍ତି ଥିଲା । ବହୁଦିନ ଧରି ତାଙ୍କ ହୃଦୟରେ ପ୍ରଗାଢ଼ ବାସନାଟିଏ ଜାଗ୍ରତ ହୋଇଥିଲା —ସେ କିପରି କାଶୀଧାମକୁ ଯାଇ ଶ୍ରୀବିଶ୍ୱନାଥ ଏବଂ ଅନ୍ନପୂର୍ଣ୍ଣାଙ୍କୁ ଦର୍ଶନ କରି ଷୋଡ଼ଶୋପଚାରରେ ପୂଜା କରି ଫେରିବେ । ତଦନୁଯାୟୀ ଯାତ୍ରାର ଦିନ ମଧ୍ୟ ସ୍ଥିର ହୋଇଗଲା; କିନ୍ତୁ ସେ ଯେଉଁଦିନ ଯିବେ, ତତ୍ପୂର୍ବ ରାତିରେ ସେ ଗୋଟିଏ ସ୍ୱପ୍ନ ଦେଖିଲେ । ସେ ଦେଖିଲେ ଯେ ଦେବୀ ତାଙ୍କ ସମ୍ମୁଖରେ ଆବିର୍ଭୂତା ହୋଇ କହୁଛନ୍ତି—"କାଶୀ ଯିବାର କିଛି ପ୍ରୟୋଜନ ନାହିଁ । ଗଙ୍ଗାକୂଳରେ ଏକ ମନୋରମ ସ୍ଥାନରେ ମୋର ମୂର୍ତ୍ତି ପ୍ରତିଷ୍ଠା କରି ପୂଜା ଓ ଭୋଗର ବ୍ୟବସ୍ଥା କର । ମୁଁ ଏହି-ମୂର୍ତ୍ତି ମଧ୍ୟରେ ଆବିଷ୍ଟ ହୋଇ ତୋ' ପାଖରୁ ସବୁଦିନେ ପୂଜା ଗ୍ରହଣ କରିବି ।"

ସକାଳୁ ଉଠି ରାଣୀ ଏହି ଦିବ୍ୟସ୍ୱପ୍ନକୁ ସ୍ମରଣ କରି ଅତ୍ୟନ୍ତ ପରିତୃପ୍ତ ହେଲେ । ତାଙ୍କର କାଶୀଯାତ୍ରା ସ୍ଥଗିତ ହେଲା । ସେ ସଂକଳ୍ପ କଲେ ଯେ ତାଙ୍କ ପାଖରେ ଯାହା କିଛି ସଞ୍ଚିତ ଧନରାଶି ଗଚ୍ଛିତ ଅଛି, ତାହା ସେ ଏହି କାର୍ଯ୍ୟରେ ନିୟୋଜିତ କରିବେ । ୧୮୪୭ ଖ୍ରୀଷ୍ଟାବ୍ଦରେ ଗଙ୍ଗାନଦୀର ପୂର୍ବ-ତୀରରେ ଦକ୍ଷିଣେଶ୍ୱର ନାମକ ସ୍ଥାନରେ ସେ ଗୋଟିଏ ବିସ୍ତୀର୍ଣ୍ଣ ଭୂମି କ୍ରୟ କଲେ । ତା' ଉପରେ ବହୁ ଅର୍ଥ ବ୍ୟୟ କରି ନବରତ୍ନ-ଶୋଭିତ ବୃହତ୍ ମନ୍ଦିରଟିଏ ନିର୍ମାଣ କରାଇଲେ ଏବଂ ମନ୍ଦିର ଚାରିପଟେ ସୁନ୍ଦର ଉଦ୍ୟାନଟିଏ ମଧ୍ୟ ପ୍ରସ୍ତୁତ କରାଇଲେ । ମନ୍ଦିର ଓ ମୂର୍ତ୍ତି ନିର୍ମାଣ ଯଥାକାଳରେ ସମାପ୍ତ ହୋଇଗଲା । ରାଣୀ ମନ୍ଦିର ଓ ମୂର୍ତ୍ତି ଇତ୍ୟାଦିର ପ୍ରତିଷ୍ଠା ପାଇଁ ବ୍ୟଗ୍ର ହୋଇ ଶୁଭ ଦିନଟିଏ ଖୋଜିଲେ । ୧୮୫୫ ମସୀହାର ମେ ମାସ ୩୧ ତାରିଖ ଗୁରୁବାର (୧୨୬୨ ସାଲର ଜ୍ୟେଷ୍ଠ ୧୮) ଦିନ ପ୍ରତିମା ପ୍ରତିଷ୍ଠା ହେବାର ସ୍ଥିର ହେଲା । ସେଦିନ ଶ୍ରୀଜଗନ୍ନାଥ ମହାପ୍ରଭୁଙ୍କର ସ୍ନାନଯାତ୍ରା ।

କିନ୍ତୁ ଅପ୍ରତ୍ୟାଶିତଭାବରେ ଏହି ଅଭୀଷ୍ଟ କାର୍ଯ୍ୟରେ ଗୋଟିଏ ବିଘ୍ନ ଉପସ୍ଥିତ ହେଲା । ଦେବୀଙ୍କୁ ଅନ୍ନ-ଭୋଗ ପ୍ରଦାନ କରିବା ପଥରେ ପ୍ରଧାନ ଅନ୍ତରାୟରୂପେ ଦେଖା ଦେଲା ଜାତି ଓ ସାମାଜିକ ପ୍ରଥା । ଏହି ଅନ୍ନ-ଭୋଗ ପ୍ରଦାନରେ ଅନୁମତି ପାଇବା ଲାଗି ରାଣୀ ରାସମଣି ନାନା ସ୍ଥାନରୁ ଶାସ୍ତ୍ରଜ୍ଞ ପଣ୍ଡିତମାନଙ୍କଠାରୁ ବ୍ୟବସ୍ଥାପତ୍ର ମଗାଇଲେ—କିନ୍ତୁ ସେମାନେ କେହି ତାଙ୍କୁ ଏ ବିଷୟରେ ଉତ୍ସାହିତ କଲେ ନାହିଁ । ପଣ୍ଡିତମାନଙ୍କ ପାଖରୁ ବାରମ୍ବାର ପ୍ରତ୍ୟାଖ୍ୟାତା ହୋଇ ତାଙ୍କର ଆଶା ଯେତେବେଳେ ଏ ବିଷୟରେ ସମୂଳେ ବିନଷ୍ଟ ହେବାକୁ ବସିଥିଲା, ସେତେବେଳେ ଝାମାପୁକୁରସ୍ଥିତ ଏକ ଚତୁଷ୍ପାଠୀରୁ ଦିନେ ବ୍ୟବସ୍ଥା ଆସି ପହଞ୍ଚିଲା— ପ୍ରତିଷ୍ଠା ପୂର୍ବରୁ ରାଣୀ ଯଦି ଉକ୍ତ ସମ୍ପତ୍ତିକୁ କୌଣସି ବ୍ରାହ୍ମଣଙ୍କୁ ଦାନ କରନ୍ତି ଏବଂ ସେହି ବ୍ରାହ୍ମଣ ଏହି ମନ୍ଦିରରେ ଦେବୀଙ୍କୁ ପ୍ରତିଷ୍ଠା କରି ଅନ୍ନ-ଭୋଗର ବ୍ୟବସ୍ଥା କରନ୍ତି, ତାହା ହେଲେ ଶାସ୍ତ୍ରନିୟମ ଯଥାଯଥ ରକ୍ଷିତ ହୋଇପାରିବ ଏବଂ ବ୍ରାହ୍ମଣାଦି ଉଚ୍ଚ ବର୍ଣ୍ଣ ଉକ୍ତ ଦେବାଳୟରେ ପ୍ରସାଦ ଗ୍ରହଣ କଲେ ମଧ୍ୟ ଦୋଷଭାଗୀ ହେବେ ନାହିଁ । ଏ ପ୍ରକାର ବ୍ୟବସ୍ଥା ପାଇ ରାଣୀଙ୍କ ହୃଦୟରେ ପୁନର୍ବାର ଆଶାତରୁ ପଲ୍ଲବିତ ହେବାକୁ ଲାଗିଲା । ବୁଦ୍ଧିମତୀ ରାଣୀ ଦୁଇ ଲକ୍ଷ ଛବିଶ ହଜାର ଟଙ୍କାର ଦେବୋତ୍ତର ସମ୍ପତ୍ତି ସହ ଦେବାଳୟଟିକୁ ଗୁରୁବଂଶୀୟମାନଙ୍କୁ ଦାନ କରିଦେଲେ ଏବଂ ନିଜେ ବଂଶାନୁକ୍ରମେ ଦେବସେବାର ତତ୍ତ୍ୱାବଧାରକ ମାତ୍ର ହୋଇ ରହିଲେ । କିନ୍ତୁ ଯଜନଯାଜନକ୍ଷମ କୌଣସି ସଦାଚାରୀ ବ୍ରାହ୍ମଣ ରାଣୀଙ୍କର ଏହି ଦେବାଳୟରେ ପୂଜକପଦରେ ବ୍ରତୀ ହେବାକୁ ସହସା ସ୍ୱୀକୃତି ପ୍ରଦାନ କଲେ ନାହିଁ । ଉପାୟବିହୀନା ରାଣୀ ପୁନର୍ବାର ଝାମାପୁକୁର ଚତୁଷ୍ପାଠୀକୁ ପତ୍ର ଲେଖିଲେ ଏବଂ ଶ୍ରୀଯୁକ୍ତ ରାମକୁମାରଙ୍କର ଶରଣାପନ୍ନ ହେଲେ । ଉଦାରହୃଦୟ ଦେବୀଭକ୍ତ ରାମକୁମାର ନିଃସଙ୍କୋଚରେ ମନ୍ଦିର ଓ ମୂର୍ତ୍ତି ପ୍ରତିଷ୍ଠା କାର୍ଯ୍ୟର ସକଳ ଭାର ସ୍ୱୟଂ ଗ୍ରହଣ କଲେ ଏବଂ ସିହଡ଼ ଗ୍ରାମନିବାସୀ କ୍ଷେତ୍ରନାଥ ଚଟ୍ଟୋପାଧ୍ୟାୟ ଶ୍ରୀଶ୍ରୀରାଧାଗୋବିନ୍ଦଜୀଉଙ୍କର ପୂଜକପଦରେ ମନୋନୀତ ହେଲେ ।

ନିର୍ଦ୍ଦିଷ୍ଟ ଦିବସରେ ମହାସମାରୋହରେ ମନ୍ଦିର ଓ ଦେବୀଙ୍କର ପ୍ରତିଷ୍ଠା ଉତ୍ସବ ସୁସମ୍ପନ୍ନ ହୋଇଗଲା । କଥିତ ଅଛି—'ଦୀୟତାଂ ଭୁଜ୍ୟତାଂ' ଶବ୍ଦରେ ସେଦିନ ଏହି ସ୍ଥାନ ଦିବାରାତ୍ର ସମଭାବରେ କୋଲାହଳପୂର୍ଣ୍ଣ ହୋଇଉଠିଥିଲା ଏବଂ ରାଣୀ ଅକାତରରେ ଅଜସ୍ର ଅର୍ଥ ବ୍ୟୟ କରି ସମବେତ ଅତିଥି ଅଭ୍ୟାଗତମାନଙ୍କୁ ପରିତୁଷ୍ଟ କରିବା ଦିଗରେ କୌଣସି ତ୍ରୁଟି କରି ନ ଥିଲେ । ସୁଦୂର କାନ୍ୟକୁବ୍ଜ, ବାରାଣସୀ, ଶ୍ରୀହଟ୍ଟ, ଚଟ୍ଟଗ୍ରାମ, ଓଡ଼ିଶା ଏବଂ ନବଦ୍ଵୀପ ପ୍ରଭୃତି ପଣ୍ଡିତପ୍ରଧାନ ସ୍ଥାନସମୂହରୁ ବହୁ ଅଧ୍ୟାପକ ଓ ବ୍ରାହ୍ମଣ ପଣ୍ଡିତଗଣ ଏହି ଉପଲକ୍ଷେ ସମାଗତ ହୋଇ ସେଦିନ ପ୍ରତ୍ୟେକେ ରେଶମୀବସ୍ତ୍ର, ଉତ୍ତରୀୟ ଏବଂ ବିଦାୟସ୍ଵରୂପ ଗୋଟିଏ ଲେଖାଏଁ ସ୍ଵର୍ଣ୍ଣମୁଦ୍ରା ପ୍ରାପ୍ତ ହୋଇଥିଲେ । ଏହି ଦେବାଳୟ ନିର୍ମାଣ ଓ ପ୍ରତିଷ୍ଠା ଉପଲକ୍ଷେ ରାଣୀ ନଅ ଲକ୍ଷ ଟଙ୍କା ବ୍ୟୟ କରିଥିଲେ । ଅବଶେଷରେ ରାମକୁମାର ହିଁ ଶ୍ରୀଶ୍ରୀଭବତାରିଣୀଙ୍କ ପୂଜକପଦରେ ସ୍ଥାୟୀଭାବରେ ନିଯୁକ୍ତ ହେଲେ ଏବଂ ଗଦାଧର ମଧ୍ୟ ସାନନ୍ଦଚିତ୍ତରେ ଉଦ୍ୟାନସମନ୍ଵିତ ଏହି ମନୋରମ ଦେବାଳୟକୁ ଆସି ବଡ଼ ଭାଇଙ୍କର ଆଶ୍ରୟରେ ରହିଲେ । ଏହିଠାରୁ ବର୍ତ୍ତମାନର ଗଦାଧର ଓ ପରବର୍ତ୍ତୀ କାଳରେ ଶ୍ରୀରାମକୃଷ୍ଣଙ୍କ* ଜୀବନରେ ଏକ ନୂତନ ଅଧ୍ୟାୟର ସୂତ୍ରପାତ ହେଲା ।

ମନ୍ଦିର-ପ୍ରତିଷ୍ଠାର କେତେକ ସପ୍ତାହ ଭିତରେ ନବଯୌବନରେ ପଦାର୍ପିତ ରାମକୃଷ୍ଣଙ୍କର ସୌମ୍ୟରୂପ, କୋମଳ ପ୍ରକୃତି, ଧର୍ମନିଷ୍ଠା ଓ ସୁକୁମାର ମନୋଭାବ କ୍ରମଶଃ ସେଠାର ସମସ୍ତଙ୍କର ନୟନମନ ଆକର୍ଷିତ

---

* କାହାକାହା ମତରେ ରାସମଣିଙ୍କ ଜାମାତା ମଥୁରାନାଥ ଗଦାଧରଙ୍କୁ ଶ୍ରୀରାମକୃଷ୍ଣ ନାମ ପ୍ରଦାନ କରିଥିଲେ । ଆଉ କାହାକାହା ମତରେ ଗଦାଧରଙ୍କ ସନ୍ନ୍ୟାସଗ୍ରହଣ କାଳରେ ଶ୍ରୀମତ୍ ସ୍ଵାମୀ ତୋତାପୁରୀ ତାଙ୍କୁ ରାମକୃଷ୍ଣ ନାମରେ ଭୂଷିତ କରିଥିଲେ । ଆମମାନଙ୍କ ମତରେ ଏହି ଶେଷୋକ୍ତ ଜନଶ୍ରୁତିଟି ଠିକ୍ ହୋଇପାରେ । କିନ୍ତୁ ସେ ଯାହା ହେଉ, ଆମେ ବର୍ତ୍ତମାନଠାରୁ ଗ୍ରନ୍ଥର ସମାପ୍ତି ପର୍ଯ୍ୟନ୍ତ ଗଦାଧରଙ୍କୁ ଏଣିକି ଶ୍ରୀରାମକୃଷ୍ଣ ବା କେବେକେବେ କେବଳ ଠାକୁର ନାମରେ ଅଭିହିତ କରିବୁ ।

କଲା । ବିଶେଷକରି ରାସମଣିଙ୍କ ଜାମାତା ମଥୁରବାବୁ ତାଙ୍କ ପ୍ରତି ଅତ୍ୟନ୍ତ ସ୍ନେହସମ୍ପନ୍ନ ହୋଇପଡ଼ିଲେ । ସେ ଭାବିଲେ ଏହି ପବିତ୍ର କୋମଳ-ସ୍ୱଭାବ ବ୍ରାହ୍ମଣ ଯୁବକଙ୍କୁ ଦେବୀଙ୍କର ବେଶକାରୀ କାର୍ଯ୍ୟରେ ନିଯୁକ୍ତ କରିବେ । ଏହି ଅଭିପ୍ରାୟ ସେ ମନ୍ଦିର-ପୂଜକ ରାମକୁମାରଙ୍କୁ ମଧ୍ୟ ଜଣାଇଲେ । ରାମକୁମାର କହିଲେ, "ଦେଖନ୍ତୁ ଆଜ୍ଞା ! ତା'ର ମନର ଅବସ୍ଥା କେତେବେଳେ କ'ଣ କିଛି ଠିକଣା ନାହିଁ । ଆପଣ ଏତେ ବଡ଼ ଦାୟିତ୍ୱରେ ତାକୁ ରଖନ୍ତୁ ନାହିଁ ।"

ମାତ୍ର ମଥୁରବାବୁ ସେ କଥା ଶୁଣିଲେ ନାହିଁ କି ନିଜ ପ୍ରସ୍ତାବରୁ ନିବୃତ୍ତ ହେଲେ ନାହିଁ । ଏହି ସମୟରେ ଠାକୁରଙ୍କର ପିଉସୀଝିଅ ଭଉଣୀ ଶ୍ରୀମତୀ ହେମାଙ୍ଗିନୀ ଦେବୀଙ୍କର ପୁଅ ହୃଦୟରାମ ମୁଖୋପାଧ୍ୟାୟ ଜୀବିକାର୍ଜନ ଉଦ୍ଦେଶ୍ୟରେ ଇତସ୍ତତଃ ବୁଲିବୁଲି ଆସି ସେଠାରେ ପହଞ୍ଚିଲେ । ପିଲାଦିନୁ ସେ ଏହି ସମବୟସ୍କ ମାମୁଁ ରାମକୃଷ୍ଣଙ୍କର ବହୁ ସାନ୍ନିଧ୍ୟ ଭୋଗ କରିଛନ୍ତି । ବର୍ତ୍ତମାନ ତାଙ୍କ ସହିତ ପୁନର୍ବାର ମିଳିତ ହୋଇ ସେଠାରେ ରହି ଅତି ଆନନ୍ଦରେ କାଳଯାପନ କଲେ । ହୃଦୟ ଯେତେବେଳେ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ, ସେତେବେଳକୁ ଠାକୁରଙ୍କୁ କୋଡ଼ିଏ ବର୍ଷ ପୂରିଥାଏ ମାତ୍ର । ଏହି ବୟସରେ ହୃଦୟଙ୍କୁ ସହଚର ରୂପେ ପାଇ ତାଙ୍କର ଆଉ ଆନନ୍ଦର ସୀମା ରହିଲା ନାହିଁ । ଦକ୍ଷିଣେଶ୍ୱରରେ ରହିବା ତାଙ୍କ ପକ୍ଷରେ ଖୁବ୍ ସହଜ ହୋଇଉଠିଲା । ରାମକୃଷ୍ଣ ତ ଚିରକାଳ ବାଳସ୍ୱଭାବସମ୍ପନ୍ନ । ସେହି ସ୍ୱଭାବରେ ରହି ସେ ଯାହାସବୁ କରନ୍ତି ସାଧାରଣ ଲୋକଙ୍କ ଦୃଷ୍ଟିରେ ତାହା ଅକାରଣ ମନେ ହୁଏ । କିନ୍ତୁ ହୃଦୟ ମାମୁଁଙ୍କର ସବୁ କାର୍ଯ୍ୟକୁ ସହାନୁଭୂତିରେ ସମର୍ଥନ ଜଣାଏ । ଏଥିପାଇଁ ସେ ତାଙ୍କର ଖୁବ୍ ପ୍ରିୟପାତ୍ର ହୋଇଥିଲେ ।

ଦିନେ ଠାକୁରଙ୍କର ଇଚ୍ଛା ହେଲା ସେ ଶିବମୂର୍ତ୍ତିଟିଏ ଗଢ଼ି ତାଙ୍କର ପୂଜା କରିବେ । ଇଚ୍ଛା ମାତ୍ରେ କାର୍ଯ୍ୟ । ଗଙ୍ଗାନଦୀରୁ ପଙ୍କମାଟି ଆଣି ସେ ଶିବଙ୍କର ମୂର୍ତ୍ତିଟିଏ ଗଢ଼ିଲେ । ମୂର୍ତ୍ତିଟିର ହାତରେ ତ୍ରିଶୂଳ ଓ ଡମ୍ବରୁ ମଧ୍ୟ ଧରାଇ ଦେଲେ । ପୁଣି ବୃଷଭଟିଏ ଗଢ଼ି ତା' ଉପରେ ମୂର୍ତ୍ତିଟିକୁ ବସାଇ

ଦେଲେ । ମୂର୍ତ୍ତି ଗଢ଼ିସାରି ପୂଜା ମଧ୍ୟ କଲେ । ସେହି ସମୟରେ ମଥୁରବାବୁ ଇତସ୍ତତଃ ବୁଲି ବୁଲି ସେଠାରେ ଆସି ପହଞ୍ଚିଲେ । ମୂର୍ତ୍ତିଟିକୁ ଦେଖି ଆଶ୍ଚର୍ଯ୍ୟ କୌତୂହଳରେ ହୃଦୟଙ୍କୁ ପଚାରିଲେ, "ଏ ମୂର୍ତ୍ତିଟି କେଉଁଠାରୁ ପାଇଲ ? କିଏ ଏହାକୁ ଗଢ଼ିଛି ?"

ହୃଦୟଙ୍କଠାରୁ ମୂର୍ତ୍ତିଟି ଠାକୁର ସ୍ୱହସ୍ତରେ ଗଢ଼ିଛନ୍ତି ଶୁଣିବାମାତ୍ରେ ମଥୁରବାବୁ ଖୁବ୍ ଖୁସି ହୋଇଗଲେ । କହିଲେ, "ତୁମର ପୂଜା ସରିଲେ ମୂର୍ତ୍ତିଟିକୁ ମତେ ଦେବ ।"

ମୂର୍ତ୍ତିଟି ପାଇଲା ପରେ ମଥୁରବାବୁ ନିଜେ ଅତ୍ୟନ୍ତ ପ୍ରୀତ ହୋଇ ମୂର୍ତ୍ତିଟିକୁ ରାଣୀଙ୍କ ପାଖକୁ ପଠାଇଦେଲେ । ରାଣୀ ମଧ୍ୟ ମୂର୍ତ୍ତିଟିକୁ ଦେଖି ଖୁବ୍ ମୁଗ୍ଧ ହେଲେ ଏବଂ ଠାକୁର ନିଜ ହାତରେ ଏହାକୁ ଗଢ଼ିଛନ୍ତି ଶୁଣି ବିସ୍ମିତ ହୋଇଉଠିଲେ । ଠାକୁରଙ୍କର ଏହି କଳାତ୍ମକ ବିଜ୍ଞାଣୀଗୁଣର ପରିଚୟ ପାଇ ତାଙ୍କୁ ଦେବାଳୟରେ ନିଯୁକ୍ତ କରିବା ଲାଗି ମଥୁରବାବୁଙ୍କ ହୃଦୟରେ ଯେଉଁ ଇଚ୍ଛା ଜାଗ୍ରତ ହୋଇଥିଲା, ତାହା ଆହୁରି ବଳବତ୍ତର ହୋଇଉଠିଲା ।

ବଡ଼ ଭାଇଙ୍କ ପାଖରୁ ମଥୁରବାବୁଙ୍କ ଅଭିପ୍ରାୟ ଜାଣିପାରି ଠାକୁର ଯେତେଦୂର ପାରନ୍ତି ନିଜକୁ ତାଙ୍କ ଦୃଷ୍ଟିର ଅନ୍ତରାଳରେ ରଖୁଥାଆନ୍ତି । ଦିନେ ମଥୁରବାବୁ ଦେବୀଙ୍କୁ ଦର୍ଶନ କରିବା ଲାଗି କାଳୀମନ୍ଦିରକୁ ଆସିଲେ । ଦର୍ଶନାନ୍ତେ ମଥୁରବାବୁଙ୍କର ଦୃଷ୍ଟି ପଡ଼ିଗଲା ଅଦୂରରେ ଠାକୁରଙ୍କ ଉପରେ । ଦେଖିବାମାତ୍ରେ ସେ ତାଙ୍କୁ ପାଖକୁ ଡାକିଲେ । ଠାକୁର କିନ୍ତୁ ତାଙ୍କ ପାଖକୁ ଯିବା ପାଇଁ କୁଣ୍ଠିତ ହେଲେ । ହୃଦୟ ଏ କୁଣ୍ଠାର କାରଣ ପଚାରିଲାରୁ କହିଲେ, "ତାଙ୍କ ପାଖକୁ ଗଲେ ସେ ମତେ ଏଠାରେ ରହିବାକୁ କହିବେ । ତା'ହେଲେ ମୋତେ ଚାକିରି ସ୍ୱୀକାର କରିବାକୁପଡ଼ିବ ।" ହୃଦୟ କହିଲେ, "ଠିକ୍ ଅଛି । ସେଥିରେ ଦୋଷ କ'ଣ ? ଏପରି ସ୍ଥାନରେ ମହତ୍ତ୍ୱ ଲୋକର ଆଶ୍ରୟରେ କାର୍ଯ୍ୟଟିରେ ନିଯୁକ୍ତ ହେବା ତ ବେଶ୍ ଭଲ କଥା । ମନ୍ଦ କ'ଣ ? ତେବେ ତୁମେ ଏଥିରେ କୁଣ୍ଠିତ ହେଉଛ କାହିଁକି ?"

ତା'ର ଉତ୍ତରରେ ଠାକୁର କହିଲେ, "ଚାଦର ଗୃହରେ ଆବଦ୍ଧ ରହିବାକୁ ମୋର ଇଚ୍ଛା ନୁହେଁ । ବିଶେଷତଃ ଏଠାରେ ପୂଜା କରିବାକୁ ସ୍ୱୀକୃତ ଦେଲେ, ଦେବୀଙ୍କ ଅଙ୍ଗରେ ଯେଉଁସବୁ ଅଳଙ୍କାରମାନ ଅଛି, ସେଥିପ୍ରତି ଦାୟୀ ରହିବାକୁ ପଡ଼ିବ । ସେ ବଡ଼ ଅସୁବିଧାର କଥା । ମୋ ଦ୍ୱାରା ଏହା ସମ୍ଭବ ହେବ ନାହିଁ । କିନ୍ତୁ ତୁ ଯଦି ଏ କାର୍ଯ୍ୟର ଭାର ନେଇ ଏଠାରେ ରହୁ ତେବେ ମୋର ପୂଜା କରିବାରେ କିଛି ଆପତ୍ତି ନାହିଁ ।"

ହୃଦୟ ତ ଏଠାକୁ ଚାକିରି ଅନ୍ୱେଷଣରେ ଆସିଥିଲେ; ତେଣୁ ଠାକୁରଙ୍କର ଏହି କଥାରେ ଆନନ୍ଦରେ ସ୍ୱୀକୃତ ହୋଇଗଲେ । ଏତିକ କଥାବାର୍ତ୍ତା ସାରି ଠାକୁର ମଥୁରବାବୁଙ୍କ ପାଖକୁ ଗଲେ । ମଥୁରବାବୁ ଠାକୁରଙ୍କୁ ତାଙ୍କର ଅଭିପ୍ରାୟ ଜଣାନ୍ତେ, ଠାକୁର ତାଙ୍କର ଅଭିପ୍ରାୟଟି ପ୍ରକାଶ କଲେ । ମଥୁରବାବୁ ସେହି ଦିନଠାରୁ ରାମକୃଷ୍ଣଙ୍କୁ କାଳୀମନ୍ଦିରରେ ବେଶକାରୀ ପଦରେ ଏବଂ ହୃଦୟଙ୍କୁ ରାମକୁମାର ଓ ରାମକୃଷ୍ଣଙ୍କୁ ସାହାଯ୍ୟ କରିବା ଲାଗି ନିଯୁକ୍ତ କଲେ । ମଥୁରବାବୁଙ୍କ ଅନୁରୋଧରେ ଭାଇକୁ ଏଭଳି କାର୍ଯ୍ୟରେ ନିଯୁକ୍ତ ହେବାର ଦେଖି ରାମକୁମାର ମଧ୍ୟ ନିଶ୍ଚିନ୍ତ ହୋଇ ରହିଲେ ।

ସନ୍ ୧୨୬୨ ସାଲର ଭାଦ୍ର ମାସ । ଆଜି ନନ୍ଦୋତ୍ସବ । ମଧ୍ୟାହ୍ନରେ ଶ୍ରୀରାଧାଗୋବିନ୍ଦଜୀଉଙ୍କର ବିଶେଷ ପୂଜା ଓ ଭୋଗରାଗାଦି ଶେଷ ହେଲା । ପୂଜକ କ୍ଷେତ୍ରନାଥ ଚଟ୍ଟୋପାଧ୍ୟାୟ ଶ୍ରୀରାଧାରାଣୀଙ୍କୁ ଅନ୍ୟ କକ୍ଷରେ ଶୟନ କରାଇ ଆସି ଶ୍ରୀଗୋବିନ୍ଦଜୀଉଙ୍କୁ ଶୟନ କରାଇବାକୁ ନେବା ସମୟରେ ହଠାତ୍ ପଡ଼ିଗଲେ । ବିଗ୍ରହଙ୍କର ଗୋଟିଏ ଗୋଡ଼ ଭାଙ୍ଗିଗଲା । ବାବୁମାନଙ୍କ ନିକଟରେ ସମ୍ବାଦ ପହଞ୍ଚିଲା । ଭଙ୍ଗା ବିଗ୍ରହରେ ତ ପୂଜା ଚଳେ ନାହିଁ । ବର୍ତ୍ତମାନ ଉପାୟ କ'ଣ ? ରାଣୀ ରାସମଣି ଓ ମଥୁରବାବୁ ଉପାୟ ନିର୍ଦ୍ଧାରଣ ଲାଗି ସହରର ଖ୍ୟାତନାମା ପଣ୍ଡିତମାନଙ୍କୁ ଡକାଇ ସଭାଟିଏ କଲେ । ପଣ୍ଡିତମାନେ ଶାସ୍ତ୍ରପୋଥି ଖୋଲି ବିଧାନ ଦେଲେ—ଭଗ୍ନ ମୂର୍ତ୍ତିଟିକୁ ଗଙ୍ଗା-ଜଳରେ ନିକ୍ଷେପ କରିଦିଆଯାଉ ଏବଂ ତା' ସ୍ଥାନରେ ଅନ୍ୟ ନୂତନ ମୂର୍ତ୍ତି ସ୍ଥାପିତ ହେଉ । ସଭାଭଙ୍ଗ ପରେ ମଥୁରବାବୁ ରାଣୀମା ତାଙ୍କ ସଙ୍ଗେ ପରାମର୍ଶ

କରି ଠାକୁରଙ୍କୁ ଏ ବିଷୟରେ ତାଙ୍କର ମତାମତ ପଗ୍ଚରିଲେ । ଠାକୁର ଭାବାବିଷ୍ଟ କଣ୍ଠରେ କହିଲେ, "ରାଣୀଙ୍କ ଜୋଇଁମାନଙ୍କ ଭିତରୁ କାହାର ଯଦି ପଡ଼ିଯାଇ ଗୋଡ଼ ଭାଙ୍ଗିଯାଏ, ତେବେ କ'ଣ ସେହି ଜୋଇଁକୁ ତ୍ୟାଗ କରି ଆଉ ଜଣକୁ ଆଣି ତା' ଜାଗାରେ ଜ୍ୱାଇଁ କରାଯିବ ନା ଚିକିତ୍ସାର ବ୍ୟବସ୍ଥା କରାହେବ ? ଏ କ୍ଷେତ୍ରରେ ମଧ୍ୟ ତାହା ହିଁ କରାଯାଉ । ମୂର୍ତ୍ତିଟିର ଗୋଡ଼ ଯୋଡ଼ାଯାଇ ଯେପରି ପୂଜା ହେଉଥିଲା ସେପରି ପୂଜା ଚାଲୁ । ମୂର୍ତ୍ତିଟିକୁ କାହିଁକି ବିସର୍ଜନ କରାଯିବ ?"

ଏ ବ୍ୟବସ୍ଥା ଶୁଣି ସମସ୍ତେ ଅବାକ୍ । ଅଭିମାନୀ ପଣ୍ଡିତମାନଙ୍କ ମଧ୍ୟରୁ କାହାର କାହାର ଏହି ମୀମାଂସାରେ ମତଭେଦ ହେଲା । କିନ୍ତୁ ଯେଉଁ ପଣ୍ଡିତମାନେ ଯଥାର୍ଥ ଶାସ୍ତ୍ରଜ୍ଞାନଦ୍ୱାରା ଭକ୍ତିବିବେକ ଅର୍ଜନ କରିଛନ୍ତି, ସେମାନେ ଏହିପରି ମୀମାଂସା ଶୁଣି ଧନ୍ୟ ଧନ୍ୟ କରିବାକୁ ଲାଗିଲେ । ଏହାପରେ ଠାକୁର ନିଜ ହାତରେ ମୂର୍ତ୍ତିଟିର ଭଗ୍ନ ଗୋଡ଼ଟିକୁ ଯୋଡ଼ି-ଦେଲେ ଏବଂ ପୂର୍ବବତ୍ ତାଙ୍କର ପୂଜାଦି କାର୍ଯ୍ୟ ଚାଲିଲା । ପୂଜକ କ୍ଷେତ୍ରନାଥ ଅସାବଧାନତା ଯୋଗୁଁ କର୍ମଚ୍ୟୁତ ହେଲେ ଏବଂ ରାଧାଗୋବିନ୍ଦଙ୍କ ପୂଜାର ଦାୟିତ୍ୱ ସେହିଦିନଠାରୁ ଠାକୁରଙ୍କ ଉପରେ ନ୍ୟସ୍ତ ହେଲା । ହୃଦୟ ମଧ୍ୟ ଏହି ସମୟରୁ ପୂଜାକାଳରେ ଶ୍ରୀଶ୍ରୀକାଳୀମାତାଙ୍କର ବେଶ କରି ରାମ-କୁମାରଙ୍କୁ ସାହାଯ୍ୟ କରୁଥିଲେ ।

ଠାକୁରଙ୍କର ପୂଜାପଦ୍ଧତି ଦେଖିବାର ବିଷୟ ଥିଲା । ଯେ ଦେଖେ, ସେ ମୁଗ୍ଧ ହୋଇଯାଏ । ପୂଜା କଲାବେଳେ ଭକ୍ତିତଦ୍‌ଗତ କଣ୍ଠରେ ଗୀତ ଗାଉଥାନ୍ତି ଏବଂ ତାଙ୍କର ବକ୍ଷଦେଶ ଲୋତକରେ ଭିଜୁଥାଏ । ପୂଜା ସମୟରେ ଠାକୁରଙ୍କର ତେଜଃପୁଞ୍ଜ ଶରୀର ଓ ତନ୍ମନସ୍କ ଭାବ ଦେଖି ଅପର ବ୍ରାହ୍ମଣମାନେ ନିଜ ନିଜ ଭିତରେ କଥା ହୁଅନ୍ତି—ଏ ଯେ ସାକ୍ଷାତ୍ ବ୍ରାହ୍ମଣ୍ୟ-ଦେବ, ମନୁଷ୍ୟଶରୀର ଧାରଣ କରି ପୂଜା କରିବାକୁ ବସିଛନ୍ତି ! କ୍ରମେ ଠାକୁର ଦଶକର୍ମାନ୍ୱିତ ବ୍ରାହ୍ମଣମାନଙ୍କ ପକ୍ଷରେ ଯାହା ଶିକ୍ଷଣୀୟ ତାହା ଖୁବ୍ ଶୀଘ୍ର ଶିଖିଗଲେ । ତା'ପରେ ସେ ଦିନେ ଶୁଣିଲେ ଯେ ଦୀକ୍ଷା ନ ନେଇ ଦେବୀପୂଜା କରିବା ଅନୁଚିତ । ସେଥିପାଇଁ ସେ କଲିକତାନିବାସୀ

ପ୍ରବୀଣ ଶକ୍ତିସାଧକ ଶ୍ରୀଯୁକ୍ତ କେନାରାମ ଭଟ୍ଟାଚାର୍ଯ୍ୟ ମହାଶୟଙ୍କ ନିକଟରୁ ଶକ୍ତିମନ୍ତ୍ରରେ ଦୀକ୍ଷା ଗ୍ରହଣ କଲେ । ଏହି ସମୟରେ ରାମକୁମାରଙ୍କର ସ୍ୱାସ୍ଥ୍ୟ ଆଉ ଭଲ ରହିଲା ନାହିଁ । ତାଙ୍କ ସ୍ଥାନରେ ସ୍ୱୟଂ ଠାକୁର କାଳୀମାତାଙ୍କର ପୂଜକରୂପେ ନିଯୁକ୍ତ ହେଲେ । ରାମକୁମାର ଅଳ୍ପ ଆୟାସସାଧ୍ୟ ରାଧାଗୋବିନ୍ଦ ଜୀଉଙ୍କର ସେବା କରିବାରେ ନିୟୋଜିତ ହେଲେ । ଏହାର କିଛିକାଳ ପରେ ସେ ମଥୁରବାବୁଙ୍କୁ କହି ହୃଦୟଙ୍କୁ ରାଧାଗୋବିନ୍ଦଙ୍କ ପୂଜାର ଦାୟିତ୍ୱ ଅର୍ପଣ କରି କିଛିଦିନ ଲାଗି ଆପଣା ଘରକୁ ଫେରିବାର ବନ୍ଦୋବସ୍ତ କରିବାରେ ଲାଗିଲେ; କିନ୍ତୁ ରାମକୁମାର ଆଉ ସ୍ୱଗୃହକୁ ଫେରି ନାହାନ୍ତି । କୌଣସି କାର୍ଯ୍ୟୋପଲକ୍ଷରେ ସେ ଥରେ କଲିକତାର ଉତ୍ତରରେ ଶ୍ୟାମନଗର ମୂଳାଜୋଡ଼୍ ନାମକ ସ୍ଥାନକୁ ଯାଇଥିଲେ ଏବଂ ସେହିଠାରେ ହିଁ ସହସା ସେ ମୃତ୍ୟୁବରଣ କଲେ । ସମ୍ଭବତଃ ୧୨୬୩ ସାଲର ପ୍ରାରମ୍ଭରେ (୧୮୫୬ ଖ୍ରୀଷ୍ଟାବ୍ଦ) ସେ ଶରୀରତ୍ୟାଗ କରିଥିଲେ ।

# ପଞ୍ଚମ ଅଧ୍ୟାୟ

## ଶକ୍ତିସାଧନାରେ

ପିତୃତୁଲ୍ୟ ବଡ଼ ଭାଇଙ୍କର ମୃତ୍ୟୁ ଘଟଣାରେ ଠାକୁର ନିତାନ୍ତ ବ୍ୟଥିତ ହୋଇପଡ଼ିଲେ । ତାଙ୍କର ଶୁଦ୍ଧ ମନରେ ସଂସାରର ଅନିତ୍ୟତା ସମ୍ବନ୍ଧୀୟ ଧାରଣା ଆହୁରି ଦୃଢ଼ୀଭୂତ ହେଲା ଏବଂ ତାଙ୍କ ହୃଦୟରେ ବୈରାଗ୍ୟାନଳ ପ୍ରଜ୍ୱଳିତ ହୋଇଉଠିଲା । କ୍ରମେ ସେ ଜଗନ୍ମାତାଙ୍କ ପୂଜାରେ ସମଧିକ ମନୋନିବେଶପୂର୍ବକ ତାଙ୍କର ଦର୍ଶନଲାଭ ଲାଗି ବ୍ୟାକୁଳ ହୋଇଉଠିଲେ । ଏବେ ଆଉ ସେ ବୃଥା ବାକ୍ୟାଳାପରେ ତିଳେମାତ୍ର ସମୟ ଅପବ୍ୟୟ କଲେ ନାହିଁ । ରାତିରେ ମନ୍ଦିରଦ୍ୱାର ରୁଦ୍ଧ ହେଲେ ଲୋକସଙ୍ଗ ପରିହାରପୂର୍ବକ ପଞ୍ଚବଟୀ ପାର୍ଶ୍ୱସ୍ଥ କ୍ଷୁଦ୍ର ଅରଣ୍ୟ ମଧ୍ୟରେ ପ୍ରବେଶ କରି ଜଗନ୍ମାତାଙ୍କ ଧ୍ୟାନରେ କାଳଯାପନ କରିବାକୁ ଲାଗିଲେ । ଦିନେ ଠାକୁର ସେହି ବୃକ୍ଷତଳକୁ ଯିବାର କିଛିକ୍ଷଣ ପରେ ହୃଦୟ ନିଃଶବ୍ଦରେ ସେଠାରେ ଯାଇ ପହଞ୍ଚିଲେ । ସାମାନ୍ୟ ଦୂରରେ ରହି ସେ ଦେଖିଲେ ଯେ ମାମୁଁ ତାଙ୍କର ପିନ୍ଧା ଲୁଗା ଓ ପଇତାଦି ପରିତ୍ୟାଗ କରି ସୁଖାସୀନ ହୋଇ ଧ୍ୟାନରେ ନିମଗ୍ନ ରହିଛନ୍ତି । ଏହା ଦେଖି ସେ ଭାବିଲେ—ମାମୁଁ କ'ଣ ପାଗଳ ହୋଇଗଲେ ?

ଏହା ଭାବି ହୃଦୟ ଆହୁରି ଟିକିଏ ପାଖକୁ ଯାଇ ସାମାନ୍ୟ ସନ୍ତର୍ପଣରେ କହିଲେ, "ମାମୁଁ ! ଏ କ'ଣ କରୁଛ ? କାନ୍ଧରୁ ପଇତା କାଢ଼ି ସମ୍ପୂର୍ଣ୍ଣ ଲଙ୍ଗଳା ହୋଇ କାହିଁକି ଏଠାରେ ବସିଛ ?"

କେତେଥର ଡକାଡକି କଲାପରେ ଯାଇ ଠାକୁରଙ୍କର ଚୈତନ୍ୟ ହେଲା । ସେ ହୃଦୟଙ୍କୁ ଦେଖି ଓ ତାଙ୍କର ପ୍ରଶ୍ନ ଶୁଣି କହିଲେ, "ଆରେ ତୁ କ'ଣ ଜାଣିଛୁ ? ଏହିଭଳି ପାଶମୁକ୍ତ ହୋଇ ଧ୍ୟାନ କରିବାକୁ ହୁଏ । ଜନ୍ମ ଆରମ୍ଭରୁ ମନୁଷ୍ୟ ଘୃଣା, ଲଜ୍ଜା, କୁଳ, ଶୀଳ, ଭୟ, ମାନ, ଜାତି ଓ ଅଭିମାନ ଏହି ଅଷ୍ଟପାଶରେ ବନ୍ଧା ପଡ଼ିଛି । ଏହି ପଇତା ମଧ୍ୟ ମୁଁ 'ବ୍ରାହ୍ମଣ,

ସମସ୍ତଙ୍କ ଅପେକ୍ଷା ବଡ଼'— ଏହି ଅଭିମାନର ଚିହ୍ନ ଏବଂ ଗୋଟାଏ ପାଶ । ମା'ଙ୍କୁ ଡାକିବାକୁ ହେଲେ ଏହିସବୁ ପାଶ ତ୍ୟାଗ କରିବାକୁ ହୁଏ ଏବଂ ଏକାଗ୍ର ମନରେ ଡାକିବାକୁ ହୁଏ । ସେଥିଲାଗି ଏ ସବୁ ଖୋଲି ଫୋପାଡ଼ି ଦେଇଛି । ଧ୍ୟାନକାର୍ଯ୍ୟ ଶେଷ ହେଲେ, ଫେରିବା ସମୟରେ ପୁଣି ପିନ୍ଧିବି ।" ହୃଦୟ ଆଉ କିଛି ଉତ୍ତର ଦେଇ ନ ପାରି ସେହି ସ୍ଥାନ ଛାଡ଼ି ଫେରି ଆସିଲେ । ଠାକୁରଙ୍କର ଧ୍ୟାନର ମାତ୍ରା ଦିନୁଦିନ ବୃଦ୍ଧି ପାଇବାକୁ ଲାଗିଲା । ସେ କେବେକେବେ ବ୍ୟାକୁଳ ହୃଦୟରେ ମା'ଙ୍କ ନିକଟରେ ପ୍ରାର୍ଥନା କରନ୍ତି—"ମା, ତୁ ରାମପ୍ରସାଦଙ୍କୁ ଦେଖା ଦେଇଛୁ । ମୋତେ କାହିଁକି ଦେଖା ଦେବୁ ନାହିଁ ? ମୁଁ ଧନ, ଜନ, ଭୋଗ, ସୁଖ, କିଛି ଚାହେଁ ନାହିଁ ମା ! ମୋତେ ଦେଖା ଦେ ।"

ଠାକୁରଙ୍କର ଭଗବତ୍‌ଚିନ୍ତା ଯେତିକି ପ୍ରବଳ ହେଉଥାଏ ଓ ଏକାଗ୍ରତା ଯେତିକି ବଢ଼ୁଥାଏ, ତାଙ୍କର ଆହାର ଏବଂ ନିଦ୍ରା ସେତିକି କମିକମି ଆସୁଥାଏ । କ୍ରମେ ଲକ୍ଷ୍ୟ କରାଗଲା ଯେ ଧ୍ୟାନ ଓ ପୂଜା ସମୟ ଭିନ୍ନ ଅନ୍ୟ ସମୟରେ ତାଙ୍କ ଶରୀରରେ ଅଶାନ୍ତ ଆଉ ଶୃଙ୍ଖଳାର ଭାବ ରହୁଛି । ଦିନେ ଅତ୍ୟଧିକ ମାନସିକ ଯନ୍ତ୍ରଣାରେ ଅଧୀର ହୋଇ ଠାକୁର ଭାବିଲେ— "ତେବେ ଆଉ ଏ ଜୀବନରେ ଆବଶ୍ୟକତା ନାହିଁ ।"

ମନ୍ଦିର ଦେହରେ ଗୋଟିଏ ଲମ୍ବା ଖଣ୍ଡା ଝୁଲୁଥିଲା । ଠାକୁର ଆତ୍ମବଳି ଦେବା ଉଦ୍ଦେଶ୍ୟରେ ଉନ୍ମତ୍ତବତ୍ ସେ ଖଣ୍ଡା ପାଖକୁ ଦୌଡ଼ିଗଲେ; କିନ୍ତୁ ହଠାତ୍ ତାଙ୍କ ସମ୍ମୁଖରେ ଜଗନ୍ମାତା ଅପୂର୍ବ ରୂପଦ୍ୟୁତିରେ ଆବିର୍ଭୂତା ହେଲେ । ସେହି ଦିବ୍ୟ ଜ୍ୟୋତିର୍ମୟ ରୂପ ଦେଖୁ ଦେଖୁ ଠାକୁର ସଂଜ୍ଞାହୀନ ହୋଇ ତଳେ ପଡ଼ିଗଲେ । ସେ ଦେଖିଲେ—ଘର, ଦ୍ୱାର, ମନ୍ଦିର ସବୁ ଯେପରି କୁଆଡ଼େ ଲୁପ୍ତ ହୋଇଗଲା । କେଉଁଠାରେ ଯେପରି ଆଉ କିଛି ନାହିଁ । ଏକ ଅସୀମ ଅନନ୍ତ ଚୈତନ୍ୟଜ୍ୟୋତି-ସମୁଦ୍ରର ଉଜ୍ଜ୍ୱଳ ଊର୍ମିମାଳା ଚାରିଦିଗରୁ ଗର୍ଜନ ତର୍ଜନ କରି ତାଙ୍କୁ ଗ୍ରାସ କରିବା ଲାଗି ମହାବେଗରେ ଅଗ୍ରସର ହେଉଅଛି । ଦେଖୁଦେଖୁ ଉତ୍ତାଳ ତରଙ୍ଗସମୂହ ତାଙ୍କ ଉପରେ ନିପତିତ ହୋଇ ତାଙ୍କୁ ସଙ୍ଗେ ସଙ୍ଗେ କେଉଁ ଅତଳରେ ବୁଡ଼ାଇ ଦେଲା । ସେ ସଂଜ୍ଞାହୀନ ହୋଇ ପଡ଼ିଗଲେ ।

ଏହି ଦିବ୍ୟଦର୍ଶନ ସମାପ୍ତ ହେଲାପରେ ଶ୍ରୀଶ୍ରୀଜଗଦମ୍ବାଙ୍କ ଚିନ୍ମୟୀ-ମୂର୍ତ୍ତିର ଅବାଧ ଅବିରାମ ଦର୍ଶନଲାଭ ନିମିତ୍ତ ଠାକୁରଙ୍କ ପ୍ରାଣରେ ଅବିଶ୍ରାନ୍ତ ଆକୁଳ କ୍ରନ୍ଦନର ରୋଳ ଉଠିଲା । ଏହା ବେଳେବେଳେ ଏତେ ବୃଦ୍ଧି ପାଉଥିଲା ଯେ ସେ ଆଉ କ୍ରନ୍ଦନର ବେଗ ସମ୍ଭାଳି ନ ପାରି ଭୂଇଁ ଉପରେ ଗଡ଼ିଗଡ଼ି ଯନ୍ତ୍ରଣାରେ ଛଟପଟ ହେଉଥିଲେ । ପୁଣି, ବେଳେବେଳେ ବାହ୍ୟ-ସଂଜ୍ଞାଶୂନ୍ୟ ହୋଇ ମାଆଙ୍କର ବରାଭୟଦାୟିନୀ ଚିନ୍ମୟୀମୂର୍ତ୍ତି ମଧ୍ୟ ଦର୍ଶନ କରୁଥିଲେ । ସେ ଦେଖୁଥିଲେ—ସେହି ପ୍ରସ୍ତରମୂର୍ତ୍ତି ଜୀବନ୍ତ ହୋଇ ହସୁଛନ୍ତି, କଥା କହୁଛନ୍ତି ଏବଂ ବହୁପ୍ରକାରେ ସାନ୍ତ୍ୱନା ଓ ଶିକ୍ଷା ଦେଉଛନ୍ତି । ଏହି ସମୟରେ ପୁଣି ଠାକୁରଙ୍କର ପୂଜାଧ୍ୟାନାଦି ଏକ ଅଭିନବ ଆକାର ଧାରଣ କଲା । ପ୍ରବୀଣର ଗାମ୍ଭୀର୍ଯ୍ୟ, ପୁରୁଷକାର ଅବଲମ୍ବନ କରି ଦେଶ-କାଳପାତ୍ର ଭେଦରେ ବିଧିନିଷେଧ ମାନି ଚାଲିବା ଅଥବା ଭବିଷ୍ୟତ କଥା ଭାବି ସବୁ ଆଡ଼କୁ ନଜର ରଖି ବ୍ୟବହାର କରିବା ଇତ୍ୟାଦିର କୌଣସି ଲକ୍ଷଣ ଏଥିରେ ପରିଲକ୍ଷିତ ହେଉନଥିଲା । ସର୍ବାନ୍ତକରଣରେ ଶରଣାଗତ ବାଳକର ଭାବ ଆଶ୍ରୟ କରି ଇଚ୍ଛାମୟୀଙ୍କ ଇଚ୍ଛା ଭିତରେ ଆପଣାର କ୍ଷୁଦ୍ର ଇଚ୍ଛା ଓ ଅଭିମାନକୁ ବିସର୍ଜନ ଦେଇ ଏକାବେଳକେ ଯନ୍ତ୍ରସ୍ୱରୂପ ହୋଇ ଯେପରି ସେ ସବୁ କିଛି କରୁଥିଲେ । ମାଆଙ୍କୁ ଅନ୍ନାଦି ନିବେଦନ କରି ସେ ଦେଖୁଥିଲେ—ମାଆ ସାକ୍ଷାତ୍ ମୂର୍ତ୍ତିମନ୍ତ ହୋଇ ସେହି ଅନ୍ନକୁ ସେବନ କରୁଛନ୍ତି ଓ ତାଙ୍କର ଦିବ୍ୟ ଅଙ୍ଗର ପ୍ରଭାମୟୀ ଦୀପ୍ତିରେ ମନ୍ଦିରର ଅଭ୍ୟନ୍ତର ଆଲୋକିତ ହୋଇଉଠୁଛି । ପୂର୍ବେ ଧ୍ୟାନପୂଜାଦି କାଳରେ ସେ ଦେଖୁଥିଲେ ସମ୍ମୁଖସ୍ଥ ପାଷାଣମୟୀ ମୂର୍ତ୍ତିରେ ଏକ ଜୀବନ୍ତ ଜାଗ୍ରତ ଅଧିଷ୍ଠାନ ଆବିର୍ଭୂତ ହୋଇଛନ୍ତି । ବର୍ତ୍ତମାନ ମନ୍ଦିରରେ ପ୍ରବିଷ୍ଟ ହୋଇ ପାଷାଣମୟୀଙ୍କୁ ଆଉ ଦେଖିବାକୁ ପାଇଲେ ନାହିଁ; ବରଂ ତାଙ୍କ ସ୍ଥାନରେ ସେ ଦେଖିବାକୁ ପାଇଲେ, ଯାହାଙ୍କର ଚୈତନ୍ୟରେ ସମଗ୍ର ଜଗତ୍ ସଚେତନ ହୋଇ ରହିଛି, ସେହି ପରମଚୈତନ୍ୟମୟୀ ଏହି ମନ୍ଦିର ଭିତରେ ଚିଦ୍‌ଘନମୂର୍ତ୍ତି ପରିଗ୍ରହ କରି ବରାଭୟକରସୁଶୋଭିତା ହୋଇ ନିତ୍ୟ ବିରାଜମାନା ରହିଛନ୍ତି ।

ସେତେବେଳର ଅନୁଭୂତି ପରେ ମନେପକାଇ ଠାକୁର କହିଛନ୍ତି, "ନାସିକାରେ ହାତ ଦେଇ ଦେଖେ, ମାଆ ସତକୁ ସତ ନିଃଶ୍ୱାସ ପ୍ରଶ୍ୱାସ ନେଉଛନ୍ତି । ତନ୍ନ ତନ୍ନ କରି ବହୁବାର ଦେଖିଛି—ରାତିରେ ଦୀପ ଆଲୁଅରେ ମନ୍ଦିର ଭିତରେ ମା'ଙ୍କ ଦିବ୍ୟଶରୀରର ଛାଇ କେଉଁଠାରେ ପଡ଼େ ନାହିଁ । ନିଜ ଘରେ ବସି ଶୁଣିଛି—ମା' ପାଦରେ ପାଉଁଜି (ନୂପୁରଜାତୀୟ ପଦାଲଙ୍କାର) ପିନ୍ଧି ବାଳିକାଟିଏ ଭଳି ଉତ୍‌ଫୁଲ୍ଲ ହୋଇ ଝମରଝମର ଶବ୍ଦ କରି ମନ୍ଦିର ଉପରକୁ ଉଠୁଛନ୍ତି । ଦ୍ରୁତପଦରେ ଘରୁ ବାହାରି ଆସି ଦେଖିଛି —ମାଆ ସତକୁ ସତ ମନ୍ଦିରର ଦ୍ୱିତଳ ବାରଣ୍ଡାରେ ଆଲୁଳାୟିତକେଶା ହୋଇ ଠିଆ ହୋଇଛନ୍ତି । କେତେବେଳେ କଲିକତା ଆଡ଼କୁ—ପୁଣି କେତେବେଳେ ଗଙ୍ଗା ଆଡ଼କୁ ଚାହିଁ ଦେଖୁଛନ୍ତି ।"

ହୃଦୟ ମଧ୍ୟ କହିଛନ୍ତି—"ଠାକୁର ଯେତେବେଳେ ଶ୍ରୀମନ୍ଦିରରେ ରହୁଥା'ନ୍ତି, ସେତେବେଳେ ତ କଥା ନାହିଁ—ଅନ୍ୟ ସମୟରେ ମଧ୍ୟ କାଳୀଙ୍କ ଘରେ ପ୍ରବେଶ କଲେ ଏକ ଅନିର୍ବଚନୀୟ ଦିବ୍ୟାବେଶ ଅନୁଭୂତ ହୋଇ ଦେହରେ ରୋମାଞ୍ଚ ଜାତ ହୁଏ । ପୂଜାବେଳେ ଦେଖିଛି—ମନ୍ଦାରଫୁଲ ଆଉ ବେଲପତ୍ର ଏକାଠି ସଜାଇ ମାମୁଁ ତାହାଦ୍ୱାରା ନିଜ ମସ୍ତକ, ବକ୍ଷ, ସର୍ବାଙ୍ଗ ଏପରିକି ନିଜ ପାଦ ପର୍ଯ୍ୟନ୍ତ ସ୍ପର୍ଶ କରି ତା'ପରେ ତାକୁ ନେଇ ଜଗଦମ୍ବାଙ୍କ ପାଦପଦ୍ମରେ ଅର୍ପଣ କରନ୍ତି । କେବେ କେବେ ପୁଣି ସିଂହାସନ ଉପରକୁ ଉଠି ଅତ୍ୟନ୍ତ ସ୍ନେହରେ ଜଗଦମ୍ବାଙ୍କ ଚିବୁକ ଧରି ଆଦର, ଗାନ, ପରିହାସ, ବା ବାକ୍ୟାଳାପ କରନ୍ତି । କେବେ କେବେ ଶ୍ରୀମୂର୍ତ୍ତିଙ୍କ ହାତ ଧରି ନୃତ୍ୟ ଆରମ୍ଭ କରିଦିଅନ୍ତି । ଦିନେ ଦେଖିଲି—ଭୋଗ ନିବେଦନ କରିବା ସମୟରେ ମନ୍ଦିର ଭିତରକୁ ଗୋଟିଏ ବିଲେଇ ପଶିଯାଇ ମିଆଁଉ ମିଆଁଉ ହେଲା । ତା'ର ଉତ୍ତରରେ ମାମୁଁ କହିଲେ—'ଖାଇବୁ ମା, ରହ, ଖାଇବୁ; ଦଉଛି ତତେ ଖାଇବାକୁ, ଅପେକ୍ଷା କର ।' ଏହା କହି ଅନ୍ନପ୍ରସାଦ ଆଣି ସେହି ବିଲେଇକୁ ଖୁଆଇଲେ ।" ଠାକୁରଙ୍କର ଏସବୁ କାଣ୍ଡ ଦେଖି ହୃଦୟଙ୍କ ମନରେ ବିଚିତ୍ର ଆଶଙ୍କା ହେଲେ ମଧ୍ୟ ଅନ୍ୟ ନିକଟରେ ପ୍ରକାଶ କରି କ'ଣ କରିବା କର୍ତ୍ତବ୍ୟ, ସେହି ବିଷୟରେ ପରାମର୍ଶ ନେବା ଲାଗି ତାଙ୍କର କିଛି

ଉପାୟ ନ ଥିଲା । କିନ୍ତୁ ଏଣିକି ଏଣିକି ଯେତେବେଳେ ସବୁଦିନେ ଏହିଭଳି କାଣ୍ଡ ଚାଲିଲା, ସେତେବେଳେ ଆଉ ସେକଥା କିପରି ବା ଲୁଚାଇ ରଖି ହୁଅନ୍ତା ? ତା'ଛଡ଼ା ପୂଜା ସମୟରେ ଅନ୍ୟ କେହି କେହି ହଠାତ୍ ପହଞ୍ଚିଯାଇ ଠାକୁରଙ୍କର ଦେବୀଙ୍କ ସଙ୍ଗେ ଏ କାଣ୍ଡକାରଖାନା ଦେଖି ଖାଜାଞ୍ଚି ପ୍ରମୁଖ କର୍ମଚାରୀମାନଙ୍କ ଆଗରେ ଅଭିଯୋଗ କଲେ । ସେମାନେ ମଧ୍ୟ ସ୍ୱଚକ୍ଷୁରେ ଏସବୁ ପ୍ରତ୍ୟକ୍ଷ କରି ସ୍ଥିର କଲେ—ହୁଏତ ଭଟ୍ଟାଚାର୍ଯ୍ୟ ପାଗଳ ହୋଇଗଲେଣି—ନତୁବା ତାଙ୍କ ଦେହରେ କେଉଁ ଉପଦେବତାଙ୍କର ଆବେଶ ହୋଇଛି । ବାବୁମାନଙ୍କ ପାଖରେ ଏ ଖବର ପହଞ୍ଚିବା ନିତାନ୍ତ ଦରକାର । ଯଥା ସମୟରେ ମଥୁରବାବୁଙ୍କ କାନରେ ଏ ଖବର ପଡ଼ିଲା । ମଥୁରବାବୁ କାହାକୁ କିଛି ନ କହି ଦିନେ ପୂଜା ସମୟରେ ହଠାତ୍ ଆସି କାଳୀଘରେ ପହଞ୍ଚିଗଲେ ଏବଂ ଅନେକ ସମୟ ଧରି ଠାକୁରଙ୍କ କ୍ରିୟାକଳାପ ଲକ୍ଷ୍ୟ କଲେ । ସେ ଦେଖିଲେ—ପୂଜା କରୁକରୁ ଭଟ୍ଟାଚାର୍ଯ୍ୟଙ୍କର କେତେବେଳେ ଆଖିରୁ ଅବିରଳ ଅଶ୍ରୁଧାରା ଝରୁଛି, କେତେବେଳେ ଅବା ଅକପଟ ଉଦ୍ଦାମ ଉଲ୍ଲାସରେ ସେ ନୃତ୍ୟ କରୁଛନ୍ତି; କେତେବେଳେ ପୁଣି ଜଡ଼ବତ୍ ଅଚେତନ ହୋଇ ରହିଯାଉଛନ୍ତି; ବେଳେବେଳେ ଅବିଚଳ ଦେହରେ ଅପଲକଷ୍ଥିରତାରେ ସେ ଜଗଦମ୍ବାଙ୍କ ଆଡ଼କୁ ଚାହିଁ ଠିଆ ହୋଇ ରହୁଛନ୍ତି ଏବଂ ବାହ୍ୟପରିସ୍ଥିତି ସମ୍ବନ୍ଧରେ ତାଙ୍କର ତିଳେମାତ୍ର ଜ୍ଞାନ ରହୁନାହିଁ । ଏହି ଅଭୂତପୂର୍ବ ପୂଜାରୀତି ଦେଖି ଦେଖି ମଥୁରବାବୁଙ୍କ ଚିତ୍ତ ଏକ ଅପୂର୍ବ ଆନନ୍ଦରେ ପ୍ଳାବିତ ହୋଇଗଲା । ସେ ଅନୁଭବ କଲେ—ଏହି ମନ୍ଦିରଟି ବର୍ତ୍ତମାନ ପ୍ରକୃତ ଦିବ୍ୟ ମହିମାରେ ପରିପୂର୍ଣ୍ଣ ହୋଇଯାଇଛି । ତାଙ୍କର ସ୍ଥିର ବିଶ୍ୱାସ ହୋଇଗଲା ଯେ ଏହି ଯୁବପୂଜକ ଠାକୁର ପ୍ରକୃତରେ ଜଗନ୍ମାତାଙ୍କର କୃପାଲାଭ କରି ଧନ୍ୟ ହୋଇଛନ୍ତି । ଆଉ, ଏତେଦିନ ପରେ ସତକୁ ସତ ମା' ଏଠାରେ ଆବିର୍ଭୂତା ହୋଇଛନ୍ତି । ମା'ଙ୍କର ଯଥାର୍ଥ ପୂଜା ବାସ୍ତବିକ ଏହିପରି ହେବାର କଥା ।

ସେଦିନ କର୍ମଚାରୀମାନଙ୍କୁ କିଛି ନ କହି ମଥୁରବାବୁ ଘରକୁ ଫେରି ଆସିଲେ । ତା' ପରଦିନ ମନ୍ଦିରର ପ୍ରଧାନ କର୍ମଚାରୀଙ୍କ ଉପରେ ତାଙ୍କର

ଆଦେଶ ହେଲା—"ଭଟ୍ଟାଚାର୍ଯ୍ୟ ମହାଶୟ ଯେଉଁ ଭାବରେ ପୂଜା କରନ୍ତୁ, ସେଥିରେ କେହି ଯେପରି ତାଙ୍କୁ ବାଧା ନ ଦିଏ !" ଏହି ଆଦେଶ ଶୁଣି କର୍ମଚାରୀମାନେ ନିଷ୍ଫଳ ଆକ୍ରୋଶରେ ପରସ୍ପରକୁ ଚାହିଁଲେ ଏବଂ ଏହି ପାଗଳକୁ ସମୁଚିତ ଶିକ୍ଷା ଦେବା ଲାଗି ସେହି ମୁହୂର୍ତ୍ତରୁ ସୁଯୋଗ ଉଣ୍ଡିବାକୁ ଆରମ୍ଭ କଲେ । ଏଣେ ମଥୁରବାବୁ ନିଜ ଶାଶୁ ରାଣୀ ରାସମଣିଙ୍କ ଆଗରେ ଠାକୁରଙ୍କର ଏହି ପ୍ରକାର ପୂଜାରୀତି ଆମୂଳଚୂଳ ବର୍ଣ୍ଣନା କଲେ । ଭକ୍ତିମତୀ ରାଣୀ ଏହା ଶୁଣିବା ମାତ୍ରେ ଯେତିକି ଆଶ୍ଚର୍ଯ୍ୟ ହେଲେ, ସେତିକି ପୁଲକିତ ମଧ୍ୟ ହେଲେ ।

ଆଉ ଦିନକର କଥା । ସେଦିନ ରାଣୀ ରାସମଣି ସ୍ୱୟଂ ଆସି ମନ୍ଦିରରେ ପହଞ୍ଚିଲେ । କର୍ମଚାରୀମାନେ ବ୍ୟସ୍ତ ବିବ୍ରତ ହୋଇ ପଡ଼ିଥାଆନ୍ତି । ସେତେବେଳକୁ କାଳୀଙ୍କର ପୂଜା ଓ ବେଶ ହୋଇଯାଇଛି । ଜଗନ୍ମାତାଙ୍କୁ ପ୍ରଣାମ କରି ରାଣୀ ମନ୍ଦିର ମଧ୍ୟରେ ମୂର୍ତ୍ତିଙ୍କ ନିକଟରେ ଆସନରେ ବସି ପୂଜା ଆହ୍ନିକାଦି କଲେ । ପାଖରେ ଠାକୁରଙ୍କୁ ଦେଖି ତାଙ୍କୁ ମା'ଙ୍କର ନାମଗାନ କରିବାକୁ ଅନୁରୋଧ କଲେ । ତାହା ଶୁଣି ଠାକୁର ରାଣୀଙ୍କ ପାଖରେ ବସି ଭାବବିଭୋର କଣ୍ଠରେ ରାମପ୍ରସାଦ, କମଳାକାନ୍ତ ପ୍ରଭୃତି ସାଧକମାନଙ୍କ ପଦାବଳି ଗାଇ ଚାଲିଲେ । ରାଣୀ ପୂଜାଜପ ଇତ୍ୟାଦି କରୁକରୁ ଏହି ଭଜନଗୁଡ଼ିକ ଶୁଣୁଥା'ନ୍ତି । କିଛିକ୍ଷଣ ଏହିଭାବରେ କଟିଗଲା । ଠାକୁର ହଠାତ୍ ଗୀତ ବନ୍ଦ କରି ବିରକ୍ତ ହୋଇ ଉଗ୍ରଭାବରେ ରୁକ୍ଷସ୍ୱରରେ କହିଉଠିଲେ— "କେବଳ ଏହି ଭାବନା ? ଏଠାରେ ମଧ୍ୟ ସେହିସବୁ ଚିନ୍ତା ?" ଏହା କହି ଠାକୁର ରାଣୀଙ୍କ ଅଙ୍ଗରେ ନିଜ ହାତରେ ଆଘାତ କଲେ । ଏହି ଅଭାବିତ କାଣ୍ଡ ଦେଖିବାମାତ୍ରେ ସେଠାରେ ଉପସ୍ଥିତ ଥିବା ମନ୍ଦିରର କର୍ମଚାରୀ ଓ ରାଣୀଙ୍କ ପରିଚାରିକାବୃନ୍ଦଙ୍କ ମଧ୍ୟରେ ହୁଲସ୍ଥୁଲ ପଡ଼ିଗଲା । ମନ୍ଦିରର ଚଉକିଦାର ଅତି ବ୍ୟସ୍ତ ହୋଇ ଠାକୁରଙ୍କୁ ଧରିବା ଲାଗି ଚମକି ଆସିଲା । କିନ୍ତୁ ଠାକୁର ଓ ରାଣୀ ରାସମଣି ଉଭୟେ ମନ୍ଦିର ଭିତରେ ଅବିଚଳିତ ସ୍ଥିରଭାବରେ ଗମ୍ଭୀର ହୋଇ ଦଣ୍ଡାୟମାନ ରହିଥାଆନ୍ତି । ଠାକୁରଙ୍କ ମୁହଁରେ ମୃଦୁମୃଦୁ ହସ ଫୁଟିଉଠିଲା । ରାଣୀ ରାସମଣି ଠାକୁରଙ୍କ ଭର୍ତ୍ସନା ଓ ଆଘାତ

ପରେ ଗମ୍ଭୀର ହୋଇ ନିଜ ଅନ୍ତର ପରୀକ୍ଷା କରି ଦେଖୁଥିଲେ । ସେ ବୁଝିପାରିଥିଲେ ଯେ ମନ୍ଦିରକୁ ଆସି ପୂଜାଧ୍ୟାନ ଓ ଭଜନ ଶୁଣିବା ବେଳେ ମଧ୍ୟ ସେ ଭିତରେ ଭିତରେ ଅନ୍ୟମନସ୍କ ରହି କେବଳ ଗୋଟିଏ ବିଶେଷ ମକଦ୍ଦମାର ଫଳାଫଳ ବିଷୟ ଚିନ୍ତା କରୁଥିଲେ । ଏହା ବୁଝିପାରି ସେ ମନେମନେ ଖୁବ୍ ଅପ୍ରତିଭ ଓ ଅନୁତପ୍ତ ହୋଇ ପଡ଼ିଥିଲେ । ତାହା ଛଡ଼ା, ତାଙ୍କର ଏହି ଅନ୍ୟମନସ୍କତା ବିଷୟ ଠାକୁର କିପରି ଜାଣିପାରିଲେ, ଏହା ଭାବି ମଧ୍ୟ ସେ ବିସ୍ମିତ ହୋଇପଡ଼ିଥା'ନ୍ତି । କିଛି ମୁହୂର୍ତ୍ତ ଏହିପରି କଟିଗଲା । ରାଣୀ ଭାବିଲେ—ଏହି ଶୁଦ୍ଧସ୍ୱଭାବ ପୂଜକଟି ସରଳ ଆଉ ଅତ୍ୟନ୍ତ ଭକ୍ତିମାନ । କିନ୍ତୁ ଏଠାରେ ରହି ହୀନବୁଦ୍ଧି ଜୀବିକାସର୍ବସ୍ୱ ଲୋକମାନେ ଏହାଙ୍କର ଏହି ପୂତ ସ୍ୱଭାବ ବୁଝି ନ ପାରି ତାଙ୍କ ଉପରେ ବିଶେଷ କିଛି ଅତ୍ୟାଚାର କରିପାରନ୍ତି । ଏପରି ମନେମନେ ଆଶଙ୍କା କରି ସେ ଗମ୍ଭୀରଭାବରେ ଆଦେଶ ଦେଲେ—"ଭଟ୍ଟାଚାର୍ଯ୍ୟ ମହାଶୟଙ୍କର କୌଣସି ଦୋଷ ନାହିଁ । ତୁମେମାନେ ଏହାଙ୍କୁ କେହି କିଛି କହିପାରିବ ନାହିଁ ।" ରାଣୀଙ୍କ ମୁହଁରୁ ଏହି ଅଭାବିତ ଆଦେଶ ଶୁଣି ଓ ତାଙ୍କର ରୋଷକଷାୟିତ ଚାହାଁଣୀ ଦେଖି ସମବେତ କର୍ମଚାରୀଗଣ ସେହି ସ୍ଥାନ ଛାଡ଼ି କିଏ କୁଆଡ଼େ ଚାଲିଗଲେ ।

ସେହି ଦିନର ଏହି ଘଟଣାପରେ—ଜଗନ୍ମାତା କାଳୀଙ୍କୁ ନେଇ ଠାକୁରଙ୍କର ଭାବାବେଶ ଓ ଆନନ୍ଦୋଲ୍ଲାସ ପ୍ରବଳ ବେଗରେ ଦିନୁଦିନ ବଢ଼ିଚାଲିଲା । ଏପରିକି ଦେବୀପୂଜାର ନିତ୍ୟନୈମିତ୍ତିକ କାର୍ଯ୍ୟକଳାପ କୌଣସିମତେ ନିର୍ବାହ କରିବା ମଧ୍ୟ ତାଙ୍କ ପକ୍ଷରେ ଅସମ୍ଭବ ହୋଇ ଉଠିଲା । ଏପରିକି ଦେବୀପୂଜାରେ ସେବାର କାଳାକାଳ ବିଚାର ମଧ୍ୟ ତାଙ୍କର ଲୋପ ପାଇଗଲା । ଏବେ ସେ ତାଙ୍କର ଯେତେବେଳେ ଯେପରି ଇଚ୍ଛା ହେଲା, ତଦନୁରୂପ ଜଗନ୍ମାତାଙ୍କର ପୂଜା କରିବାକୁ ଲାଗିଲେ । ଠାକୁରଙ୍କର ଏହି ଅବସ୍ଥାର ପୂର୍ବ ପର୍ଯ୍ୟନ୍ତ ମଥୁରବାବୁ ତାଙ୍କ ଦ୍ୱାରା ପୂଜାକାର୍ଯ୍ୟ କୌଣସି ପ୍ରକାରେ ଚଳାଇ ନେଉଥିଲେ । କିନ୍ତୁ ବର୍ତ୍ତମାନ ଠାକୁରଙ୍କର ଯେଉଁ ପ୍ରକାର ଅବସ୍ଥା ହେଲା, ସେଥିରେ ଆଉ ଏହାଙ୍କ ଦ୍ୱାରା ପୂଜାକାର୍ଯ୍ୟ ରୀତି ମୁତାବକ ଚାଲି-ପାରିବ ନାହିଁ ବୋଲି ଭାବି, ସେ ପୂଜା ଲାଗି ଅନ୍ୟ ପ୍ରକାର ବନ୍ଦୋବସ୍ତ କଲେ । ଯେଉଁ ଦିନଠାରୁ ଠାକୁର ରାଣୀ ରାସମଣିଙ୍କ ଅଙ୍ଗରେ ଆଘାତ କରି ତାଙ୍କୁ

ଶିକ୍ଷା ଦେଇଥିଲେ, ସେହି ଦିନଠାରୁ ମଥୁରବାବୁ ଠାକୁରଙ୍କର ସୁସ୍ଥମସ୍ତିଷ୍କତା ଉପରେ ସନ୍ଦିଗ୍ଧ ହୋଇଉଠିଥିଲେ । ତାଙ୍କର ଆଶଙ୍କା ହୋଇଥିଲା ଯେ ଠାକୁରଙ୍କର ଏକପ୍ରକାର ବାୟୁରୋଗ (ବାତ) ହୋଇଛି । ଏହି ସମୟରେ ସେ କଲିକତାର ସୁପ୍ରସିଦ୍ଧ କବିରାଜ ଗଙ୍ଗାପ୍ରସାଦ ସେନଙ୍କ ଦ୍ୱାରା ତାଙ୍କର ଚିକିତ୍ସାର ବ୍ୟବସ୍ଥା ମଧ୍ୟ କରିଥିଲେ । ଏ ପ୍ରକାର ଚିକିତ୍ସାର ବନ୍ଦୋବସ୍ତ କରି ମଧ୍ୟ ମଥୁରବାବୁ କ୍ଷାନ୍ତ ହେଲେ ନାହିଁ । ମଝେ ମଝେ ସେ ଠାକୁରଙ୍କ ସଙ୍ଗେ ଆଳାପ କରି ତାଙ୍କୁ ବୁଝାଇବାକୁ ଚେଷ୍ଟା କରୁଥିଲେ ଯେ ଯେଉଁ ପ୍ରକାର ସାଧନା କଲେ ମଧ୍ୟ ପ୍ରଥମେ ମନକୁ ସ୍ଥିର ଓ ସୁସଂଯତ ରଖିବାକୁ ହେବ, ପ୍ରବଳ ଭାବାବେଗ ତାଙ୍କର ଯୋଗସାଧନା ପକ୍ଷରେ ଅନ୍ତରାୟ ହୋଇ-ପାରେ—ଏହି କଥା ସେ ନାନାବିଧ ଯୁକ୍ତି ଓ ଦୃଷ୍ଟାନ୍ତ ଦେଇ ଠାକୁରଙ୍କୁ ବୁଝାଇବାକୁ ଲାଗିଲେ ।

---

ପ୍ରଥମେ ଠାକୁରଙ୍କର ଖୁଡ଼ୁତା ପୁଅ ଶ୍ରୀଯୁକ୍ତ ରାମତାରକ ଚଟ୍ଟୋପାଧ୍ୟାୟ (ହଳଧାରୀ) ଓ ପରେ ଠାକୁରଙ୍କର ଭଣଜା ହୃଦୟଙ୍କୁ ଦେବୀପୂଜାରେ ନିଯୁକ୍ତ କଲେ । ହଳଧାରୀ ଶ୍ରୀଶ୍ରୀରାଧାଗୋବିନ୍ଦଜୀଉଙ୍କ ପୂଜାର ଭାର ଗ୍ରହଣ କଲେ ।

## ଷଷ୍ଠ ଅଧ୍ୟାୟ

# ଶ୍ରୀରାମକୃଷ୍ଣ ଓ ମଥୁରାନାଥ

ରାଣୀ ରାସମଣିଙ୍କର ଜାମାତା ମଥୁରବାବୁ ଥିଲେ ପାଶ୍ଚାତ୍ୟ ଶିକ୍ଷାଭିମାନୀ ଓ ଖୁବ୍ ତର୍କପ୍ରବଣ ବ୍ୟକ୍ତି । କିନ୍ତୁ ତାଙ୍କ ଭଳି ଲୋକ ଠାକୁରଙ୍କ ସଂସ୍ପର୍ଶରେ ଆସି ତାଙ୍କର ଅଲୌକିକ ତ୍ୟାଗ, ପ୍ରେମ ଓ ଐଶୀଶକ୍ତି ପ୍ରଭାବରେ ମୁଗ୍ଧ ହୋଇ କିପରି ଦିନେ ତାଙ୍କ ଶ୍ରୀଚରଣରେ ସଂପୂର୍ଣ୍ଣଭାବରେ ଆତ୍ମସମର୍ପଣ କରିଥିଲେ, ଆମେମାନେ ତା'ର କିଞ୍ଚିତ ଆଭାସ ଏଠାରେ ଉଲ୍ଲେଖ କରିବାକୁ ଯାଉଛୁ । ଠାକୁରଙ୍କର ବ୍ୟାକୁଳ ଅନୁରାଗ ଓ ଆଚରଣାଦି ଭକ୍ତିର ଆତିଶଯ୍ୟ ବୋଲି ମଥୁରବାବୁଙ୍କର ପ୍ରଥମେ ପ୍ରଥମେ ବୋଧ ହେଉଥିଲା; କିନ୍ତୁ ଦିନୁଁ ଦିନ ଠାକୁରଙ୍କର ଏହି ଦିବ୍ୟ ଉନ୍ମାଦନା ଯେପରି ବଢ଼ିଚାଲିଲା—ମଥୁରବାବୁ ତାଙ୍କ ବିଷୟରେ ସେତିକି ଅଧିକ ସଚେତନ ଓ ସଜାଗ ହୋଇଉଠିଲେ । ସେ ଲକ୍ଷ୍ୟ କଲେ ଯେ ଠାକୁରଙ୍କର ଏହିସବୁ ବିଚିତ୍ର ପାଗଳାମି ଓ ଅଲୌକିକ କାଣ୍ଡକାରଖାନା ଭିତରେ ମଧ୍ୟ ତାଙ୍କର ବୁଦ୍ଧିଭ୍ରଂଶ ହେଉ ନାହିଁ—ଯାହାକି ଏପରି କ୍ଷେତ୍ରରେ ସଚରାଚର ଘଟିଥାଏ । ତଥାପି ମନରେ ସନ୍ଦେହ ଥାଏ ଏବଂ ତା' ସଙ୍ଗେ ସଙ୍ଗେ ଠାକୁରଙ୍କ ପ୍ରତି ତାଙ୍କ ମନରେ ଦୟା ଓ ସହାନୁଭୂତି ମଧ୍ୟ ବଢ଼ି ଚାଲିଥାଏ । ସେଥିପାଇଁ ସେ ଚେଷ୍ଟା କରୁଥାଆନ୍ତି—କିପରି ଉତ୍ତମ ଚିକିତ୍ସକ ଓ ଔଷଧ ସାହାଯ୍ୟରେ ସେ ଠାକୁରଙ୍କର ଶାରୀରିକ ସ୍ୱାସ୍ଥ୍ୟର ଉନ୍ନତି କରାଇ ଏହିସବୁ ମାନସିକ ବିକାରରୁ ତାଙ୍କୁ ରକ୍ଷା କରିବେ ।

ଦିନକର କଥା । ଶିବମନ୍ଦିରରେ ଠାକୁର ଭକ୍ତିତଦ୍‌ଗତ ଚିତ୍ତରେ ଶିବମହିମ୍ନଃ ସ୍ତୋତ୍ର ପାଠ କରୁଥାଆନ୍ତି—

"ଅସିତଗିରିସମଂ ସ୍ୟାତ୍ କଜ୍ଜଳଂ ସିନ୍ଧୁପାତ୍ରେ
ସୁରତରୁବରଶାଖା ଲେଖନୀ ପତ୍ରମୁର୍ବୀ

ଲିଖତି ଯଦି ଗୃହୀତ୍ୱା ସାରଦା ସର୍ବକାଲଂ
ତଦପି ତବ ଗୁଣାନାମୀଶ ପାରଂ ନ ଯାତି ।''

ଅର୍ଥାତ୍—ହେ ମହାଦେବ ! ସମୁଦ୍ରର ଗଭୀର ପାତ୍ରରେ ନୀଳଗିରି ସଦୃଶ ପୁଞ୍ଜିପୁଞ୍ଜି କାଳି ରଖି କଳ୍ପତରୁ ଶାଖା ସଦୃଶ ଲେଖନୀ ଓ ପୃଥିବୀ-ପୃଷ୍ଠତୁଲ୍ୟ ବିସ୍ତୃତ କାଗଜ ନେଇ ସ୍ୱୟଂ ବାଗ୍‌ଦେବୀ ସରସ୍ୱତୀ ଯଦି ତୁମର ମହିମାର କଥା ଅନନ୍ତ କାଳ ଧରି ଲେଖି ବସନ୍ତି ତଥାପି ମଧ୍ୟ ସେ ତାହା କଦାପି ଶେଷ କରିବାକୁ ସମର୍ଥ ହୋଇପାରିବେ ନାହିଁ ।

ଶ୍ଳୋକଟି ପଢ଼ୁ ପଢ଼ୁ ଠାକୁର କୈଳାସପତି ଶିବଙ୍କର ମହିମା ହୃଦୟ ଭିତରେ ଜ୍ୱଳନ୍ତଭାବରେ ଅନୁଭବ କଲେ ଏବଂ ଏହି ତୀବ୍ର ଅନୁଭବ ଏତେ ପ୍ରଗାଢ଼ ଓ ଆବେଗ-କମ୍ପିତ ହୋଇଉଠିଲା ଯେ ସେ ଉଚ୍ଚସ୍ୱରରେ କାନ୍ଦି-ଉଠିଲେ । ତାଙ୍କର ସେହି କ୍ରନ୍ଦନରୋଳ ଓ ପାଗଳସୁଲଭ ଗଦ୍‌ଗଦ ବାକ୍ୟ ସହିତ ଅଦୃଷ୍ଟପୂର୍ବ ଆଚରଣରେ ଠାକୁରବାଡ଼ିର ଭୃତ୍ୟଗଣ ଏବଂ କର୍ମଚାରୀ-ମାନେ ସମସ୍ତେ ଦଉଡ଼ିଆସିଲେ । ମଥୁରବାବୁ ସ୍ୱୟଂ ସେଦିନ ଠାକୁରବାଡ଼ିରେ ଉପସ୍ଥିତ ଥିଲେ । ସେ ମଧ୍ୟ ଅନ୍ୟମାନଙ୍କ ସହ ଆସି ଯୋଗ ଦେଲେ । କର୍ମଚାରୀଗଣ ସସମ୍ଭ୍ରମେ ତାଙ୍କୁ ପଥ ଛାଡ଼ିଦେଲେ । ମଥୁରବାବୁ ଠାକୁରଙ୍କର ସେହି ତନ୍ମୟଭାବ ଦେଖି ମୁଗ୍ଧ ହୋଇଗଲେ । କୌଣସି କର୍ମଚାରୀଙ୍କର ଠାକୁରଙ୍କ ପ୍ରତି ତାଚ୍ଛଲ୍ୟ ଆଚରଣରେ କ୍ଷୁବ୍ଧ ହୋଇ ସେ କହିଲେ— "ସାବଧାନ ! ଯାହାର ମୁଣ୍ଡ ଉପରେ ଦଶଟା ମୁଣ୍ଡ ଅଛି, ସେହି କେବଳ ବର୍ତ୍ତମାନ ଭଟ୍ଟାଚାର୍ଯ୍ୟ ମହାଶୟଙ୍କୁ ସ୍ପର୍ଶ କରିପାରିବ ।'' କର୍ମଚାରୀମାନେ ଏହା ଶୁଣି ଅପ୍ରତିଭ ହୋଇ ଆଉ କିଛି କହିବାକୁ ବା କରିବାକୁ ସାହସ କଲେ ନାହିଁ । କିଛି ସମୟ ପରେ ଠାକୁରଙ୍କର ବାହ୍ୟ ସମ୍ବିତ୍ ଫେରି ଆସିଲା ଏବଂ ସମ୍ମୁଖରେ ମଥୁରବାବୁଙ୍କୁ ଦଣ୍ଡାୟମାନ ଦେଖି ପିଲାଟିଏ ଭଳି ଭୟବିକଳିତ କଣ୍ଠରେ ପଚାରିଲେ—"ଆଜ୍ଞା ! ମୁଁ ଅପ୍ରକୃତିସ୍ଥ ହୋଇ କିଛି ଅନୁଚିତ କଥା କରି ପକାଇଛି କି ?'' ମଥୁରବାବୁ ତାଙ୍କୁ ପ୍ରଣାମ କରି କହିଲେ—"ନା ବାବା ! ତୁମେ ସ୍ତବ ପଢ଼ୁଥିଲ । କାଳେ କେହି କିଛି

ନ ବୁଝି ତୁମକୁ ବିରକ୍ତ କରିବି, ସେଥିପାଇଁ ମୁଁ ଏଠାରେ ଠିଆ ହୋଇ ରହିଥିଲି ।’’

କ୍ରମେକ୍ରମେ ଠାକୁରଙ୍କର ଦିବ୍ୟ ସଙ୍ଗ ଲାଭ କରି ମଥୁରବାବୁଙ୍କ ହୃଦୟରେ ଏକ ଅଦ୍ଭୁତ ଅବସ୍ଥାର ଉଦୟ ହେଲା ଏବଂ ତା’ଫଳରେ ତାଙ୍କର ଭକ୍ତିବିଶ୍ୱାସ ସହସ୍ର ଗୁଣରେ ବର୍ଦ୍ଧିତ ହୋଇଗଲା । ଦିନେ ଠାକୁର ତାଙ୍କ ଘରର ଉତ୍ତରପୂର୍ବ କୋଣରେ ଯେଉଁ ଲମ୍ବା ବାରଣ୍ଡାଟି ପୂର୍ବ ପଶ୍ଚିମ ଆଡ଼କୁ ବିସ୍ତୃତ ହୋଇ ରହିଛି, ତା’ ଉପରେ ମୁହଁ ଗମ୍ଭୀର କରି ପାଦ-ଚାରଣ କରୁଥିଲେ । ‘ବାବୁକୋଠି’ ବୋଲି ପଞ୍ଚବଟୀର ସନ୍ନିକଟରେ ଯେଉଁ ପୃଥକ୍ ଘରଟି ରହିଛି, ସେହି ଘରର ଗୋଟିଏ କୋଠରୀରେ ମଥୁରବାବୁ ସେତେବେଳେ ଏକାକୀ ଚୁପ୍‌ଚାପ୍ ବସି ରହିଥିଲେ । ସେଠାରୁ ଠାକୁର୍ ପାଦଚାରଣ କରିବା ସ୍ଥାନଟି ବେଶୀ ଦୂର ହୋଇ ନ ଥିବାରୁ ସବୁ ଦେଖା ଯାଉଥିଲା । ଠାକୁର କିନ୍ତୁ ଏ ସମ୍ବନ୍ଧରେ ସଚେତନ ନ ଥିଲେ । କିଛିକ୍ଷଣପରେ ମଥୁରବାବୁ ହଠାତ ବ୍ୟସ୍ତ ବିବ୍ରତ ହୋଇ ଠାକୁରଙ୍କ ପାଖକୁ ଧାଇଁ ଆସି ତାଙ୍କର ପଦଯୁଗଳ ନିଜ ବକ୍ଷରେ ଜାବୁଡ଼ି ଧରି କ୍ରନ୍ଦନ କରିବାକୁ ଲାଗିଲେ । ମଥୁରଙ୍କର ଏହି ଆକସ୍ମିକ ବ୍ୟବହାରରେ ଠାକୁର ସ୍ତମ୍ଭିତ ହୋଇ କହିଲେ—‘‘ତୁମେ ଏ କ’ଣ କରୁଛ ? ତୁମେ ହେଲ ରାଣୀଙ୍କ ଜ୍ୱାଇଁ । ଲୋକେ ତୁମକୁ ଏପରି ଅବସ୍ଥାରେ ଦେଖିଲେ କ’ଣ କହିବେ ? ସ୍ଥିର ହୁଅ—ଉଠ ।’’

ତା’ ପରେ କିଞ୍ଚିତ୍ ଶାନ୍ତ ହୋଇ ମଥୁରବାବୁ କହିବାକୁ ଲାଗିଲେ—‘‘ମୁଁ ଆଜି ଏକ ଅଦ୍ଭୁତ କଥା ଦର୍ଶନ କଲି । ବାବା ! ତୁମେ ଏଠାରେ ଏମିତି ବୁଲୁଥିଲ । ଆଉ ମୁଁ ସ୍ପଷ୍ଟ ଦେଖିଲି ଯେ ତୁମେ ଯେତେବେଳେ ଏ ଆଡ଼କୁ ଆସୁଛ, ସେତେବେଳେ ସାକ୍ଷାତ୍ ଆମର ଏହି ମନ୍ଦିରର ଆନନ୍ଦମୟୀ ମା ! ଆଉ ଯେତେବେଳେ ଏପଟକୁ ପଛ କରି ସେପଟକୁ ଯାଉଛ, ଦେଖିଲି, ଜଟାଜୂଟଧାରୀ ବ୍ୟାଘ୍ରଛାଲପରିହିତ ସାକ୍ଷାତ୍ ସ୍ୱୟଂ ଦେବଦେବ ମହାଦେବ ! ପ୍ରଥମେ ଭାବିଲି—ଦୃଷ୍ଟିର ବିଭ୍ରମ । ସେଥିପାଇଁ ଭଲ କରି ଆଖି ପୋଛି ଆଉଥରେ ଦେଖିଲି—ସେହି ଏକା ଦୃଶ୍ୟ, ଏକା କଥା ! ଏପରି ଯେତେଥର

ଦେଖିଲି, ସେହି ସମାନ ଦୃଶ୍ୟ ମୋତେ ଦେଖାଗଲା ।"—ଏତକ କହୁକହୁ ମଥୁରନାଥ ଅଶ୍ରୁଜଳରେ ଭାସିବାକୁ ଲାଗିଲେ । ଠାକୁର ଅନେକ ପ୍ରକାରେ ବୁଝାଇ ଶୁଝାଇ ତାଙ୍କୁ କୌଣସି ପ୍ରକାରେ ଶାନ୍ତ କଲେ । ଏହିଠାରୁ ଠାକୁରଙ୍କ ସହିତ ମଥୁରବାବୁଙ୍କର ଘନିଷ୍ଠତା ବିଶେଷଭାବେ ବୃଦ୍ଧି ପାଇବାକୁ ଲାଗିଲା ଏବଂ ମଥୁରଙ୍କର ବିଶ୍ୱାସ ମଧ୍ୟ ଅନେକ ପରିମାଣରେ ଗଭୀର ହୋଇ-ଉଠିଲା । କାରଣ ସେ ବୁଝିପାରିଲେ ଯେ ଠାକୁର ସାମାନ୍ୟ ନୁହନ୍ତି, ଜଗଦମ୍ବା ତାଙ୍କ ପ୍ରତି କୃପା କରି ଠାକୁରଙ୍କ ଶରୀର ଭିତରେ ସାକ୍ଷାତ୍ ବର୍ତ୍ତମାନ ରହିଛନ୍ତି ।

ମଥୁରବାବୁଙ୍କର ଏହି ଭକ୍ତିବିଶ୍ୱାସ ଆମକୁ ହୁଏତ ଅଦ୍ଭୁତ ମନେ ହୋଇପାରେ; କିନ୍ତୁ ତାଙ୍କର ଏହି ଭକ୍ତିବିଶ୍ୱାସ ଏତେ ସହଜରେ ମଧ୍ୟ ଆସିନଥିଲା । ଏଥିରେ ସନ୍ଦେହ ନାହିଁ ଯେ ଠାକୁରଙ୍କୁ ସେ ବହୁ ପ୍ରକାର ପରୀକ୍ଷା ନିରୀକ୍ଷା କଲାପରେ ଯାଇ ଏପରି ବିଶ୍ୱାସ କରିଥିଲେ । ମଥୁର ଧନ ଦେଇ, ସୁନ୍ଦରୀ ରମଣୀ ଦେଇ; ନିଜ ଉପରେ ଏବଂ ପରିବାର ଉପରେ ଅକୁଣ୍ଠ ପ୍ରଭୁତ୍ୱ ଦେଇ, ଠାକୁରଙ୍କ ଆତ୍ମୀୟବର୍ଗ ଯଥା ହୃଦୟ ପ୍ରଭୃତିଙ୍କ ପାଇଁ ଅକାତରରେ ଅର୍ଥ ବ୍ୟୟ କରି ଓ ଏହିଭଳି ବହୁଭାବରେ ଠାକୁରଙ୍କୁ ପରୀକ୍ଷା କରି ଦେଖିଥିଲେ ଯେ—ଏ ଲୋକଟି ଅନ୍ୟ ସାଧାରଣ ଲୋକ ପରି 'କୌଣସି ପ୍ରକାର ବାହ୍ୟିକ ଜିନିଷର ପ୍ରଲୋଭନରେ ଭୁଲିବ ନାହିଁ । ଆଉ ମଧ୍ୟ କେହି ଯଦି ନରହତ୍ୟା ସଦୃଶ ଦୁଷ୍କର୍ମ କରି ସୁଦ୍ଧା ଯଥାର୍ଥ ସରଳଭାବରେ ଏହାଙ୍କର ଶରଣାପନ୍ନ ହୁଏ, ତେବେ ଏ ତା'ର ସାତଖୁଣ୍ ମାଫ କରି ତାକୁ ସାଦରେ ଗ୍ରହଣ କରିବେ ଏବଂ ତାକୁ କ୍ରମେ କ୍ରମେ ଉଚ୍ଚଲକ୍ଷ୍ୟ ଚିହ୍ନିବାର ଓ ଧରିବାର ସାମର୍ଥ୍ୟ ଦେଇପାରିବେ । ମଥୁରବାବୁ କ୍ରମଶଃ ଆହୁରି ମଧ୍ୟ ବୁଝିପାରିଲେ ଯେ ଏହି ବିଚିତ୍ରକର୍ମୀ ଠାକୁରଙ୍କ ପାଖରେ ଏପରି କିଛି ଗୋଟାଏ ଶକ୍ତି ରହିଛି, ଯାହା ଫଳରେ୍ କି ସେ ଅସମ୍ଭବକୁ ସମ୍ଭବ କରିଦେଇପାରିବେ ।

ଏହି ଶ୍ରଦ୍ଧା ଓ ବିଶ୍ୱାସ ନେଇ ମଥୁରବାବୁ କ୍ରମେ ଠାକୁରଙ୍କର ଆହୁରି ଘନିଷ୍ଠତମ ହୋଇଉଠିଲେ । ଠାକୁରଙ୍କର ଭାବସମାଧିରେ ଅସୀମ ଆନନ୍ଦାନୁଭବ ଦେଖି ତାଙ୍କ ଭଳି ବିଷୟୀ ଲୋକର ମଧ୍ୟ ଦିନେ ଇଚ୍ଛା ହେଲା

—ଭାବସମାଧି କ'ଣ, ତାହା ସେ ଥରେ ନିଜେ ଅନୁଭବ କରିବେ । ଏହି ଆଶାରେ ଦିନେ ସେ ଠାକୁରଙ୍କୁ ଯାଇ ମିନତି ଜଣାଇଲେ—"ବାବା ! ମୋର କପାଳରେ ଭାବସମାଧି ହେବ—ମତେ ଥରେ ତାହା କରାଇ ଦିଅନ୍ତୁ ।" ଠାକୁର କହିଲେ—"ହେବ ତୁମର । ତେବେ, ତା'ର ସମୟ ଆସିଲେ ହେବ । କିନ୍ତୁ ତୁମେ କାହିଁକି ସେଥିପାଇଁ ଏତେ ବ୍ୟସ୍ତ ହେଉଛ ? ତୁମେ ତ ବେଶ୍ ଅଛ । ଏପଟ ସେପଟ—ଦୁଇପଟ ସମ୍ଭାଳିଛ । ଏସବୁ ହେଲେ ସଂସାରରୁ ମନ ଛୁଟିଯିବ । ସେତେବେଳେ ତୁମର ବିଷୟ ଆଶ୍ରୟ ସବୁ କିଏ ରକ୍ଷା କରିବ ?"

ସେଦିନ କିନ୍ତୁ ମଥୁରବାବୁ ଜିଦ୍ ଧରିଲେ—ଯେ କୌଣସିମତେ ଭାବସମାଧି କରାଇ ଦେବାକୁ ହେବ । ସେତେବେଳେ ଠାକୁର କହିଲେ —"କେଜାଣି ? ମତେ କ'ଣ ଜଣାଅଛି ? ମା'ଙ୍କୁ କହିବି । ସେ ଯାହା କରିବେ ।"

ଏହାର କିଛିଦିନ ପରେ ମଥୁରବାବୁଙ୍କର ସତକୁ ସତ ଦିନେ ଭାବସମାଧି ହୋଇଗଲା । ବ୍ୟାକୁଳ ହୋଇ ଠାକୁରଙ୍କୁ ଡକାଇ ପଠାଇଲେ । ମଥୁରଙ୍କ ପାଖକୁ ଯାଇ ଠାକୁର ଦେଖିଲେ—ମଥୁର ଆଉ ସେହି ପୁରୁଣା ମଥୁର ନୁହନ୍ତି ! ଆଖି ଦୁଇଟା ଲାଲ ହୋଇ ଯାଇଛି ଏବଂ ଅବିରଳ ଅଶ୍ରୁ ଝରୁଛି । ଈଶ୍ୱରଙ୍କ କଥା କହୁ କହୁ ଆକୁଳ ହୋଇ କାନ୍ଦି ପକାଉଛନ୍ତି । ଥର ଥର ହୋଇ ଛାତି କମ୍ପୁଛି । ଠାକୁରଙ୍କୁ ଦେଖିବାମାତ୍ରେ ମଥୁର ତାଙ୍କର ପାଦ ଦୁଇଟି ଜାବୁଡ଼ି ଧରି କାତର ସ୍ୱରରେ କହି ଉଠିଲେ—"ବାବା ! ବହୁତ ହେଲା ! ଆଜିକୁ ତିନିଦିନ ହେଲା ଏହିଭଳି ହେଉଛି । ବିଷୟକର୍ମ କରିବାକୁ ଚେଷ୍ଟା କଲେ ମଧ୍ୟ ଟିକିଏ ହେଲେ ମନ ବଳୁ ନାହିଁ । ତୁମର ଭାବ ତୁମେ ଫେରାଇ ନିଅ ଠାକୁର । ଏସବୁ ମୁଁ ଚାହୁଁ ନାହିଁ ।" ଠାକୁର ସେତେବେଳେ ହସି ହସି କହିଲେ—"ତୁମକୁ ତ ସେକଥା ମୁଁ ଆଗରୁ କହିଛି !"

ଏହା କହି ସେ ମଥୁରବାବୁଙ୍କ ଛାତି ନିଜ ହାତରେ ଆଉଁଷି ଦେଇ ତାଙ୍କର ଭାବ ପ୍ରଶମିତ କରିଦେଲେ । ପ୍ରକୃତ କଥା ହେଲା—କେବଳ ଭକ୍ତ

ବା ସମାଧି ହୋଇଗଲେ ଚଳିବ ନାହିଁ । ଏହାର ବେଗ ସହ୍ୟ କରିବା ବା ଏହାକୁ ରକ୍ଷା କରିପାରିବା ଅତି କଷ୍ଟସାଧ୍ୟ । ଯଦି ମନ ଭିତରେ ସାମାନ୍ୟତମ ବାସନା ଥାଏ, ତେବେ ଏହାକୁ ରକ୍ଷା କରିବା ଅସମ୍ଭବ ।

ଏହିପରି ଭାବରେ ମଥୁରବାବୁଙ୍କ ସହିତ ଠାକୁର ଖୁବ୍ ସୁନ୍ଦର ମଧୁର ସମ୍ପର୍କ ସ୍ଥାପନ କରିଥିଲେ । ମଥୁରଙ୍କର ମଧ୍ୟ ପ୍ରୀତି ଘନୀଭୂତ ହୋଇ ଶେଷ ପର୍ଯ୍ୟନ୍ତ ସେ ବାବାଗତପ୍ରାଣ ହୋଇ ପଡ଼ିଥିଲେ । ଏକ ଦିଗରେ ମଥୁର ଯେପରି ଠାକୁରଙ୍କର ଦୈବଶକ୍ତି ଉପରେ ନିର୍ଭର କରୁଥିଲେ, ଅନ୍ୟ ଦିଗରେ ମଧ୍ୟ ସେହିପରି ସେ ଏହି ଈଶ୍ୱରପାଗଳ ଠାକୁରଙ୍କୁ ଅନଭିଜ୍ଞ ବାଳକଟିଏ ମାତ୍ର ଜ୍ଞାନ କରି ତାଙ୍କୁ ସର୍ବଦା ରକ୍ଷା କରିବାକୁ ପ୍ରସ୍ତୁତ ଥିଲେ । ଏହା ହିଁ ଦୈବନିର୍ଦ୍ଦିଷ୍ଟ ସମ୍ବନ୍ଧ ! ତା' ନ ହେଲେ ଦୀର୍ଘ ଚଉଦ ବର୍ଷ କାଳ ଏହି ସମ୍ବନ୍ଧ ଏପରି ଅକ୍ଷୁଣ୍ଣଭାବେ କେବେ ରହିପାରିଥାଆନ୍ତା କି ? ହାୟ ପୃଥିବୀ ! ଏପରି ବିଶୁଦ୍ଧ ମଧୁର ସମ୍ବନ୍ଧ ଏତେକାଳ ଭିତରେ ତୁମେ କେତୋଟି ବା ଦେଖିଛ ?

## ସପ୍ତମ ଅଧ୍ୟାୟ

# ଶକ୍ତିସାଧନାର ଶେଷ କଥା

ଠାକୁରଙ୍କର ଏହି ସାଧକ ଜୀବନ ଆଲୋଚନା କଲେ ଆମେ ଦେଖୁ କୌଣସି ବାହ୍ୟ ବିଷୟର ସହାୟତା ନ ପାଇଲେ ମଧ୍ୟ ଏକମାତ୍ର ବ୍ୟାକୁଳତା ଦ୍ୱାରା ସାଧକର ଈଶ୍ୱରପ୍ରାପ୍ତି ହୋଇପାରେ । କିନ୍ତୁ କେବଳ ମାତ୍ର ଏହାର ସହାୟତାରେ ସିଦ୍ଧକାମ ହେବାକୁ ହେଲେ ଏହି ବ୍ୟାକୁଳ ଆଗ୍ରହର ପରିମାଣ ଯେ କେତେ ଅଧିକ ହେବା ଉଚିତ, ଠାକୁରଙ୍କର ଜୀବନାଲୋଚନା କଲେ ତାହାର ଆଭାସ ମିଳିଥାଏ । ତୀବ୍ର ବ୍ୟାକୁଳତାର ପ୍ରେରଣାରେ ତାଙ୍କର ଆହାର, ନିଦ୍ରା, ଲଜ୍ଜା, ଭୟ ପ୍ରଭୃତି ଶାରୀରିକ ଓ ମାନସିକ ଦୃଢ଼ବଦ୍ଧ ସଂସ୍କାର ଓ ଅଭ୍ୟାସ ସମସ୍ତ କେଉଁଆଡ଼େ ଲୋପ ପାଇଗଲା ଏବଂ ଶାରୀରିକ ସ୍ୱାସ୍ଥ୍ୟରକ୍ଷାର କଥା ବା କ'ଣ, ଜୀବନରକ୍ଷା ଦିଗରେ ମଧ୍ୟ ତାଙ୍କର ଅଣୁମାତ୍ର ଲକ୍ଷ୍ୟ ରହିଲା ନାହିଁ । ପରବର୍ତ୍ତୀ କାଳରେ ଠାକୁର ନିଜ ମୁହଁରେ ସାଧନାର ସେହି ଦିନଗୁଡ଼ିକର କଥା କହିଛନ୍ତି—

"ଶରୀରର ସଂସ୍କାର ଦିଗରେ ତ ଆଦୌ ଖିଆଲ ରହିଲା ନାହିଁ ! ତେଣୁ ସେତେବେଳେ ମୋ ମୁଣ୍ଡବାଳ ସବୁ ବଡ଼ ହୋଇଗଲା । ସେଥିରେ ଧୂଳିମାଟି ଲାଗି ଆପଣା ଛୁଏଁ ଜଟା ବାନ୍ଧିଗଲା । ଯେତେବେଳେ ଧ୍ୟାନ କରିବାକୁ ବସେ, ମନଟା ଏତେ ଦୂର ଏକାଗ୍ର ହୋଇଯାଏ ଯେ ଶରୀର ସ୍ଥାଣୁ ପାଲଟି ଯାଏ । ସେତେବେଳେ ପକ୍ଷୀମାନେ ଆସି ଜଡ଼ ପଦାର୍ଥ ଭାବି ମୋର ମୁଣ୍ଡ ଉପରେ ନିଃସଙ୍କୋଚରେ ବସୁଥିଲେ । ପୁଣି ସେହି ଜଟା ଭିତରୁ ଥଣ୍ଟରେ ଧୂଳିମାଟି ଆଡ଼େଇ ଚାଉଳକଣା ଖୋଜୁଥିଲେ । ଆଉ ଥରେ ଥରେ ଭଗବାନଙ୍କ ବିରହରେ ଅଧୀର ହୋଇ ଭୂଇଁ ଉପରେ ଏପରି ମୁହଁ ଘଷି ଦେଉଥିଲି ଯେ ମୁହଁ ଛିଣ୍ଡିଯାଇ ରକ୍ତାକ୍ତ ହୋଇଯାଉଥିଲା । ଏହି ଭାବରେ ଧ୍ୟାନ, ଭଜନ, ପ୍ରାର୍ଥନା, ଆତ୍ମନିବେଦନ ଆଦିରେ ଦିନଗୁଡ଼ାକ ଯେ

କପରି କଟି ଯାଉଥିଲା, ସେଆଡ଼କୁ ମୋର ହୋସ୍ ରହୁ ନ ଥିଲା । ପରେ ଯେତେବେଳେ ସନ୍ଧ୍ୟା ଘୋଟି ଆସୁଥିଲା -- ସେତେବେଳେ ଶଙ୍ଖ ଘଣ୍ଟାଧ୍ୱନି ଶୁଣି ବୁଝିପାରୁଥିଲି ଯେ ଦିନ ଶେଷ ହେଲା—ଏବଂ ଆଉ ଗୋଟାଏ ଦିନ ମଧ୍ୟ ବୃଥା କଟିଗଲା—ମା'ର ଦେଖା ମିଳିଲା ନାହିଁ—ସେତେବେଳେ ତୀବ୍ର ଆକ୍ଷେପ ଆସି ପ୍ରାଣକୁ ଏପରି ବ୍ୟାକୁଳ କରିପକାଏ ଯେ ଆଉ ସ୍ଥିର ହୋଇ ରହିପାରେ ନାହିଁ । ଧୁମ୍ କରି ଭୂଇଁ ଉପରେ ପଡ଼ିଯାଏ—ଆଉ କାତର ପ୍ରାଣରେ ଭୂଇଁ ଉପରେ ଗଡ଼ିଗଡ଼ି କ୍ରନ୍ଦନ କରେ—'ମା ! ଏବେ ବି ଦେଖା ଦେଲୁ ନାହିଁ ।' ଏପରି ଯନ୍ତ୍ରଣାରେ ଛଟପଟ ହେଉଥାଏ ।''

ଆଉ ଦିନେ ଠାକୁର ସେହି ସମୟର ବର୍ଣ୍ଣନା କରି ଆକ୍ଷେପୋକ୍ତି କରି କହିଲେ, ''ଲୋକେ ସ୍ତ୍ରୀପୁତ୍ରାଦିଙ୍କ ମୃତ୍ୟୁରେ ବା ବିଷୟ-ସମ୍ପତ୍ତି ହରାଇ ଆଖିରୁ ମାଠିଆ ମାଠିଆ ଲୁହ ଢାଳନ୍ତି; କିନ୍ତୁ ଈଶ୍ୱରଙ୍କୁ ପାଇଲି ନାହିଁ ବୋଲି କେତେ ଲୋକ ଏପରି କାନ୍ଦନ୍ତି, କୁହ ! ଅଥଚ ସମସ୍ତେ କହନ୍ତି— 'ଭଗବାନଙ୍କୁ ଏତେ ଡାକିଲି— ତଥାପି ସେ ଦର୍ଶନ ଦେଲେ ନାହିଁ !' ଭଗବାନଙ୍କ ପାଇଁ କେହି ଥରେ ହେଲେ ବି ଏପରି କାନ୍ଦୁ ଦେଖି—କିପରି ସେ ଦର୍ଶନ ନ ଦେବେ ଦେଖିବା !''

ଠାକୁରଙ୍କ ମୁହଁରୁ ଏହିସବୁ କଥା ଶୁଣିଲେ ବୁଝାଯାଏ— ସେ ଏକଥା ନିଜ ଜୀବନରେ ପରୀକ୍ଷା କରି ସତ୍ୟ ବୋଲି ପ୍ରମାଣ ପାଇଛନ୍ତି; ତେଣୁ ଏତେ ନିଃସଂଶୟରେ ଏକଥା କହୁଛନ୍ତି !

ସାଧନକାଳର ପ୍ରଥମ ଚାରିବର୍ଷ ଠାକୁର କେବଳ ଶ୍ରୀଶ୍ରୀଜଗଦମ୍ବାଙ୍କ ଦର୍ଶନ ମାତ୍ର କରି ନିଶ୍ଚିନ୍ତ ରହି ନ ଥିଲେ । ଭାବରାଜ୍ୟରେ ଶ୍ରୀଶ୍ରୀଜଗନ୍ମାତାଙ୍କ ଦର୍ଶନଲାଭ ପରେ ନିଜ କୁଳଦେବତା ଶ୍ରୀରଘୁବୀରଙ୍କ ଦର୍ଶନଲାଭ ମଧ୍ୟ ସମ୍ଭବପର ଭାବି ଦାସ୍ୟଭକ୍ତିରେ ସିଦ୍ଧ ହେବା ଲାଗି ସେ ବର୍ତ୍ତମାନ ନିଜ ଭିତରେ ମହାବୀରଙ୍କର ଭାବାରୋପ କରି ସାଧନା କରିବାକୁ ଲାଗିଲେ । ନିରନ୍ତର ମହାବୀରଙ୍କର ଚିନ୍ତା କରି କରି ଏହି ସମୟରେ ସେ ଏହି ଆଦର୍ଶରେ ଏତେଦୂର ତନ୍ମୟ ହୋଇ ପଡ଼ିଲେ ଯେ ନିଜର ସ୍ୱତନ୍ତ୍ର ଅସ୍ତିତ୍ୱ ଓ ବ୍ୟକ୍ତିତ୍ୱ କଥା କିଛିଦିନ ପାଇଁ ସମ୍ପୂର୍ଣ୍ଣ ଭୁଲିଗଲେ । ଏହି ଦାସ୍ୟଭକ୍ତିର

ସାଧନାକାଳରେ ଠାକୁରଙ୍କ ଜୀବନରେ ଏକ ଅଦ୍ଭୁତଦୃଷ୍ଟ ଦର୍ଶନ ଓ ଅନୁଭବ ସମ୍ଭବ ହୋଇଥିଲା । ଠାକୁର ସେସବୁ ଅନୁଭବର କଥା ନିଜ ମୁହଁରେ କହିଛନ୍ତି—

"ଏହି ପଞ୍ଚବଟୀ ତଳେ ଦିନେ ବସିଥାଏ—କିଛି ଯେ ଧ୍ୟାନ ଚିନ୍ତା କରୁଥାଏ ତା' ନୁହେଁ । ଏମିତି ଖାଲି ବସିଥାଏ—ଏହି ସମୟରେ ଗୋଟିଏ ନିରୁପମା ଜ୍ୟୋତିର୍ମୟୀ ସ୍ତ୍ରୀମୂର୍ତ୍ତି ଅଦୂରରେ ଆବିର୍ଭୂତ ହୋଇ ସେହି ସ୍ଥାନକୁ ଆଲୋକିତ କରିଦେଲେ । ଏହି ଦେବୀମାନବୀ ତାଙ୍କର ପ୍ରସନ୍ନ ଦୃଷ୍ଟିରେ ଚତୁର୍ଦ୍ଦିଗ ମୋହିତ କରି ଉତ୍ତର ଦିଗରୁ ଦକ୍ଷିଣ ଆଡ଼କୁ ଅଗ୍ରସର ହେଉଥା'ନ୍ତି । ଏହା ଦେଖି ମୁଁ ସ୍ତମ୍ଭିତ ହୋଇ ଭାବୁଥାଏ 'ଇଏ କିଏ ?' —ଏହି ସମୟରେ ହଠାତ୍ ଗୋଟିଏ ହନୁ ମାଙ୍କଡ଼ ଆକସ୍ମିକ ଭାବରେ କେଉଁଠାରୁ କୁଦି ଆସିଲା —ଆଉ ଉପ୍ ଉପ୍ ଶବ୍ଦ କରି ସେହି ନାରୀମୂର୍ତ୍ତିଙ୍କ ପଦପ୍ରାନ୍ତରେ ଲୋଟିଗଲା । ମୋ ମନ ଭିତରେ କିଏ ଯେପରି କହିଉଠିଲା—'ସୀତା, ଜନମଦୁଃଖିନୀ ସୀତା, ଜନକରାଜନନ୍ଦିନୀ ସୀତା, ରାମମୟଜୀବିତା ସୀତା ।' ସେତେବେଳେ ମା, ମା ବୋଲି ଅଧୀର ହୃଦୟରେ ତାଙ୍କ ପାଦତଳେ ନିପତିତ ହେବାକୁ ଯାଉଛି, ଏହି ସମୟରେ ସେ ସହସା ଆସି (ନିଜ ଶରୀର ଦେଖାଇ) ଏହା ଭିତରେ ପ୍ରବିଷ୍ଟ ହୋଇଗଲେ । ଆନନ୍ଦ ଏବଂ ବିସ୍ମୟରେ ଅଭିଭୂତ ହୋଇ ବାହ୍ୟଜ୍ଞାନ ହରାଇ ମୁଁ ସେଠାରେ ପଡ଼ିଗଲି । ଧ୍ୟାନ, ଚିନ୍ତାଦି ନ କରି ଏପରି ଭାବରେ କୌଣସି ଦର୍ଶନ ମୋର ଏହା ପୂର୍ବରୁ ଆଉ ଘଟି ନାହିଁ ।"

ଆଉ ଥରେ—ଠାକୁର ଭାବିଲେ ତାଙ୍କ ତପସ୍ୟା ଲାଗି ଉପଯୁକ୍ତ ପବିତ୍ର ଭୂମିଟିଏ ପ୍ରସ୍ତୁତ କରିବେ । ଏହି ଉଦ୍ଦେଶ୍ୟରେ ହୃଦୟ ନିକଟରେ ସେ ଗୋଟିଏ ନୂତନ ପଞ୍ଚବଟୀ ସ୍ଥାପନର ବାସନା ପ୍ରକାଶ କଲେ । ତା' ପରେ, ବର୍ତ୍ତମାନ ଯେଉଁଠାରେ ସାଧନକୁଟୀର ଅଛି, ତା'ର ପଶ୍ଚିମରେ ଠାକୁର ସ୍ୱହସ୍ତରେ ଗୋଟିଏ ଅଶ୍ୱତ୍ଥ ବୃକ୍ଷ ରୋପଣ କରି ହୃଦୟଦ୍ୱାରା ବଟ, ଅଶୋକ, ବେଲ ଓ ଅଁଳା ବୃକ୍ଷର ଚାରା ରୋପଣ କରାଇଲେ ଏବଂ ତୁଳସୀ ଓ ଅପରାଜିତାର ଅନେକଗୁଡ଼ିଏ ଚାରା ପୋତି ସମଗ୍ର ସ୍ଥାନଟିକୁ ବେଷ୍ଟନ

କରାଇନେଲେ । ପରେ ମଥୁରାନାଥଙ୍କ ସାହାଯ୍ୟରେ ବିଭିନ୍ନ ତୀର୍ଥରୁ ପବିତ୍ର ଧୂଳି ଆଣି ଠାକୁର ସ୍ୱହସ୍ତରେ ପଞ୍ଚବଟୀ ମୂଳରେ ବିଞ୍ଚିଥିଲେ ।

ଏଣେ କ୍ରମଶଃ କାଳୀବାଡ଼ି ପ୍ରତିଷ୍ଠାର କଥା ଲୋକମୁଖରେ ଚାରିଆଡ଼େ ପ୍ରଚାରିତ ହୋଇଗଲା । ଫଳରେ ଯେଉଁ ତୀର୍ଥଯାତ୍ରୀମାନେ ଗଙ୍ଗାସାଗର ମେଳା ବା ଶ୍ରୀଜଗନ୍ନାଥଦର୍ଶନକୁ ଯାଉଥିଲେ, ସେମାନଙ୍କ ଭିତରୁ ବହୁ ସାଧୁ-ସନ୍ନ୍ୟାସୀଙ୍କୁ ରାଣୀ ରାସମଣି ପ୍ରକାର ସହିତ ଦକ୍ଷିଣେଶ୍ୱର ନିମନ୍ତ୍ରଣ କରୁଥିଲେ । ସେମାନେ ମଧ୍ୟ ଆନନ୍ଦରେ ରାଣୀଙ୍କର ଆତିଥ୍ୟ ଗ୍ରହଣ କରୁଥିଲେ ଓ କିଛିଦିନ କାଳୀବାଡ଼ିରେ ବିଶ୍ରାମ ନେଇ ପୁନଶ୍ଚ ଯାତ୍ରା କରୁଥିଲେ । ଏମାନଙ୍କ ମଧ୍ୟରୁ କାହାକାହାଠାରୁ ଠାକୁର ପ୍ରାଣାୟାମାଦି ହଠଯୋଗର କ୍ରିୟାସବୁ ଅଭ୍ୟାସ କରିଥିଲେ । ଏହି ହଠଯୋଗର କ୍ରିୟାସବୁ ସ୍ୱୟଂ ଅଭ୍ୟାସ କରି ଏଗୁଡ଼ିକର ଫଳାଫଳ ପ୍ରତ୍ୟକ୍ଷ କରିବା ହେତୁ ସେ ପରବର୍ତ୍ତୀ କାଳରେ ଅନ୍ୟମାନଙ୍କୁ ଏସବୁ ଅଭ୍ୟାସ କରିବା ଲାଗି ନିଷେଧ କରୁଥିଲେ । ଏହି ହଠଯୋଗ କ୍ରିୟା ଫଳରେ ସ୍ୱୟଂ ଠାକୁର ମଧ୍ୟ ଥରେ ବିପଦାପନ୍ନ ହୋଇ ପଡ଼ିଥିଲେ । ଠାକୁରଙ୍କର ଖୁଡ଼ୁତାପୁଅ ବଡ଼ ଭାଇ ହଳଧାରୀ ଥିଲେ ରାଧାଗୋବିନ୍ଦଜୀଉଙ୍କ ପୂଜକ । ସେ ବୈଷ୍ଣବତନ୍ତ୍ରୋକ୍ତ ପରକୀୟା ପ୍ରେମ ସାଧନାରେ ରତ ଥିଲେ । ଏ ବିଷୟରେ ନାନା ଲୋକେ ନାନା ପ୍ରକାର ଚୁପ୍‌ଚାପ୍ ହେଉଥିଲେ; କିନ୍ତୁ ଲୋକଙ୍କର ଗୋଟିଏ ବିଶ୍ୱାସ ଥିଲା ଯେ ହଳଧାରୀ ବାକ୍‌ସିଦ୍ଧ; ଯାହାକୁ ଯାହା କହିବେ, ତାହା ହୋଇଯିବ । ସେହି ଭୟରୁ କେହି ତାଙ୍କ ଆଗରେ ଏ ବିଷୟରେ ଆଲୋଚନା କରନ୍ତି ନାହିଁ କିମ୍ବା ହାସ ପରିହାସ କରିବାକୁ ସାହସ କରନ୍ତି ନାହିଁ । ବଡ଼ଭାଇଙ୍କ ସମ୍ବନ୍ଧରେ ଏସବୁ ଶୁଣିବା ପରେ ଦିନେ ଠାକୁର ତାଙ୍କୁ ଏସବୁ କଥା ଖୋଲିକରି କହିଲେ । ହଳଧାରୀ ତାହା ଶୁଣି ଖୁବ୍ ରୁଷ୍ଟ ହୋଇଉଠିଲେ ଏବଂ ସଙ୍ଗେ ସଙ୍ଗେ କ୍ରୁଦ୍ଧସ୍ୱରରେ ଅଭିଶାପ ଦେଲେ—"ତୁ ମୋଠାରୁ କନିଷ୍ଠ ହୋଇ ସୁଦ୍ଧା ମୋତେ ଏପରି ଅବଜ୍ଞା କଲୁ ? ତୋ, ମୁହଁରୁ ରକ୍ତ ପଡ଼ିବ ।" ଏହି ଘଟନାର କିଛିଦିନ ପରେ ଦିନେ ରାତି ଆଠଟା ନଅଟା ସମୟରେ ଠାକୁରଙ୍କ ମୁହଁରୁ ସତକୁସତ ରକ୍ତ ପଡ଼ିଲା । ଶିମ୍ବପତ୍ରର ରସଭଳି ତାହା ଥିଲା ସବୁଜାଭ ରକ୍ତ । ସମ୍ବାଦ ଶୁଣି ହଳଧାରୀ ମଧ୍ୟ ବ୍ୟସ୍ତ

ହୋଇ ସେଠାକୁ ଦୌଡ଼ି ଆସିଲେ । ଠାକୁରବାଡ଼ିକୁ ସେଦିନ ଜଣେ ପ୍ରାଚୀନ ବିଜ୍ଞ ସାଧୁ ଆସିଥିଲେ । ସେ ରକ୍ତର ରଙ୍ଗ ଏବଂ ମୁହଁ ଭିତରେ ଯେଉଁ ସ୍ଥାନରୁ ସେ ରକ୍ତ ବାହାରୁଥିଲା ତାହା ପରୀକ୍ଷା କରି କହିଲେ—"ଆଚ୍ଛା ! ତୁମେ ଯୋଗସାଧନା କରୁଛ । ହଠଯୋଗର ଶେଷରେ ଜଡ଼ସମାଧି ହୁଏ । ତୁମର ମଧ୍ୟ ତାହା ହେଉଥିଲା । ସୁଷୁମ୍ନାଦ୍ୱାର ଖୋଲିଯାଇ ରକ୍ତ ମୁଣ୍ଡକୁ ଉଠି ଯାଉଥିଲା । କିନ୍ତୁ ମୁଣ୍ଡ ଭିତରକୁ ନ ଯାଇ ଏହା ଯେ ଏହିପରି ଭାବରେ ମୁହଁ ଭିତରେ ଆପଣାଛାଏଁ ଗୋଟାଏ ବାଟ ଫିଟାଇ ବାହାରି ଆସିଲା, ଏଥିରେ ବଡ଼ ଭଲ ହେଲା । କାରଣ ଜଡ଼ସମାଧି ହୋଇଥିଲେ ଏହା ଆଉ ଭାଙ୍ଗି ନ ଥା'ନ୍ତା । ତୁମର ଶରୀରଦ୍ୱାରା ଜଗନ୍ମାତାଙ୍କର ବିଶେଷ କିଛି କାର୍ଯ୍ୟ କରିବାକୁ ଅଛି; ସେଥିଲାଗି ସେ ଆଜି ତୁମକୁ ଏପରି ଭାବରେ ରକ୍ଷା କଲେ ।" ସାଧୁଙ୍କ ମୁହଁରୁ ଏକଥା ଶୁଣି ଠାକୁର ଆଶ୍ୱସ୍ତ ହେଲେ । ହଳଧାରୀଙ୍କ ଅଭିଶାପ କାକତାଳୀୟ ନ୍ୟାୟରେ ସଫଳ ହୋଇ ବରଂ ଆଶୀର୍ବାଦରେ ପରିଣତ ହୋଇଗଲା ।

ବାଳକସ୍ୱଭାବ ଠାକୁର କେବେକେବେ ହଳଧାରୀଙ୍କ ପାଣ୍ଡିତ୍ୟରେ ଭୁଲିଯାଇ କ'ଣ ଠିକ୍ କ'ଣ ଭୁଲ ବୁଝିବା ପାଇଁ ଜଗନ୍ମାତାଙ୍କ ପାଖକୁ ଦୌଡ଼ି ଯାଉଥିଲେ । ଭାବାବେଶରେ ଠାକୁରଙ୍କର ତ ଈଶ୍ୱରଙ୍କ ସମ୍ବନ୍ଧୀୟ ବହୁ ବିଚିତ୍ର ଅନୁଭୂତିମାନ ହୁଏ ! କିନ୍ତୁ ପାଣ୍ଡିତ୍ୟାଭିମାନୀ ହଳଧାରୀ ସେହି ସବୁକୁ ତର୍କଯୁକ୍ତିଦ୍ୱାରା ଉଡ଼ାଇ ଦେଇ କହନ୍ତି—ଏଗୁଡ଼ାକ ମିଥ୍ୟା, ଏଗୁଡ଼ାକ ମାୟାଦର୍ଶନ । ଈଶ୍ୱର ଭାବ-ଅଭାବର ଅତୀତ ।

ଏସବୁ ଶୁଣି ଠାକୁରଙ୍କର ଥରେ ନିଜର ଉପଲବ୍ଧିଗୁଡ଼ିକ ଉପରେ ସନ୍ଦେହ ହେଲା । ସେତେବେଳର କଥା ଠାକୁର ନିଜ ମୁହଁରେ କହିଛନ୍ତି—"ଭାବିଲି, ତା' ହେଲେ ତ ଭାବାବେଶରେ ଯେତେସବୁ ଈଶ୍ୱରୀୟ ରୂପ ଦେଖିଛି, ଆଦେଶ ପାଇଛି, ସେସମସ୍ତ ଭୁଲ । ମା' ତେବେ ମୋତେ ଫାଙ୍କି ଦେଲେ ? ମନ ବଡ଼ ବ୍ୟାକୁଳ ହେଲା ଏବଂ ସେହି ଅଭିମାନରେ କାନ୍ଦି କାନ୍ଦି ମାଆଙ୍କୁ କହିଲି—'ମା ! ନିରକ୍ଷର ମୂର୍ଖ ବୋଲି ମୋତେ କ'ଣ ଏପରି ଠକି ଦେଲୁ ?' ସେହି କାନ୍ଦଣାର ବେଗ ଆଉ ବନ୍ଦ ହେଲା ନାହିଁ । କୋଠି-

ଘରେ ବସି କାନ୍ଦୁଥିଲି । କିଛିକ୍ଷଣ ପରେ ଦେଖିଲି—ସହସା ଚଟାଣ ଉପରୁ କୁହୁଡ଼ିଭଳି ଧୂଆଁ ଉଠି ସମ୍ମୁଖର କେତେକ ସ୍ଥାନ ପୂର୍ଣ୍ଣ ହୋଇଗଲା । ତା'ପରେ ଦେଖିଲି—ସେହି କୁହୁଡ଼ିଆ ଧୂଆଁ ଭିତରେ ଆବକ୍ଷଲମ୍ବିତଶ୍ମଶ୍ରୁ ଏକ ଜୀବନ୍ତ ସୌମ୍ୟ ମୁଖ । ଏହି ମୂର୍ତ୍ତି ମୋ ଆଡ଼କୁ ସ୍ଥିର ଦୃଷ୍ଟିରେ ଚାହିଁରହି ଗମ୍ଭୀର ସ୍ୱରରେ କହିଲେ—'ଆରେ, ତୁ ଭାବମୁଖରେ ରହି । ଭାବମୁଖରେ ରହି—ଭାବମୁଖରେ ରହି ।' ଏହିପରି ମାତ୍ର ତିନିଥର କହିଦେଇ ସେହି ମୂର୍ତ୍ତି ଧୀରେଧୀରେ ପୁଣି ଏହି କୁହୁଡ଼ି ଭିତରେ କେଉଁଆଡ଼େ ମିଳାଇଗଲେ ଏବଂ ସେହି କୁହୁଡ଼ିଆ ଧୂଆଁ ମଧ୍ୟ ଅନ୍ତର୍ହିତ ହୋଇଗଲା । ଏହିପରି ଦର୍ଶନରେ ସେଥର ଶାନ୍ତ ହୋଇଥିଲି ।"

ଏହି ଚାରିବର୍ଷର ସାଧନା ଭିତରେ ଠାକୁର ମନ ଭିତରେ କାଞ୍ଚନାସକ୍ତି ଦୂର କରିଥିଲେ । ସେ ଗୋଟିଏ ହାତରେ ମାଟି ଓ ଅନ୍ୟ ହାତରେ ଟଙ୍କା ଧରି 'ଟଙ୍କା ମାଟି—ମାଟି ଟଙ୍କା' କହୁକହୁ ସେହି ମାଟି ଓ ଟଙ୍କାତକ ଗଙ୍ଗାନଦୀ ଭିତରକୁ ନିକ୍ଷେପ କଲେ । ତତ୍ ସଙ୍ଗେ ସଙ୍ଗେ ସେହି ଦିନୁଁ ତାଙ୍କ ମନ ଭିତରେ ଅର୍ଥପ୍ରତି ସାମାନ୍ୟତମ ଅନୁରକ୍ତିରୁ ମଧ୍ୟ ସେ ନିଜକୁ ମୁକ୍ତ କରି ପାରିଥିଲେ । ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ବସ୍ତୁ ଓ ବ୍ୟକ୍ତି ସମସ୍ତଙ୍କୁ ଶ୍ରୀଶ୍ରୀଜଗଦମ୍ବାଙ୍କ ପ୍ରକାଶ ଓ ଅଂଶରୂପେ ଉପଲବ୍‌ଧି କରିବା ପାଇଁ ସେ କାଙ୍ଗାଳଭୋଜନ ପରେ ସେମାନଙ୍କର ଅଇଁଠାପତରରୁ ଖାଦ୍ୟ ଆଣି ଖାଇଛନ୍ତି —ସେମାନଙ୍କ ଭୋଜନ ସ୍ଥାନ ନିଜ ହାତରେ ପରିଷ୍କାର କରିଛନ୍ତି । ସମାଜରେ ଯେଉଁ ମେହେନ୍ତରମାନଙ୍କୁ ଅନ୍ୟମାନେ ଘୃଣା କରିଥାଆନ୍ତି, ସେମାନଙ୍କଠାରୁ ସେ ନିଜେ ସାମାନ୍ୟତମଭାବେ ମଧ୍ୟ ବଡ଼ ନୁହନ୍ତି, ଏହି କଥା ଉପଲବ୍‌ଧି କରିବାପାଇଁ ଓ ମନଭିତରୁ ସେହିସବୁ ଅଭିମାନ ଅହଂକାର ଆଦି ପରିହାର କରିବା ପାଇଁ ସେ ପାଇଖାନା ପର୍ଯ୍ୟନ୍ତ ନିଜ ହାତରେ ସଫା କରିଛନ୍ତି । ପୁଣି ଚନ୍ଦନଠାରୁ ବିଷ୍ଠା ପର୍ଯ୍ୟନ୍ତ ସକଳ ପଦାର୍ଥ ପଞ୍ଚଭୂତର ବିକାରମାତ୍ର ଜାଣି ଏହା ହେୟ ଓ ତାହା ଉପାଦେୟ, ଏହି ଭେଦଜ୍ଞାନ ମନ ଭିତରୁ ବହିଷ୍କୃତ କରିବା ପାଇଁ ସେ ନିଜ ଜିହ୍ୱାଦ୍ୱାରା ଅନ୍ୟ ଲୋକର

ବିଷ୍ଠା ପର୍ଯ୍ୟନ୍ତ ନିର୍ବିକାର ଚିତ୍ତରେ ସ୍ପର୍ଶ କରିଛନ୍ତି । ଏପରି କଠିନ ଅଶ୍ରୁତପୂର୍ବ ସାଧନା ସେ ଏହି କାଳରେ କରିଛନ୍ତି ।

ସାଧନାର ପ୍ରଥମ ଚାରିବର୍ଷ ଶେଷ ହେବା ଲାଗି କିଛିଦିନ ଥାଏ —ଠାକୁର ସେତେବେଳେ ନିଜର ଜନ୍ମସ୍ଥାନ କାମାରପୁକୁରରେ ଥାଆନ୍ତି । ସେତେବେଳେ ତାଙ୍କ ଜୀବନରେ ଗୋଟିଏ ଅପୂର୍ବ ଦର୍ଶନ ଘଟିଥିଲା । ଦିନକର କଥା । ଠାକୁର ସବାରିରେ ବସି ଭଣଜା ହୃଦୟଙ୍କର ଗାଁ ଶିହଡ଼କୁ ଯାଉଥାଆନ୍ତି । ଉପରେ ସୁନୀଳ ଆକାଶ । ଚାରିପଟେ ବିସ୍ତୀର୍ଣ୍ଣ ପ୍ରାନ୍ତର । ଶ୍ୟାମଳ ଧାନ୍ୟକ୍ଷେତ୍ର । ସୁଶୀତଳ ଛାୟାମୟ ଅଶ୍ୱତ୍ଥ ବଟ ପ୍ରଭୃତି ବୃକ୍ଷ-ରାଜିରେ ଅସଂଖ୍ୟ ପକ୍ଷୀ କଳଧ୍ୱନି କରୁଥା'ନ୍ତି । ତରୁଲତା ନାନାଦି ସୁଗନ୍ଧମୟ ପୁଷ୍ପରାଶିରେ ପୂର୍ଣ୍ଣ ହୋଇଥାଏ । ଏସବୁ ଦେଖି ଦେଖି ପ୍ରଫୁଲ୍ଲ ମନରେ ଠାକୁର ସବାରି ଭିତରେ ବସି ଚାଲିଥାଆନ୍ତି । ହଠାତ୍ ତାଙ୍କୁ ଦେଖାଗଲା—ତାଙ୍କ ନିଜ ଶରୀର ଭିତରୁ ଦୁଇଜଣ କିଶୋର ବୟସ୍କ ସୁନ୍ଦର ବାଳକ ସହସା ବହିର୍ଗତ ହୋଇ ପ୍ରାନ୍ତର ଭିତରକୁ ଚାଲିଗଲେ ଏବଂ କେତେବେଳେ ବନଲତାଗୁଡ଼ିକରୁ ଫୁଲ ତୋଳି, ପୁଣି କେତେବେଳେ ତାଙ୍କର ସବାରି ପାଖକୁ ଆସି, କେତେବେଳେ ହସ, କେତେବେଳେ ପରିହାସ, କେତେ-ବେଳେ ଅବା କିଛି କିଛି କଥାବାର୍ତ୍ତା କରି, ତାଙ୍କ ସବାରି ସାଙ୍ଗେ ସାଙ୍ଗେ ଚାଲିବାକୁ ଲାଗିଲେ । ବହୁ ସମୟ ପର୍ଯ୍ୟନ୍ତ ଏହି ଭାବରେ ଆନନ୍ଦରେ ବିହାର କରି ସେମାନେ ପୁନରାୟ ଠାକୁରଙ୍କର ଶରୀର ମଧ୍ୟରେ ଲୀନ ହୋଇଗଲେ ।

ଏହି ଅଲୌକିକ ଦର୍ଶନର ପ୍ରାୟ ଦେଢ଼ବର୍ଷ ପରେ ଜଣେ ବିଶିଷ୍ଟ ଯୋଗସାଧିକା ବ୍ରାହ୍ମଣୀ ଦକ୍ଷିଣେଶ୍ୱରରେ ଆସି ଉପସ୍ଥିତ ହୋଇଥିଲେ । ସେହି ଯୋଗିନୀ ବ୍ରାହ୍ମଣୀ ଦିନେ କଥା-ପ୍ରସଙ୍ଗରେ ଠାକୁରଙ୍କର ଏହି ଦର୍ଶନ କଥା ଶୁଣି କହିଲେ—"ବାବା ! ତୁମେ ଠିକ୍ ଦେଖିଛ । ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କର ଆବିର୍ଭାବ । ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଚୈତନ୍ୟ ଏଥର ଏକସଙ୍ଗେ ଏକାଧାରରେ ଆସି ତୁମ ଭିତରେ ଅବସ୍ଥାନ କରୁଛନ୍ତି । ସେଥିପାଇଁ ତୁମର ଏ ପ୍ରକାର ଦିବ୍ୟଦର୍ଶନ ହେଲା ।"

ଏପରି ବହୁ ଅଲୌକିକ ଦୃଷ୍ଟାନ୍ତ ଭିତରେ ନିଜ ବ୍ୟକ୍ତିତ୍ୱ ସମ୍ବନ୍ଧରେ ଯେଉଁ ଅଲୌକିକ ଆତ୍ମସମାନ ଠାକୁର ପାଇଥିଲେ—ସେଗୁଡ଼ିକ କାଳକ୍ରମେ ତାଙ୍କୁ ବୁଝାଇଦେଲା ଯେ—ପୂର୍ବ ପୂର୍ବ ଯୁଗମାନଙ୍କରେ ଧର୍ମସଂସ୍ଥାପନ ଉଦ୍ଦେଶ୍ୟରେ ଅଯୋଧ୍ୟା ଓ ଶ୍ରୀବୃନ୍ଦାବନରେ ଜାନକୀବଲ୍ଲଭ ଶ୍ରୀରାମଚନ୍ଦ୍ର ଓ ରାଧାବଲ୍ଲଭ ଶ୍ରୀକୃଷ୍ଣଙ୍କ ରୂପରେ ଯେ ଜନ୍ମଗ୍ରହଣ କରିଥିଲେ, ସେ ହିଁ ବର୍ତ୍ତମାନ ପୁନରାୟ ଭାରତ ଓ ଜଗତକୁ ନବୀନ ଧର୍ମାଦର୍ଶଦାନ ଲାଗି ନୂତନ ଶରୀର ପରିଗ୍ରହପୂର୍ବକ ଶ୍ରୀରାମକୃଷ୍ଣରୂପରେ ଅବତୀର୍ଣ୍ଣ ହୋଇଅଛନ୍ତି । ଠାକୁର ନିଜ ମୁଖରେ ବାରମ୍ବାର କହୁଛନ୍ତି, "ଯେ ରାମ ଓ କୃଷ୍ଣରୂପେ ଅବତୀର୍ଣ୍ଣ ହୋଇଥିଲେ, ସେ ଇଦାନିଂ (ନିଜର ଶରୀର ଦେଖାଇ) ଏହି ଖୋଳଟା ଭିତରେ ଆସିଅଛନ୍ତି—ରାଜା ଯେପରି କେବେ କେବେ ଛଦ୍ମବେଶରେ ନଗରଭ୍ରମଣ ଉଦ୍ଦେଶ୍ୟରେ ବାହାରିତ ହୁଅନ୍ତି, ସେହିପରି ଗୁପ୍ତ ଭାବରେ ସେ ଏଥର ପୃଥିବୀକୁ ଆଗମନ କରିଛନ୍ତି ।"

## ଅଷ୍ଟମ ଅଧ୍ୟାୟ

# ବିବାହ ଓ ରାଣୀ ରାସମଣିଙ୍କ ତିରୋଧାନ

ଏହି କେତେଦିନ ଧରି ଠାକୁର କାଳୀବାଡ଼ିରୁ ପୂଜାକାର୍ଯ୍ୟ ଛାଡ଼ି ଦେଇଛନ୍ତି । ଏହି ସମ୍ବାଦ ଯେତେବେଳେ ଯାଇ କାମାରପୁକୁର ଗାଁରେ ତାଙ୍କର ମାଆ ଓ ଭାଇଙ୍କ କାନରେ ପଡ଼ିଲା, ସେମାନେ ବିଶେଷ ଚିନ୍ତାନ୍ୱିତ ହୋଇପଡ଼ିଲେ । ଚନ୍ଦ୍ରାଦେବୀ ପରିଣତ ବୟସରେ ଗଦାଧରଙ୍କୁ ପୁତ୍ରରୂପେ ପାଇଥିଲେ । ତେଣୁ ସେ ଥିଲେ ତାଙ୍କର ଅତି ଆଦରର ସନ୍ତାନ । ଦୁଃଖରେ ଅଧୀର ହୋଇ ସେ ପୁଅକୁ ଘରକୁ ଫେରାଇ ଆଣିଲେ । ଗଦାଧର ଗର୍ଭଧାରିଣୀ ଜନନୀଙ୍କ ଡାକରାରେ ଘରକୁ ଫେରି ଆସିଲେ । କ୍ରମେ ଚନ୍ଦ୍ରାଦେବୀ ଲକ୍ଷ୍ୟ କଲେ—ତାଙ୍କର ସେହି ଚପଳ କିଶୋର ପୁତ୍ର ଗଦାଧର ଆଉ ସେହିଭଳି ଅବସ୍ଥାରେ ନାହିଁ । ସେ କିପରି ଅତ୍ୟନ୍ତ ଉଦାସୀନ, ଅତ୍ୟନ୍ତ କରୁଣ ହୋଇଉଠିଛି । କେବେ କେବେ ଅତ୍ୟନ୍ତ କାତର ହୋଇ ପାଗଳପରି 'ମା' ମା' ବୋଲି ବିଳାପ କରୁଛି । ଚନ୍ଦ୍ରାଦେବୀ ପୁଅର ଏହି ବିଲକ୍ଷଣ ଦେଖି ଅତ୍ୟନ୍ତ ବ୍ୟାକୁଳା ହୋଇ ଏହିସବୁ ପାଗଳାମୀର ଆଶୁ ପ୍ରତିକାର ଲାଗି ନାନା ଉପାୟ କଲେ । ସେତେବେଳେ ୧୮୫୮ ଖ୍ରୀଷ୍ଟାବ୍ଦର (ସନ୍ ୧୨୬୫ ସାଲ) ଆଶ୍ୱିନ କିମ୍ବା କାର୍ତ୍ତିକ ମାସ । ଠାକୁରଙ୍କର ବୟସ ବର୍ତ୍ତମାନ ତେଇଶି ବର୍ଷ ପୂରି ଆସୁଛି । କାମାରପୁକୁର ଗାଁର ପଶ୍ଚିମ ଆଡ଼ ଉତ୍ତରପୂର୍ବ ଦିଗରେ ସେହି 'ଭୂତିର ଖାଲ' ଓ 'ବୁଧୁଇ ମୋଡ଼ଲ' ନାମକ ଶ୍ମଶାନଦ୍ୱୟ ମଧ୍ୟରେ ଏବେ ଠାକୁରଙ୍କର ଦିନରାତି କଟୁଛି । ଠାକୁର ଏକାକୀ ସେହି ଶ୍ମଶାନ ଦୁଇଟିରେ କ'ଣ ସବୁ ପୂଜାପୂଜି ଧ୍ୟାନଧାରଣା କରୁଛନ୍ତି । କେବେକେବେ ମଶାଣୀଚଣ୍ଡୀ ଓ ଅନ୍ୟାନ୍ୟ ଉପଦେବଦେବୀଙ୍କ ନିକଟରେ ବଳି ମଧ୍ୟ ପ୍ରଦାନ କରୁଛନ୍ତି । କଥିତ ଅଛି—ଠାକୁର ସେତେବେଳେ ଯେଉଁସବୁ ଆହାର୍ଯ୍ୟପୂର୍ଣ୍ଣ ହାଣ୍ଡି ମଶାଣୀଚଣ୍ଡୀ ଓ ଅନ୍ୟାନ୍ୟ ଶ୍ମଶାନସ୍ଥିତ ଦେବଦେବୀଙ୍କୁ ଅର୍ପଣ କରୁଥିଲେ,

ସେସବୁ ବାଯୁବେଗରେ ଊର୍ଦ୍ଧ୍ୱକୁ ଉଠିଯାଇ ଶୂନ୍ୟରେ ଲୀନ ହୋଇ ଯାଉଥିଲା । ଜଗଦମ୍ବାଙ୍କ ଦର୍ଶନ ଲାଳସାରେ ସେ ଇତିପୂର୍ବେ ଯେଉଁ ବିଷମ ଅଭାବ ପ୍ରାଣରେ ଅନୁଭବ କରି ବ୍ୟାକୁଳ ହେଉଥିଲେ, ତାହା ଅବଶ୍ୟ ଏହି ସମୟରେ କେତେକ ଅପୂର୍ବ ଦର୍ଶନ ଓ ଅଲୌକିକ ଉପଲବ୍ଧି ଦ୍ୱାରା ଅନେକାଂଶରେ ପ୍ରଶମିତ ହୋଇଥିଲା । ଇତିମଧ୍ୟରେ ଠାକୁରଙ୍କର ମାଆ ଓ ଭାଇ ତାଙ୍କର ବିବାହ ଲାଗି ସ୍ଥିର କଲେ । ସେଥିପାଇଁ ଉପଯୁକ୍ତ ପାତ୍ରୀର ଖୋଜା ମଧ୍ୟ ଚାଲିଲା । ସେମାନେ ଭାବିଲେ ଯେ ବିବାହ କଲେ ଗଦାଧରଙ୍କର ଏହି ସାଂସାରିକ ଉଦାସୀନତା ଏବଂ ନିରନ୍ତର ଉନ୍ମନାଭାବ ନିଶ୍ଚୟ କଟି-ଯିବ । କାରଣ ସଦ୍‌ବଂଶୀୟା ସୁଶୀଳା ପତ୍ନୀର ପ୍ରେମବନ୍ଧନରେ ପଡ଼ିଲେ ତାଙ୍କର ମନ ଆଉ ଏଣେତେଣେ ସଞ୍ଚରିତ ନ ହୋଇ ସାଂସାରିକ ଅବସ୍ଥାର ଉନ୍ନତିସାଧନ ଦିଗରେ ଅଗ୍ରସର ହେବ ।

ଗଦାଧରଙ୍କୁ କିନ୍ତୁ ଏ ବିଷୟ ସିଧାସଳଖ କେହି ଜଣାଉ ନ ଥିଲେ— କାଳେ ସେ ଏହା ଶୁଣିଲାମାତ୍ରେ ପ୍ରସ୍ତାବଟିକୁ ମୂଳରୁ ପ୍ରତ୍ୟାଖ୍ୟାନ କରି-ଦେବେ ! କିନ୍ତୁ ଚତୁର ଗଦାଧରଙ୍କୁ ଏହା ଜାଣିବା ଲାଗି ବେଶୀ ସମୟ ଲାଗିଲା ନାହିଁ । ଅଥଚ, ଆଶ୍ଚର୍ଯ୍ୟର କଥା—ଏକଥା ଜାଣି ମଧ୍ୟ ସେ ଏଥିରେ କୌଣସି ଆପତ୍ତି ଉଠାଇଲେ ନାହିଁ; ବରଂ ଘରେ କୌଣସି ନୂଆ ଘଟଣା ଘଟିଲେ ପିଲାମାନେ ଯେପରି ଆନନ୍ଦରେ ମାତି ଉଠନ୍ତି, ସେ ସେହିଭଳି ଉତ୍‌ଫୁଲ୍ଲିତ ହୋଇ ଉଠିଲେ । ଉପଯୁକ୍ତ କନ୍ୟାଟିଏ ଲାଗି ଚାରିଆଡ଼େ ଖୋଜା ଚାଲିଲା—କିନ୍ତୁ ମନୋମତ ପାତ୍ରୀର ସନ୍ଧାନ ମିଳିଲା ନାହିଁ । ଏତେ ଅନୁସନ୍ଧାନ ପରେ ମଧ୍ୟ ଭଲ କନ୍ୟାଟିଏ ମିଳୁ ନାହିଁ ଦେଖି ଚନ୍ଦ୍ରାଦେବୀ ଓ ରାମେଶ୍ୱର ଖୁବ୍ ବିରସ ଏବଂ ଚିନ୍ତିତ ହେଲେ । ଦିନେ ଅଭାବିତ ଭାବରେ ଗଦାଧର ମାଆ ଓ ଭାଇଙ୍କୁ ତାଙ୍କ ପାଖରେ ବସାଇଲେ ଏବଂ କହିଲେ, "ଅନ୍ୟତ୍ର ଅନୁସନ୍ଧାନ ବୃଥା, ଜୟରାମବାଟୀ ଗ୍ରାମର ଶ୍ରୀରାମଚନ୍ଦ୍ର ମୁଖୋ-ପାଧ୍ୟାୟଙ୍କ ଘରେ ବିବାହ ଲାଗି ପାତ୍ରୀ କୁଟାବନ୍ଧା ହୋଇ ରକ୍ଷିତା ଅଛୁ ।"

ସେତେବେଳକୁ ସେହି କନ୍ୟାଟିର ବୟସ ପାଞ୍ଚ ପୂରି ଛଅ ଚାଲୁଥାଏ । ଏହିଭଳି ଅପ୍ରତ୍ୟାଶିତ ଭାବରେ ସନ୍ଧାନ ମିଳିବାରୁ ଚନ୍ଦ୍ରାଦେବୀ ସେହି

ସ୍ଥାନରେ ପୁଅର ବିବାହ ଦେବା ଲାଗି ସ୍ୱୀକୃତା ହେଲେ ଏବଂ অଳ୍ପ ଦିନ ମଧ୍ୟରେ ସବୁ ବିଷୟରେ କଥାବାର୍ତ୍ତା ସ୍ଥିର ହୋଇଗଲା ।

ତା'ପରେ ଶୁଭଦିନ ଶୁଭ ମୁହୂର୍ତ୍ତରେ ଶ୍ରୀଯୁକ୍ତ ରାମେଶ୍ୱର କାମାର-ପୁକୁରର ଦୁଇକୋଶ ପଶ୍ଚିମରେ ଅବସ୍ଥିତ ଜୟରାମବାଟି ଗ୍ରାମ ପର୍ଯ୍ୟନ୍ତ ଭାଇଙ୍କୁ ସାଙ୍ଗରେ ନେଇଗଲେ ଏବଂ ଯଥାରୀତିରେ ଶ୍ରୀଯୁକ୍ତ ରାମଚନ୍ଦ୍ର ମୁଖୋପାଧ୍ୟାୟଙ୍କର ଏକମାତ୍ର କନ୍ୟା ସହିତ ଠାକୁରଙ୍କର ଶୁଭପରିଣୟ କାର୍ଯ୍ୟ ସମ୍ପନ୍ନ ହୋଇଗଲା । ଏହି ବିବାହରେ ତିନିଶହ ଟଙ୍କା କନ୍ୟା-ପଣ ଦିଆ ହୋଇଥିଲା । ସେତେବେଳେ ୧୨୬୬ ସାଲର ବୈଶାଖ ମାସର ଶେଷଭାଗ ଏବଂ ଠାକୁର ଚବିଶି ବର୍ଷ ବୟସରେ ପଦାର୍ପଣ କରିଥାଆନ୍ତି ।

ଗଦାଧରଙ୍କୁ ବିବାହପାଶରେ ଆବଦ୍ଧ କରିଦେଇ ଚନ୍ଦ୍ରାଦେବୀ ବର୍ତ୍ତମାନ ଖୁବ୍ ନିଶ୍ଚିନ୍ତ ହେଲେ; କାରଣ ଉନ୍ମନା ପୁତ୍ର ଘରକୁ ଫେରିଲା—ସଦ୍‌ବଂଶୀୟା ପାତ୍ରୀଟିଏ ମଧ୍ୟ ମିଳିଗଲା । ତା' ସଙ୍ଗେ ସଙ୍ଗେ ଅର୍ଥର ଅନାଟନ ମଧ୍ୟ ଅଚିନ୍ତନୀୟ ଭାବେ ଘୁଞ୍ଚିଗଲା । ସରଳହୃଦୟା ଧର୍ମପରାୟଣା ଚନ୍ଦ୍ରାଦେବୀ ଯେ ବର୍ତ୍ତମାନ ବହୁ ପରିମାଣରେ ଖୁସୀ—ତାହା ସହଜରେ ବୁଝାଯାଏ । କିନ୍ତୁ ସମସ୍ତ ଆନନ୍ଦ ମଧ୍ୟରେ ଚନ୍ଦ୍ରାଦେବୀଙ୍କ ମନ ଭିତରେ ଗୋଟିଏ ବିଷୟ ନେଇ ଖୁବ୍ ଦୁଃଖର ସୃଷ୍ଟି ହୋଇଥିଲା । ତା' ହେଲା—ଗଦାଧରଙ୍କ ବିବାହ ଦିନ ଚନ୍ଦ୍ରାଦେବୀ ବୋହୂ ଲାଗି ଜମିଦାର ବନ୍ଧୁ ଲାହାବାବୁଙ୍କ ଘରୁ କିଛି ଅଳଙ୍କାର ମାଗି ଆଣିଥିଲେ । ବାହାର ଲୋକଙ୍କ ଆଗରେ ସମ୍ଭ୍ରମ ରକ୍ଷା କରିବା ଲାଗି ଓ ସମୁଦୀ ସମୁଦୁଣୀଙ୍କ ମନସ୍ତୁଷ୍ଟି ପାଇଁ ସେ ଏହି ଅଳଙ୍କାରତକ ମାଗିଯାଚି ଆଣିବାକୁ ବାଧ୍ୟ ହୋଇଥିଲେ । କିନ୍ତୁ ବିବାହ ପରେ ସେ ବର୍ତ୍ତମାନ ମହା ଅଡୁଆରେ ପଡ଼ିଗଲେ । ମାଗି ଆଣି-ଥିବା ଅଳଙ୍କାରତକ ବର୍ତ୍ତମାନ ପୁଣି ଫେରାଇ ଦେବାକୁ ପଡ଼ିବ । କିନ୍ତୁ ଯେଉଁ ହାତରେ ସେ ବୋହୂକୁ ଅଳଙ୍କାରତକ ପିନ୍ଧାଇ ଦେଇଥିଲେ, ବର୍ତ୍ତମାନ ସେହି ହାତରେ ବାଳିକାବଧୂର ସୁକୁମାର ଅଙ୍ଗରୁ ସେତକ ଓହ୍ଲାଇବାକୁ ତାଙ୍କର ମନ ବଳିଲା ନାହିଁ କି ସାହସ କୁଳାଇଲା ନାହିଁ । ସେ କଥା ଭାବିଲା ମାତ୍ରେ ତାଙ୍କ ଆଖିରେ ଲୁହ ଭରିଗଲା । ଅବଶ୍ୟ ଅନ୍ତରର କଥା ସେ ମୁହଁ ଖୋଲି କାହାକୁ କହୁନଥିଲେ । ମାତ୍ର ଗଦାଧରଙ୍କ ପକ୍ଷରେ

ଏତକ ବୁଝିବାକୁ ବେଶୀ ବେଳ ଲାଗିଲା ନାହିଁ । ସେ ଏ ସମ୍ବନ୍ଧରେ ମାଆଙ୍କୁ ବହୁତ ପ୍ରକାରେ ବୁଝାଇ ଶାନ୍ତ କଲେ । ଦିନେ ବାଳିକା ବଧୂଟି ଶାନ୍ତ ସରଳମନରେ ଶୋଇପଡ଼ିଥାଏ । ଗଦାଧର ଖୁବ୍ ସନ୍ତର୍ପଣରେ ଅଥଚ ବେଶ୍ ସାବଧାନତା ସହକାରେ ତା' ଅଙ୍ଗରୁ ଅଳଙ୍କାରତକ ଖୋଲି ବାହାର କରିଦେଲେ । ବୋହୂଟି ଆଦୌ ଜାଣିପାରିଲା ନାହିଁ । କିନ୍ତୁ ଯେତେ-ବେଳେ ନିଦ ଭାଙ୍ଗିଲା, ସେ ନିଜ ଅଙ୍ଗକୁ ଚାହିଁ କରୁଣ କଣ୍ଠରେ କହିଲା—"ମୋ ଦେହରୁ କିଏ ଅଳଙ୍କାରତକ କାଢ଼ିନେଲା ?" ଚନ୍ଦ୍ରାଦେବୀ ବୋହୂ ମୁହଁରୁ ଏତକ ଶୁଣି ସଜଳ ନୟନରେ ବୋହୂକୁ ସାନ୍ତ୍ୱନା ଦେଇ କହିଲେ, "ମା କିଛି ବ୍ୟସ୍ତ ହ'ନା ! ଗଦାଧର ତୋ' ପାଇଁ ଏହାଠାରୁ ଆହୁରି ସୁନ୍ଦର ଅଳଙ୍କାରସବୁ ଗଢ଼ାଇ ଆଣିବ ।

କିନ୍ତୁ ଏ କଥାର ଏଠାରେ ପରିସମାପ୍ତି ହେଲା ନାହିଁ । ସେଦିନ ଦୁର୍ଯୋଗକୁ କନ୍ୟାର କକେଇ ଝିଅଟିକୁ ଦେଖିବାକୁ ଆସି ପହଞ୍ଚିଲେ । ଏସବୁ କଥା ଶୁଣିଲା ପରେ ସେ ରାଗରେ ଅଗ୍ନିଶର୍ମା ହୋଇ ଝିଅଟିକୁ ସାଙ୍ଗରେ ଧରି ବାହାରିଗଲେ । ଚନ୍ଦ୍ରାଦେବୀ ଏଭଳି ଦୁଃଖ ଆଉ ଅପମାନରେ ଅତ୍ୟନ୍ତ ବ୍ୟସ୍ତ ହୋଇ ପଡ଼ିବାର ଦେଖି ଗଦାଧର ପରିହାସ ଛଳରେ ମାଆଙ୍କୁ କହିଲେ, "ମା ! ଏମାନେ ବର୍ତ୍ତମାନ ଯାହା କହିବାର କହନ୍ତୁ, ଯାହା କରିବାର କରନ୍ତୁ, ବିବାହ ତ ଆଉ ଫେରାଇ ନେଇ ପାରିବେ ନାହିଁ !"

ବିବାହ ପରେ ଠାକୁର କାମାରପୁକୁରରେ ପ୍ରାୟ ଏକବର୍ଷ ସାତମାସ ଏହି ଭାବରେ ଅତିବାହିତ କରିଥିଲେ । ୧୨୬୭ ସାଲର ମାର୍ଗଶୀର ମାସ । ବୋହୂଙ୍କର ବୟସ ହେଲାଣି ସାତ ବର୍ଷ । କୁଳର ପ୍ରଥାନୁସାରେ ଏହି ସମୟରେ ଜ୍ୱାଇଁ କିଛିଦିନ ପାଇଁ ଶ୍ୱଶୁରଘରକୁ ଯାଇ କନ୍ୟାକୁ ଧରି ପୁଣି ନିଜ ଘରକୁ ଫେରି ଆସିବା କଥା । ଗଦାଧର ତାହା କରିଥିଲେ; ମାତ୍ର ଏହାର ଅଳ୍ପଦିନ ପରେ ସେ ପୁଣି କାମାରପୁକୁର ଛାଡ଼ି କଲିକତା ବାହାରିଲେ; କିନ୍ତୁ ଗଦାଧର ଘର ଛାଡ଼ନ୍ତୁ ବୋଲି ଭାଇ ଆଉ ମା' ଚାହୁଁ ନ ଥିଲେ । ମାତ୍ର ସଂସାରର ଅଭାବ ଅନାଟନ ପୁଣି ଘନେଇ ଆସିଥିଲା ।

ଗଦାଧରଙ୍କୁ ସେ କଥା ଅଜଣା ନ ଥିଲା । ୧୮୬୧ ଖ୍ରୀଷ୍ଟାବ୍ଦରେ କୌଣସି ସମୟରେ ସେ କାହାର କଥା ନ ଶୁଣି ପୁଣି ଥରେ ଦକ୍ଷିଣେଶ୍ୱରକୁ ଫେରି ଆସିଲେ ଏବଂ ପୂର୍ବବତ୍ ଜଗଦମ୍ବାଙ୍କ ସେବାପୂଜା କାର୍ଯ୍ୟରେ ନିଜକୁ ନିୟୋଜିତ କଲେ ।

ଦକ୍ଷିଣେଶ୍ୱରକୁ ଫେରି ଠାକୁରଙ୍କ ମନ ଏହି ସେବାପୂଜାରେ ଖୁବ୍ ତନ୍ମୟ ହୋଇଉଠିଲା । ସେ ମାଆ, ସ୍ତ୍ରୀ, ଭାଇ, ସଂସାର ଓ ଅଭାବ ଅନାଟନ ସମ୍ପୂର୍ଣ୍ଣଭାବେ ଭୁଲିଗଲେ । ତାଙ୍କର ବର୍ତ୍ତମାନ ଏକମାତ୍ର ଚିନ୍ତା ହେଲା—ସେ କିପରି ଜଗନ୍ମାତାଙ୍କୁ ସବୁବେଳେ ସମସ୍ତଙ୍କ ଭିତରେ ପ୍ରତ୍ୟକ୍ଷ କରିବେ । ଦିନରାତି ଅନବରତ ସ୍ମରଣ, ମନନ, ଜପ ଆଉ ଧ୍ୟାନ କରିକରି ତାଙ୍କର ବକ୍ଷ ସର୍ବଦା ଆରକ୍ତିମ ଭାବ ଧାରଣ କଲା । ପରବର୍ତ୍ତୀ କାଳରେ ଠାକୁରଙ୍କ ନିଜ ମୁହଁରୁ ଏହି ସମୟରେ ତାଙ୍କର ଯେଉଁସବୁ ଦିବ୍ୟୋନ୍ମାଦ ଅବସ୍ଥା ଘଟିଥିଲା ତା'ର ବର୍ଣ୍ଣନା ଶୁଣାଯାଇଛି । ସେ କହୁଥିଲେ, "ଆଧ୍ୟାତ୍ମିକ ଭାବର ପ୍ରାବଲ୍ୟରେ ସାଧାରଣ ଜୀବର ଶରୀର ଓ ମନରେ ଏଭଳି ହେବା ଦୂରେ ଥାଉ—ଏହାର ଏକ ଚତୁର୍ଥାଂଶ ବିକାର ଉପସ୍ଥିତ ହେଲେ ଶରୀର-ତ୍ୟାଗ ହୁଏ । ଦିବାରାତ୍ରିର ଅଧିକାଂଶ ଭାଗ ଜଗନ୍ମାତାଙ୍କର କୌଣସି ନା କୌଣସି ରୂପର ଦର୍ଶନ ପାଇ ଭୁଲି ଯାଉଥାଏ—ତେଣୁ ରକ୍ଷା ମିଳୁଥାଏ—ତା' ନ ହେଲେ ( ନିଜ ଶରୀର ଦେଖାଇ ) ଏହି ଖୋଳଟା ରହିବା ଅସମ୍ଭବ ହୋଇଥାଆନ୍ତା । ବର୍ତ୍ତମାନଠାରୁ ଆରମ୍ଭ କରି ଦୀର୍ଘ ଛଅବର୍ଷ କାଳ ଟିକେମାତ୍ର ନିଦ୍ରା ହୋଇନାହିଁ । ଚକ୍ଷୁ ସମ୍ପୂର୍ଣ୍ଣ ପଲକଶୂନ୍ୟ ହୋଇ-ଯାଇଥିଲା । ସମୟ ସମୟରେ ଚେଷ୍ଟା କରି ମଧ୍ୟ ପଲକ ପକାଇ ପାରିନାହିଁ ।···କାନ୍ଦି କାନ୍ଦି ମା'ଙ୍କୁ କହେ—'ମା ! ଯାହା ହେବାର ହେଉ, ଶରୀର ପଡିକେ ଯାଉ, ତୁ କିନ୍ତୁ ମତେ ଛାଡନା—ମତେ ଦେଖା ଦେ—କୃପା କର ।' ଏହି ଭାବରେ କାନ୍ଦି କାନ୍ଦି ମନ ପୁନଶ୍ଚ ଅଦ୍ଭୁତ ଉତ୍ସାହରେ ଉତ୍ତେଜିତ ହୋଇଉଠୁଥିଲା । ଶରୀରଟାକୁ ଅତି ତୁଚ୍ଛ ହେୟ ବୋଲି ମନେ ହେଉଥିଲା ଏବଂ ମା'ଙ୍କର ଦର୍ଶନ ଓ ଅଭୟ-ବାଣୀ ଶୁଣି ଆଶ୍ୱସ୍ତ ହେଉଥିଲି ।"

ଏହି ସମୟରେ ଦକ୍ଷିଣେଶ୍ୱର ମନ୍ଦିର ସମ୍ବନ୍ଧରେ ଏକ ଆକସ୍ମିକ ପରିବର୍ତ୍ତନ ଘଟିଲା । ଇଂରାଜୀ ୧୮୬୧ ଖ୍ରୀଷ୍ଟାବ୍ଦର ପ୍ରାରମ୍ଭରେ ରାଣୀ ରାସମଣି ହଠାତ୍ ଗ୍ରହଣୀ ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ଅଳ୍ପକାଳ ମଧ୍ୟରେ ରୋଗ ସାଙ୍ଘାତିକ ହୋଇଉଠିଲା । ଶରୀରତ୍ୟାଗର କିଛିଦିନ ପୂର୍ବରୁ ରାଣୀ କାଳୀଘାଟରେ ଆଦିଗଙ୍ଗାତୀରସ୍ଥ କୋଠାରେ ଆସି ରହିଲେ । ଦେହରକ୍ଷାର ଅବ୍ୟବହିତ ପୂର୍ବେ ତାଙ୍କୁ ଗଙ୍ଗାଗର୍ଭକୁ ଅଣାଗଲା । ରୀତିନୀତି ପ୍ରଥାନୁଯାୟୀ ତାଙ୍କର ଶଯ୍ୟାପାର୍ଶ୍ୱେ ବହୁପ୍ରକାର ଆଲୋକସଜ୍ଜା ହୋଇଥିଲା । ମାତ୍ର ସେହିସବୁ ଆଡ଼ମ୍ବରପୂର୍ଣ୍ଣ ଆଲୋକସଜ୍ଜା ଦେଖି ରାଣୀ ହଠାତ୍ କହି-ଉଠିଲେ, "କାଢ଼ କାଢ଼, ଏ ଆଲୁଅସବୁ ମୋ ପାଖରୁ ନେଇଯାଅ । ଏସବୁ ରୋଷଣୀ ମତେ ଭଲ ଲାଗୁ ନାହିଁ । ବର୍ତ୍ତମାନ ମୋର ମା' ଜଗନ୍ମାତା ଆସୁଛନ୍ତି । ତାଙ୍କ ଶ୍ରୀଅଙ୍ଗର ପ୍ରଭାରେ ଚାରିଦିଗ ଆଲୋକମୟ ହୋଇ-ଉଠୁଛି ।" ଏହିତକ କଥା କହୁ କହୁ ପୁଣ୍ୟବତୀ ରାଣୀ ଶାନ୍ତଭାବରେ ମାତୃକ୍ରୋଡ଼ରେ ମହାସମାଧିରେ ଶୟନ କଲେ ।

ପୂର୍ବରୁ କୁହାଯାଇଛି ଯେ ରାଣୀଙ୍କର ସାନ ଜ୍ୱାଇଁ ମଥୁରାନାଥ ବିଶ୍ୱାସ ବିଷୟ ସମ୍ପତ୍ତି ସଂକ୍ରାନ୍ତ ସବୁପ୍ରକାର କାର୍ଯ୍ୟ ପରିଚାଳନାରେ ତାଙ୍କର ଦକ୍ଷିଣହସ୍ତସ୍ୱରୂପ ଥିଲେ । ସୁତରାଂ ରାଣୀଙ୍କ ମୃତ୍ୟୁପରେ ଦେବ-ସେବା ସଂକ୍ରାନ୍ତ ସମସ୍ତ କାର୍ଯ୍ୟ ପୂର୍ବବତ୍ ସେ ପରିଚାଳନା କରିବାକୁ ଲାଗିଲେ । ଏହି ସମୟଠାରୁ ଦୀର୍ଘ ଏଗାରବର୍ଷ କାଳ ମଥୁରାନାଥ ଠାକୁରଙ୍କ ସେବାରେ ନିଜକୁ ସମ୍ପୂର୍ଣ୍ଣଭାବରେ ନିଯୁକ୍ତ କରିବାକୁ ସକ୍ଷମ ହୋଇଥିଲେ । ଏହା କ'ଣ ତାଙ୍କ ପକ୍ଷରେ ପରମ ସୌଭାଗ୍ୟର କଥା ନୁହେଁ !

## ନବମ ଅଧ୍ୟାୟ

# ଭୈରବୀ ବ୍ରାହ୍ମଣୀ ସମାଗମ

ରାଣୀ ରାସମଣିଙ୍କ ମୃତ୍ୟୁର ଅଳ୍ପ କିଛିଦିନ ପରେ ଠାକୁରଙ୍କ ଜୀବନରେ ଆଉ ଗୋଟିଏ ବିଶେଷ ଘଟନା ଉପସ୍ଥିତ ହେଲା । ଦକ୍ଷିଣେଶ୍ୱର କାଳୀ-ବାଡ଼ିର ପଶ୍ଚିମ ପଟେ ଗଙ୍ଗାକୂଳରେ ସେହି ସମୟରେ ଗୋଟିଏ ବିଚିତ୍ର ପୁଷ୍ପୋଦ୍ୟାନ ଥିଲା । ଠାକୁର ସେତେବେଳେ ପ୍ରତିଦିନ ଏହି ଉଦ୍ୟାନରେ ଫୁଲ ତୋଳୁଥିଲେ । ଏହି ଫୁଲରେ ମାଳା ରଚନା କରି ଶ୍ରୀଶ୍ରୀଜଗଦମ୍ବାଙ୍କୁ ନିଜ ହସ୍ତରେ ସଜାଉଥିଲେ । ଏହି ଉଦ୍ୟାନର ମଧ୍ୟଭାଗରେ ଗଙ୍ଗାନଦୀ ଭିତରୁ ମନ୍ଦିରକୁ ଉଠିବାଲାଗି ସୁନ୍ଦରଶୋଭିତ ବିସ୍ତୃତ ସୋପାନାବଳୀ ଏବଂ ଉତ୍ତରଭାଗରେ ମହିଳାମାନଙ୍କର ବ୍ୟବହାର ନିମିତ୍ତ ଗୋଟିଏ ବନ୍ଧାଘାଟ ଓ ନହବତଖାନା ସେତେବେଳେ ନିର୍ମିତ ହୋଇଥିଲା । ସେଗୁଡ଼ିକ ଏବେ ମଧ୍ୟ ସେହିପରି ରହିଛି । ଦିନେ ପ୍ରଭାତ ସମୟରେ ଠାକୁର ସେହି ଉଦ୍ୟାନରୁ ଫୁଲ ତୋଳୁଥାନ୍ତି, ଏହି ସମୟରେ ଗୋଟିଏ ନୌକା ଗଙ୍ଗା ଭିତରୁ ଆସି ଶେଷୋକ୍ତ ଘାଟରେ ଲାଗିଲା ଏବଂ ତା' ଭିତରୁ ଗୈରିକବସ୍ତ୍ର-ପରିହିତା ଆଲୁଳାୟିତ-ଦୀର୍ଘକେଶା ଭୈରବୀ ବେଶଧାରିଣୀ ଜଣେ ସୁନ୍ଦରୀ ରମଣୀ ଅବତରଣ କରି ଦକ୍ଷିଣେଶ୍ୱର ଘାଟର ସୁନ୍ଦର ଆଡ଼କୁ ଅଗ୍ରସର ହେଲେ ।

ଫୁଲ ତୋଳୁଥିବା ସମୟରେ ଠାକୁର ଏହି ଭୈରବୀଙ୍କୁ ଦେଖି-ଥିଲେ । ଫୁଲ ତୋଳିସାରି ସେ ଆପଣା କୋଠରିକୁ ଫେରି ଆସି ଭଣଜା ହୃଦୟଙ୍କୁ କହିଲେ, "ଯା, ସେହି ଭୈରବୀଙ୍କୁ ଏଠାକୁ ଡାକି ଆଣିବୁ ।" ମାମୁଁଙ୍କ କଥା ଭାଙ୍ଗିବା ସହଜ ନୁହେଁ । ତେଣୁ ହୃଦୟ ସୁନ୍ଦରୀ ନିକଟକୁ ଯାଇ ସେହି ଆଗନ୍ତୁକାଙ୍କୁ ସମ୍ବୋଧନ କରି କହିଲେ, "ଆପଣଙ୍କୁ ମୋର ଈଶ୍ୱରଭକ୍ତ ମାମୁଁ ଡକାଇ ପଠାଇଛନ୍ତି—ସେ ଆପଣଙ୍କ ଦର୍ଶନ କରିବାକୁ

ଗୃହାନ୍ତ ।'' ଏହି କଥା ଶୁଣି ଭୈରବୀ* କୌଣସି ପ୍ରଶ୍ନ ନ କରି ହୃଦୟଙ୍କ ସହିତ ଠାକୁରଙ୍କ ପାଖକୁ ଆସିଲେ ଏବଂ ଠାକୁରଙ୍କୁ ଦେଖିବାମାତ୍ରେ ଆନନ୍ଦ ଓ ବିସ୍ମୟରେ ଅଭିଭୂତା ହୋଇଉଠିଲେ । ସଜଳନୟନରେ ଭୈରବୀ କହିଲେ, "ବାବା ! ତୁମେ ଏଠାରେ ରହିଛ ? ତୁମେ ଗଙ୍ଗାକୂଳରେ କେଉଁଠାରେ ରହିଛ ଜାଣି ମୁଁ ତୁମକୁ ଖୋଜି ବୁଲୁଥିଲି । ମୋର ଭାଗ୍ୟ, ଏତେ ଦିନେ ତୁମର ଦର୍ଶନ ପାଇଲି ।'' ଠାକୁର ପଚାରିଲେ, "ମୋ କଥା କିପରି ତୁମେ ଜାଣିଲ ମା ?'' ଭୈରବୀ କହିଲେ, "ତୁମ ଭଳି ତିନିଜଣଙ୍କ ସଙ୍ଗେ ଦେଖା କରିବାକୁ ହେବ ବୋଲି ମୁଁ ଶ୍ରୀଶ୍ରୀଜଗଦମ୍ବାଙ୍କ କୃପାରୁ ପୂର୍ବରୁ ଜାଣିଛି । ଦୁଇଜଣଙ୍କର ଦର୍ଶନ** ପାଇଛି ପୂର୍ବବଙ୍ଗରେ ଆଉ ଆଜି ଏଠାରେ ତୁମର ଦର୍ଶନ ପାଇଲି ।''

ଶ୍ରୀରାମକୃଷ୍ଣ ଅତ୍ୟନ୍ତ ସରଳଭାବରେ ବ୍ରାହ୍ମଣୀଙ୍କ ନିକଟରେ ବସି ବାଳକ ଭଳି ତାଙ୍କ ଆଗରେ ଗପିଚାଲିଲେ—କିପରି ଅଲୌକିକ ଦର୍ଶନ ସବୁ ତାଙ୍କର ହୋଇଛି—କିପରି ଈଶ୍ୱରଙ୍କ ପ୍ରସଙ୍ଗ ପଡ଼ୁପଡ଼ୁ ବା ଭାବୁଭାବୁ ତାଙ୍କର ବାହ୍ୟଜ୍ଞାନ ଲୋପ ପାଇଯାଉଛି—ଗାତ୍ରଦାହ ଏବଂ ନିଦ୍ରାହୀନତା ଭୋଗିବାକୁ ପଡ଼ୁଛି—କିପରି ଏଣିକି ଏଣିକି ତାଙ୍କର ଶରୀରରେ

* ଏହି ଭୈରବୀଙ୍କ ନାମ ଥିଲା ଯୋଗେଶ୍ୱରୀ । ଯଶୋହର ଜିଲ୍ଲା ଅନ୍ତର୍ଗତ କୌଣସି ଗୋଟିଏ ବ୍ରାହ୍ମଣ ପରିବାରରେ ତାଙ୍କର ଜନ୍ମ । ଈଶ୍ୱରଙ୍କୁ ଦର୍ଶନ କରିବା ଲାଗି ପିଲାଟି ଦିନରୁ ତାଙ୍କର ପ୍ରବଳ ବ୍ୟାକୁଳତା ଜନ୍ମିବାରୁ ସେ ସଂସାର ପ୍ରତି ନିରାସକ୍ତା ହୋଇ ଉଠିଥିଲେ । ତେଣୁ ଯୌବନରେ ଯୋଗିନୀ ସାଜି ତନ୍ତ୍ରସାଧନାରେ ନିମଗ୍ନା ହୋଇଥିଲେ ଏବଂ ଖୁବ୍ ଶୀଘ୍ର ସିଦ୍ଧିଲାଭ କରି ଶ୍ରୀଶ୍ରୀଜଗନ୍ମାତାଙ୍କ ଦ୍ୱାରା ଆଦିଷ୍ଟା ହୋଇ ଠାକୁରଙ୍କ ସନ୍ଧାନରେ ଏଠାରେ ଆସି ଉପସ୍ଥିତ ହୋଇଥିଲେ ।

** ସେ ଦୁହିଁଙ୍କ ନାମ ଚନ୍ଦ୍ର ଓ ଗିରିଜା । ନିବାସ ବରିଶାଲ ଜିଲ୍ଲା । ଉଭୟେ ଥିଲେ ଉଚ୍ଚଦରର ସାଧକ । ଏହି ଦୁଇ ବ୍ୟକ୍ତିଙ୍କୁ ପରେ ଦକ୍ଷିଣେଶ୍ୱରକୁ ଡକାଇ ବ୍ରାହ୍ମଣୀ ଠାକୁରଙ୍କ ସହିତ ଦେଖା କରାଇ ଦେଇଥିଲେ ।

ନାନାବିଧ ସାତ୍ତ୍ୱିକ ବିକାରସବୁ ବୃଦ୍ଧିପାଇ ଚାଲିଛି—ଏପରି କେତେ କଥା ସେ, ମାଆ ଆଗରେ ଶ୍ରେଷ୍ଠ ପୁଅ ଗପିଲା ଭଳି, ଗପିଚାଲିଲେ । ତା'ପରେ ସେ ଖୁବ୍ ଉତ୍କଣ୍ଠାର ସହିତ ତାଙ୍କୁ ପଚାରିଲେ, "ମୋର ଏପରି ସବୁ କାହିଁକି ହୁଏ ? ମୁଁ କ'ଣ ପ୍ରକୃତରେ ପାଗଳ ହୋଇଗଲି ? ଜଗଦମ୍ବାଙ୍କୁ ମନଦେଇ ପ୍ରାଣଦେଇ ଡାକିବାଦ୍ୱାରା ସତରେ କ'ଣ ମୋର କଠିନ ବ୍ୟାଧି ହୋଇଗଲା ?" ବାଳକସ୍ୱଭାବ ଠାକୁରଙ୍କ ମୁହଁରୁ ଏହିସବୁ କଥା ଶୁଣୁ-ଶୁଣୁ ଭୈରବୀ ଜନନୀ ସଦୃଶ କେତେବେଳେ ଉତ୍ତେଜିତା ହୋଇ-ପଡ଼ୁଥାଆନ୍ତି ତ କେତେବେଳେ ଉଲ୍ଲସିତା ହୋଇଉଠୁଥାଆନ୍ତି । ପୁଣି କେତେବେଳେ କରୁଣାର୍ଦ୍ର-ହୃଦୟା ହୋଇ ତାଙ୍କୁ ସାନ୍ତ୍ୱନା ଦେବା ଲାଗି ବାରମ୍ବାର କହୁଥା'ନ୍ତି, "ତୁମକୁ ବାବା କିଏ ପାଗଳ କହିବ ? ତୁମର ଯେ ମହାଭାବ ହୋଇଛି । ଏହି ପ୍ରକାର ଅବସ୍ଥା ହୋଇଥିଲା ଶ୍ରୀମତୀ ରାଧା-ରାଣୀଙ୍କର । ଏହିସବୁ ଭାବ ହୋଇଥିଲା ଶ୍ରୀଚୈତନ୍ୟ ମହାପ୍ରଭୁଙ୍କର । ଏ କଥା ଭକ୍ତିଶାସ୍ତ୍ରରେ ଉଲ୍ଲେଖ ଅଛି । ମୋ ପାଖରେ ଯେଉଁସବୁ ପୋଥି ଅଛି, ସେଥିରୁ ମୁଁ ପଢ଼ି ଦେଖାଇ ଦେବି ଯେ ଈଶ୍ୱରଙ୍କୁ ଯେଉଁମାନେ ଏକମନରେ ଡାକିଛନ୍ତି ବା ଡାକନ୍ତି, ସେମାନଙ୍କର ସମସ୍ତଙ୍କର ଏହିଭଳି ଅବସ୍ଥା ସବୁ ହୋଇଛି ଏବଂ ହେବ ।"

ଏଣେ ଅଜ୍ଞାତକୁଳଶୀଳା ଅପରିଚିତା ଏହି ଭୈରବୀ ବ୍ରାହ୍ମଣୀ ସହିତ ମାମୁଁ ଏପରି ପରମାତ୍ମୀୟ ଭଳି ବାକ୍ୟାଳାପ କରୁଛନ୍ତି ଦେଖି ହୃଦୟର ମଧ୍ୟ ବିସ୍ମୟର ସୀମା ରହିଲା ନାହିଁ ।

ଠାକୁରଙ୍କ ପ୍ରତି ଏହି ସନ୍ନ୍ୟାସିନୀଙ୍କର କ୍ରମେ ଅପତ୍ୟଭାବ ଜାଗି ଉଠିଲା । ତାଙ୍କର ହୃଦୟ ମୁଗ୍ଧ ହୋଇଗଲା । ସ୍ନେହବଶରେ ସେ ଦକ୍ଷିଣେଶ୍ୱରରେ କିଛିଦିନ ରହିଗଲେ । ପଞ୍ଚବଟୀରେ ଦୁହିଁଙ୍କ ଭିତରେ କିଛିଦିନ ଧରି ଦିବ୍ୟାନନ୍ଦର ପ୍ରବାହ ଛୁଟିଲା । ଛଅ ସାତଦିନ ଏପରି କଟି-ଗଲାପରେ କାଳୀବାଡ଼ିର ଉତ୍ତରପଟେ ଗଙ୍ଗାକୂଳରେ ଦକ୍ଷିଣେଶ୍ୱର ଗ୍ରାମର ଦେବମଣ୍ଡଳ ଘାଟରେ ଆସି ବ୍ରାହ୍ମଣୀ ବାସ କରିବାକୁ ଲାଗିଲେ ଏବଂ ପ୍ରତିଦିନ କିଛି ସମୟ ପାଇଁ କାଳୀବାଡ଼ି ଆସି ଠାକୁରଙ୍କ ସଙ୍ଗେ ବିବିଧ

ବିଷୟରେ ଆଳାପ କରି ସମୟ କଟାଇଲେ । ଠାକୁରଙ୍କଠାରୁ ସବୁ କଥା ଶୁଣି ବ୍ରାହ୍ମଣୀଙ୍କର ଧାରଣା ଦୃଢ଼ୀଭୂତ ହୋଇଥିଲା ଯେ ଏହିସବୁ ଅଲୌକିକ ଦର୍ଶନ ଓ ଅଲୌକିକ ଅବସ୍ଥା ଠାକୁରଙ୍କର ଅସାଧାରଣ ଈଶ୍ୱର-ପ୍ରେମର ଲକ୍ଷଣ । ତା'ପରେ ଯେତେବେଳେ ଈଶ୍ୱରଙ୍କ କଥାରେ ତାଙ୍କର ବାହ୍ୟ ଚେତନା ଲୋପ ପାଇ ବାରମ୍ବାର ସମାଧି ଅବସ୍ଥା ଆସିବାର ବ୍ରାହ୍ମଣୀ ଦେଖିଲେ ଓ ନାମସଙ୍କୀର୍ତ୍ତନରେ ତାଙ୍କର ପରମାନନ୍ଦ ଅବସ୍ଥା ଲକ୍ଷ୍ୟ କଲେ —ସେତେବେଳେ ତାଙ୍କ ମନରେ ଆଉ ସନ୍ଦେହ ରହିଲା ନାହିଁ ଯେ ଏ ଜଣେ ଅସାଧାରଣ ଦେବ-ମାନବ, କେବଳ ଜଣେ ସାମାନ୍ୟ ସାଧକ ନୁହନ୍ତି । ତା'ଛଡ଼ା ଚୈତନ୍ୟଚରିତାମୃତ ଓ ଭାଗବତ ଆଦି ଗ୍ରନ୍ଥ ପଢ଼ି ବ୍ରାହ୍ମଣୀ ଶ୍ରୀଚୈତନ୍ୟ ଓ ନିତ୍ୟାନନ୍ଦଙ୍କ ସମ୍ବନ୍ଧରେ ଯେଉଁସବୁ ତଥ୍ୟ ଜାଣି-ଥିଲେ, ସେଥିସହ ଠାକୁରଙ୍କର ଉପସ୍ଥିତ ଆଗ୍ରହ ବ୍ୟବହାର ଓ ଅଲୌକିକ ପ୍ରତ୍ୟକ୍ଷାଦି ମିଳାଇ ସେ ବହୁ ସୌସାଦୃଶ୍ୟ ମଧ୍ୟ ଲକ୍ଷ୍ୟ କରିପାରିଲେ । ସେ ଆହୁରି ମଧ୍ୟ ଲକ୍ଷ୍ୟ କଲେ ଯେ ଶ୍ରୀଚୈତନ୍ୟ ଯେପରି ଭାବାବେଶରେ ଅପରକୁ ସ୍ପର୍ଶ କଲାମାତ୍ରେ ତା' ଭିତରେ ଧର୍ମଭାବ ଉଦ୍ଦୀପିତ ହୋଇ-ଯାଉଥିଲା, ଠାକୁର ମଧ୍ୟ ସେହି ଅଦ୍‌ଭୁତ ଭକ୍ତି-ଉଦ୍ଦୀପକ-ଶକ୍ତିର ଅଧିକାରୀ । ଏହା ପୂର୍ବରୁ ଠାକୁର ଥରେ ଶିହଡ଼ ଗ୍ରାମକୁ ଯିବା ସମୟରେ ବାଟରେ ତାଙ୍କ ଦେହାଭ୍ୟନ୍ତରରୁ ଦୁଇଜଣ କିଶୋର ବହିର୍ଗତ ହେବାର ଉପଲବ୍‌ଧି ହୋଇଥିଲା— ଏ ଅପୂର୍ବ କଥା ଶୁଣି ଭୈରବୀ ବ୍ରାହ୍ମଣୀଙ୍କ ମନରେ ଠାକୁରଙ୍କ ପ୍ରତି ମୀମାଂସା ଦୃଢ଼ୀଭୂତ ହୋଇଗଲା ଏବଂ ସେ କହିଲେ, "ଏଥର ନିତ୍ୟାନନ୍ଦଙ୍କ ଖୋଳରେ ଚୈତନ୍ୟଙ୍କର ଆବିର୍ଭାବ ହୋଇଛି ।"

ଦିନେ ବ୍ରାହ୍ମଣୀ ମଥୁରନାଥଙ୍କୁ କହିଲେ, "ଆପଣ ଭଲ ଭଲ ଶାସ୍ତ୍ରଜ୍ଞ ବ୍ରାହ୍ମଣମାନଙ୍କୁ ସମବେତ କରନ୍ତୁ । ମୁଁ ସେମାନଙ୍କ ଆଗରେ ମୋ କଥା ପ୍ରମାଣିତ କରିବି ।" ଠାକୁର ମଧ୍ୟ ପିଲାଟିଏ ଭଳି ମଥୁରବାବୁଙ୍କ ପାଖରେ ଅଳି କଲେ, "ଭଲ ଭଲ ପଣ୍ଡିତ ଆଣି ବ୍ରାହ୍ମଣୀ ଯାହା କହୁଛନ୍ତି, ତାହା ପରୀକ୍ଷା କରିବାକୁ ହେବ ।"

ଏ କଥା ଶୁଣି ମଥୁରାନାଥ ମଧ୍ୟ କେତେକାଂଶରେ କୌତୂହଳବଶତଃ ଓ କେତେକାଂଶରେ ଠାକୁରଙ୍କ ପ୍ରତି ପ୍ରେମପ୍ରୀତିବଶତଃ ପଣ୍ଡିତସଭା ଆହ୍ୱାନ କରିବାକୁ ସମ୍ମତ ହେଲେ । କଲିକତାର ପଣ୍ଡିତମହଲରେ ସେତେବେଳେ ବୈଷ୍ଣବଚରଣଙ୍କର ଖୁବ୍ ପ୍ରତିପତ୍ତି ଥିଲା । କିଛିଦିନ ପରେ ବୈଷ୍ଣବଚରଣ ନିମନ୍ତ୍ରିତ ହୋଇ ଦକ୍ଷିଣେଶ୍ୱରରେ ଆସି ଉପସ୍ଥିତ ହେଲେ । ତାଙ୍କ ସଙ୍ଗେ କେତେଜଣ ଭକ୍ତସାଧକ ଓ ପଣ୍ଡିତ ମଧ୍ୟ ଆସିଥିଲେ । ମଥୁରବାବୁଙ୍କ ଦଳବଳ ସହ ଏହି ବିଦୁଷୀ ଭୈରବୀ ବ୍ରାହ୍ମଣୀ ମିଳିତ ହୋଇ କଲିକତାହୁତ ପଣ୍ଡିତମାନଙ୍କ ସଙ୍ଗେ ବହୁ ସମୟ ଆଲୋଚନା କଲେ । ବିଜ୍ଞ ପଣ୍ଡିତମାନଙ୍କ ସଭାରେ ଭୈରବୀ ବ୍ରାହ୍ମଣୀ ମାଆ ଯେପରି ନିଜ ସନ୍ତାନକୁ ରକ୍ଷା କରିବା ଲାଗି ସାରଦର୍ପରେ ଦଣ୍ଡାୟମାନା ହୁଏ, ସେହିପରି କୌଣସି ଦୈବୀବଳରେ ବଳଶାଳିନୀ ହୋଇ ଠାକୁରଙ୍କ ପକ୍ଷ ସମର୍ଥନ କରି ବହୁ ଶାସ୍ତ୍ରର ପ୍ରମାଣ ପ୍ରଦର୍ଶନ କଲେ । ସେ ଉଦାହରଣ ଦେଇ କହିଲେ ଯେ ପୂର୍ବବର୍ତ୍ତୀ ପ୍ରସିଦ୍ଧ ଆଚାର୍ଯ୍ୟ ଓ ଭକ୍ତଶିରୋମଣିଙ୍କ ଜୀବନରେ ଯେଉଁସବୁ ଅନୁଭବ ଓ ଉପଲବ୍‌ଧିମାନ ହେବାର ବର୍ଣ୍ଣନା ବିଭିନ୍ନ ଭକ୍ତିଶାସ୍ତ୍ରମାନଙ୍କରେ ଉଲ୍ଲେଖ ରହିଛି, ସେହି ସମସ୍ତ ସହିତ ଠାକୁରଙ୍କର ଭାବ ଅନୁଭବ ଓ ଲକ୍ଷଣାଦି ସବୁ ମିଳିଯାଉଛି । ବୈଷ୍ଣବଚରଣ ମଧ୍ୟ ନିଜର ସାଧନପ୍ରସୂତ ସୂକ୍ଷ୍ମଦୃଷ୍ଟି ସହାୟତାରେ ଠାକୁରଙ୍କୁ ଦେଖିବା ମାତ୍ରେ ସେ ଯେ ଜଣେ ଅସାଧାରଣ ମହାପୁରୁଷ ଏହା ଚିହ୍ନି ପାରିଥିଲେ । ସୁତରାଂ ସେ ଠାକୁରଙ୍କ ସମ୍ବନ୍ଧରେ ବ୍ରାହ୍ମଣୀଙ୍କର ସମସ୍ତ କଥା ହୃଦୟରୁ ସହିତ ଅନୁମୋଦନ କରି କହିଲେ, "ଯେଉଁ ଊନବିଂଶ ପ୍ରକାର ପ୍ରଧାନ ପ୍ରଧାନ ଭାବ ବା ଅବସ୍ଥା ସମ୍ମିଳିତ ହେଲେ 'ମହାଭାବ'ର ଉଦୟ ହୁଏ ବୋଲି ଭକ୍ତିଶାସ୍ତ୍ରମାନଙ୍କରେ ଉଲ୍ଲେଖ ରହିଛି ଏବଂ ଯେଉଁ ମହାଭାବ କେବଳ ଭାବମୟୀ ଶ୍ରୀରାଧିକା ଓ ଭଗବାନ ଶ୍ରୀଚୈତନ୍ୟଦେବଙ୍କ ଜୀବନରେ ହିଁ ଏପର୍ଯ୍ୟନ୍ତ ପରିଲକ୍ଷିତ ହୋଇ ଆସିଛି, କି ଆଶ୍ଚର୍ଯ୍ୟ, ତା'ର ସମସ୍ତ ଲକ୍ଷଣ ଏହି ମହାପୁରୁଷଙ୍କଠାରେ ବର୍ତ୍ତମାନ ପ୍ରକଟିତ ହେବାର ଆମେ ଦେଖୁଅଛୁ ! ଆମ୍ଭମାନଙ୍କ ଭଳି ସାଧାରଣ ବ୍ୟକ୍ତିଙ୍କ ଶରୀର ଏହି

ଊନେଇଶ ପ୍ରକାର ଭାବର ଉଦ୍ଦାମ ବେଗ ଆଦୌ ସହ୍ୟ କରିପାରନ୍ତି ନାହିଁ । ଶାସ୍ତ୍ରରେ ଉଲ୍ଲେଖ ଅଛି—ଏହି 'ମହାଭାବ'କୁ କୌଣସି ସାଧାରଣ ଜୀବ ନିଜ ଭିତରେ ଧାରଣ କରିପାରିବ ନାହିଁ ।'' ମଥୁର ପ୍ରଭୃତି ଉପସ୍ଥିତ ସମସ୍ତ ବିଜ୍ଞମଣ୍ଡଳୀ ବୈଷ୍ଣବଚରଣଙ୍କ କଥା ଶୁଣି ଖୁବ୍ ଆଶ୍ଚର୍ଯ୍ୟ ହୋଇ-ଗଲେ । ଠାକୁର ମଧ୍ୟ ବାଳକଟିଏ ଭଳି ବିସ୍ମୟ ଓ ଆନନ୍ଦରେ ମଥୁରଙ୍କୁ କହିଲେ, ''କ'ଣ ଏମାନେ କହୁଛନ୍ତି ? ଯା' ହେଉ ବାବୁ ! ରୋଗ ନୁହେଁ ବୋଲି ଜାଣି ମନରେ ଖୁବ୍ ଆନନ୍ଦ ହେଉଛି ।''

ଏହାପରଠାରୁ ବୈଷ୍ଣବଚରଣ ମଧ୍ୟ ଠାକୁରଙ୍କ ପାଖକୁ କିଛିଦିନ ଯାତାୟାତ କଲେ । ଇତିମଧ୍ୟରେ ଇନ୍ଦେଶର ଗୌରୀ ପଣ୍ଡିତ ନାମକ ଜଣେ ବିଜ୍ଞ ବ୍ୟକ୍ତି ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ସେ ଥିଲେ ଜଣେ ବିଶିଷ୍ଟ ତାନ୍ତ୍ରିକ ସାଧକ । ତେଣୁ ସେ କିଛି ଅଲୌକିକ କ୍ଷମତା ବା ବିଭୂତିର ମଧ୍ୟ ଅଧିକାରୀ ହୋଇପାରିଥିଲେ । ଠିକ୍ ଏହା ପରେପରେ ମଥୁରବାବୁ ବୈଷ୍ଣବଚରଣ ପ୍ରମୁଖ କେତେଜଣ ସାଧକ ପଣ୍ଡିତଙ୍କୁ ଆହ୍ୱାନ କରି ଗୋଟିଏ ସଭାର ଅଧିବେଶନ କରାଇଲେ । ଦିନେ ସକାଳଓଳି କାଳୀଙ୍କ ମନ୍ଦିରର ସମ୍ମୁଖ ନାଟମନ୍ଦିରରେ ସେହି ସଭା ବସିଲା । ବୈଷ୍ଣବ-ଚରଣ କଲିକତାରୁ ଆସି ଠାକୁରଙ୍କ ପଦପ୍ରାନ୍ତରେ ପ୍ରଣତ ହେଲେ ଏବଂ ଠିକ୍ ସେତିକିବେଳେ ଠାକୁରଙ୍କର ଭାବପ୍ରେମର ସମାଧି ଅବସ୍ଥା ଆସିଗଲା । ସେ ଭାବବିଭୋର ହୋଇ ବୈଷ୍ଣବଚରଣଙ୍କ କାନ୍ଧ ଉପରେ ବସିପଡ଼ିଲେ ଏବଂ ଏହି ମହାଭାବ ବୈଷ୍ଣବଚରଣଙ୍କ ହୃଦୟକୁ ମଧ୍ୟ ଏପରିଭାବରେ ସଂକ୍ରମିତ ହୋଇଗଲା ଯେ ସେ ଭକ୍ତିଦ୍ରବିତ ଚିତ୍ତରେ ସଙ୍ଗେସଙ୍ଗେ ଗୋଟିଏ ସଂସ୍କୃତସ୍ତବ ରଚନା କରି ସ୍ୱର ସଂଯୋଗରେ ଗାନ କରିବାକୁ ଲାଗିଲେ । ସଭାକାର୍ଯ୍ୟ ଯେତେବେଳେ ଆରମ୍ଭ ହେଲା, ଗୌରୀ ପ୍ରଥମେ ( ଠାକୁରଙ୍କୁ ଦେଖାଇ ) କହି ଉଠିଲେ, ''ଠାକୁର ଯେତେ-ବେଳେ ପଣ୍ଡିତଜୀଙ୍କୁ ଏଭଳି କୃପା କଲେଣି, ସେତେବେଳେ ଆଜି ଆଉ ମୁଁ ତାଙ୍କ ସଙ୍ଗେ ବାଦତର୍କରେ ପ୍ରବୃତ୍ତ ହେବି ନାହିଁ । ବିଶେଷତଃ ମୁଁ ତ ଦେଖୁଛି—ସେ ଆମ୍ଭମାନଙ୍କ ମତବାଦର ଲୋକ । ଠାକୁରଙ୍କ ସମ୍ବନ୍ଧରେ

ଆମ ଦୁହିଁଙ୍କର ଧାରଣା ସମାନ । ଅତଏବ ଏ ସ୍ଥଳରେ ତର୍କ ନିଷ୍ପ୍ରୟୋଜନ ।''

ଏହାପରେ କିଛି ସମୟ ଶାସ୍ତ୍ରୀୟ ଅନ୍ୟାନ୍ୟ କଥାବାର୍ତ୍ତା ପରେ ସେଦିନର ସଭାକାର୍ଯ୍ୟ ସମାପ୍ତ ହେଲା । ଏ ଘଟଣାର କିଛିଦିନ ପରେ ଦିନେ ଠାକୁର ଗୌରୀ ପଣ୍ଡିତଙ୍କୁ ପରୀକ୍ଷା କରିବା ଲାଗି ତାଙ୍କୁ ପଚାରିଲେ, "ଆଚ୍ଛା, ବୈଷ୍ଣବଚରଣ (ନିଜ ଶରୀରକୁ ଦେଖାଇ) ଏହାକୁ ଅବତାର ବୋଲି କହୁଛି । ଏହା କ'ଣ ହୋଇପାରେ ? ତୁମର କ'ଣ ବୋଧହୁଏ ?''

ଗୌରୀ ପଣ୍ଡିତ ଏକଥା ଶୁଣି ଗମ୍ଭୀର ଭାବରେ ଉତ୍ତର ଦେଲେ, "ବୈଷ୍ଣବଚରଣ ଆପଣଙ୍କୁ ଅବତାର କହେ ? ତା'ହେଲେ ତ ସେ ଛୋଟ କରି କହିଲା । ମୋର ଧାରଣା, ଯାହାଙ୍କ ଅଂଶରୁ ଯୁଗେଯୁଗେ ଅବତାର-ମାନେ ଲୋକକଲ୍ୟାଣ ସାଧନ ନିମିତ୍ତ ଜଗତରେ ଅବତୀର୍ଣ୍ଣ ହୋଇଥାଆନ୍ତି, ଯାହାଙ୍କ ଶକ୍ତିରେ ସେମାନେ ଏହି କାର୍ଯ୍ୟ ସାଧନ କରନ୍ତି—ଆପଣ ହେଉଛନ୍ତି ସ୍ୱୟଂ ସେହି ।''

ଠାକୁର ଏକଥା ଶୁଣି ହସିହସି କହିଲେ, "ଆରେ ବାପ୍‌ରେ ! ତୁମେ ଯେ ତାକୁ ମଧ୍ୟ ବଳିଗଲ ! କାହିଁକି ଏପରି କହୁଛ କହିଲ ଦେଖି ! ମୋଠାରେ ଏପରି କଅଣ ଦେଖିଛ କହିଲ ଦେଖି !'' ଗୌରୀ ପଣ୍ଡିତ କହିଲେ, "ଶାସ୍ତ୍ର ପ୍ରମାଣ ଅନୁସାରେ ଓ ନିଜ ପ୍ରାଣର ଅନୁଭବରୁ ଏପରି କହୁଛି ।'' ଏ ବିଷୟରେ ଯଦି କେହି ବିରୁଦ୍ଧ ପକ୍ଷ ଅବଲମ୍ବନ କରି ମୋ ସହିତ ବାଦରେ ପ୍ରବୃତ୍ତ ହୁଏ, ତା'ହେଲେ ମୁଁ ମୋର ଧାରଣା ପ୍ରମାଣ କରିବାକୁ ପ୍ରସ୍ତୁତ ଅଛି ।''

ଠାକୁର ପିଲାଟିଏ ଭଳି କହିଲେ, "ତୁମେମାନେ ସବୁ ଏତେ କଥା କହୁଛ, କେଜାଣି ବାବୁ, ମୁଁ ତ ଏସବୁ କଥା କିଛି ଜାଣେ ନାହିଁ ।''

ଦିନକୁ ଦିନ ଗୌରୀ ପଣ୍ଡିତ ଠାକୁରଙ୍କ ପ୍ରତି ଅଧିକତର ଆକୃଷ୍ଟ ହେବାକୁ ଲାଗିଲେ ଏବଂ ତାଙ୍କର ମନ ପାଣ୍ଡିତ୍ୟ, ଲୋକମାନ୍ୟ, ଯୋଗ-ବିଭୂତି ଆଦି ସବୁ ପ୍ରକାର ବିଷୟ ପ୍ରତି ବିରକ୍ତ ହୋଇ ପଡ଼ିଲା । ତାଙ୍କର ମନ ଈଶ୍ୱରଙ୍କ ପାଦପଦ୍ମରେ ଏକାଗ୍ର ହୋଇଉଠିଲା । ବର୍ତ୍ତମାନ

ତାଙ୍କ ମନରେ ସଂକଳ୍ପ ସ୍ଥିର ହୋଇଗଲା—ସେ ସର୍ବସ୍ୱ ତ୍ୟାଗ କରି ଈଶ୍ୱରଙ୍କ ପ୍ରତି ଭକ୍ତିପୂର୍ଣ୍ଣ ଚିତ୍ତରେ ସଂପୂର୍ଣ୍ଣ ନିର୍ଭରପୂର୍ବକ ବ୍ୟାକୁଳ ଅନ୍ତରରେ ତାଙ୍କୁ ଡାକି ଡାକି ଦିନ କେଇଟା କାଟି ଦେବେ । ଶୁଭ-ମୁହୂର୍ତ୍ତର ଉଦୟ ଜାଣି, ଠାକୁରଙ୍କ ଶ୍ରୀପାଦପଦ୍ମରେ ପ୍ରଣାମ କରି ଦିନେ ସେ ବିଦାୟ ପ୍ରାର୍ଥନା କଲେ । ଠାକୁର କହିଲେ, "ସେ କ'ଣ ଗୌରୀ ? ହଠାତ୍ ବିଦାୟ ନେବ କାହିଁକି ? କୁଆଡ଼େ ଯିବ ?" ଗୌରୀ ପଣ୍ଡିତ କରଯୋଡ଼ ହୋଇ ଉତ୍ତର ଦେଲେ, "ଆଶୀର୍ବାଦ କରନ୍ତୁ ! ଯେପରି ଅଭୀଷ୍ଟ ସିଦ୍ଧ ହୁଏ ! ଈଶ୍ୱରଙ୍କୁ ଲାଭ ନ କରି ଆଉ ଯେପରି ସଂସାରକୁ ନ ଫେରେ !"

ଶୁଣାଯାଏ ଯେ ସେହିଦିନଠାରୁ ଗୌରୀ ପଣ୍ଡିତଙ୍କର ବହୁ ଅନୁସନ୍ଧାନ କରି ମଧ୍ୟ ଏ ସଂସାରରେ କେହି ଆଉ ତାଙ୍କର ଦେଖା ପାଇନାହିଁ ।

## ଦଶମ ଅଧ୍ୟାୟ

# ତନ୍ତ୍ରସାଧନାରେ ଶ୍ରୀରାମକୃଷ୍ଣ

ତନ୍ତ୍ରର ନିଗୂଢ଼ ତତ୍ତ୍ୱ ଉଦ୍‌ଘାଟନ ପାଇଁ ଏବଂ ତନ୍ତ୍ରର ମର୍ଯ୍ୟାଦା ପୁନର୍ବାର ପ୍ରତିଷ୍ଠା କରିବା ପାଇଁ ଭୋଗମନ୍ଦିରମଣ୍ଡ ଊନବିଂଶ ଶତାବ୍ଦୀରେ ଶ୍ରୀରାମକୃଷ୍ଣ ତନ୍ତ୍ରୋକ୍ତ ସାଧନାରେ ନିମଗ୍ନ ହୋଇଥିଲେ । ଏ ସଂସାରରେ ରୂପରସାଦି ଯେଉଁସବୁ ପଦାର୍ଥ ଆମ ଭଳି ସାଧାରଣ ମଣିଷର ମନକୁ ପ୍ରଲୋଭିତ କରି ବାରମ୍ବାର ଜନ୍ମମରଣାଦି ଅନୁଭବ କରାଉଛି ଏବଂ ଈଶ୍ୱରଲାଭ ଓ ଆତ୍ମଜ୍ଞାନର ଅଧିକାରୀ ହେବା ପଥରେ ବାଧାସୃଷ୍ଟି କରୁଅଛି, ସଂଯମ ସାହାଯ୍ୟରେ ବାରମ୍ବାର ଉଦ୍ୟମ ଓ ପ୍ରୟାସଦ୍ୱାରା ସେସବୁକୁ ଈଶ୍ୱରଙ୍କର ମୂର୍ତ୍ତି ବୋଲି ଅବଧାରଣ କରିବା ଦିଗରେ ସାଧକକୁ ଅଭ୍ୟସ୍ତ କରାଇବା ହିଁ ତାନ୍ତ୍ରିକ କ୍ରିୟାଗୁଡ଼ିକର ଉଦ୍ଦେଶ୍ୟ । ସାଧକର ସଂଯମ ଏବଂ ସର୍ବଭୂତରେ ଈଶ୍ୱରଧାରଣାର ତାରତମ୍ୟ ବିଚାର କରି ତନ୍ତ୍ର ପଶୁ, ବୀର ଓ ଦିବ୍ୟଭାବର* ଅବତାରଣା କରିଅଛି । ବେଦାନ୍ତରେ ଉକ୍ତ ଉତ୍ତମ ଅଧିକାରୀ ହିଁ ତନ୍ତ୍ରୋକ୍ତ ଦିବ୍ୟଭାବର ସାଧକ, ମଧ୍ୟମ ଅଧିକାରୀ ବୀର ଭାବର ଏବଂ ଅଧମ ଅଧିକାରୀ ପଶୁଭାବର ସାଧକ ।

---

* ପଶୁଭାବର ସାଧକଠାରେ କାମକ୍ରୋଧାଦି ପଶୁଭାବର ଆଧିକ୍ୟ ଥାଏ । ସେଥିଲାଗି ସବୁପ୍ରକାର ପ୍ରଲୋଭନର ବସ୍ତୁଠାରୁ ଦୂରରେ ରହି, ବାହ୍ୟିକ ଶୌଚକ୍ରିୟାର ପ୍ରଭୃତି ପ୍ରତି ବିଶେଷ ଲକ୍ଷ୍ୟ ରଖି, ଭକ୍ତ ସାଧକ ଭଗବାନଙ୍କ ନାମଜପ ପୁରଶ୍ଚରଣାଦିରେ ପ୍ରବୃତ୍ତ ରହନ୍ତି । ବୀରଭାବର ସାଧକଠାରେ ଈଶ୍ୱରାନୁରାଗ ପ୍ରବଳ ଥାଏ । କାମ-ରୂପ-ରସାଦିର ଆକର୍ଷଣ ତା' ଭିତରେ ଈଶ୍ୱରାନୁରାଗକୁ ହିଁ ପ୍ରବଳତର କରିଦିଏ । ସେଥିପାଇଁ ନାନାବିଧ ପ୍ରଲୋଭନ ଭିତରେ ବାସ କରି ମଧ୍ୟ ଅବିଚଳିତ ରହି ସେ ଈଶ୍ୱରଙ୍କଠାରେ ସମସ୍ତ

କଠୋର ସଂଯମକୁ ଭିତ୍ତିସ୍ୱରୂପ ଅବଲମ୍ବନ କରି ତନ୍ତ୍ରୋକ୍ତ ସାଧନଗୁଡ଼ିକରେ ପ୍ରବୃତ୍ତ ହେଲେ ଫଳ ପ୍ରତ୍ୟକ୍ଷ ହେବ, ତା' ନ ହେଲେ ହେବ ନାହିଁ---ଏହି ସତ୍ୟଟି ଲୋକମାନେ କାଳଧର୍ମରେ ପ୍ରାୟ ବିସ୍ମୃତ ହୋଇ ଯାଇଥିଲେ ଏବଂ ନିଜର ଖିଆଲରେ ଓ ଆପଣା ନିମ୍ନ ପ୍ରବୃତ୍ତିଗୁଡ଼ିକୁ ଚରିତାର୍ଥ କରିବା ଢଗରେ ମନ୍ଦବୁଦ୍ଧି ତନ୍ତ୍ରସାଧକମାନେ ଯେଉଁସବୁ ଅମାନବୀୟ ଓ ଅସାମାଜିକ କ୍ରିୟାକାଣ୍ଡ ଘଟାଉଥିଲେ, ସେସବୁକୁ ଦେଖି ଲୋକେ ତନ୍ତ୍ର-ଶାସ୍ତ୍ରକୁ ହିଁ ଦାୟୀ କରୁଥିଲେ ଏବଂ ନିନ୍ଦା ମଧ୍ୟ କରୁଥିଲେ । କିନ୍ତୁ ରମଣୀମାନେ ମାତୃଭାବସମ୍ପନ୍ନା । ଠାକୁର ଯେତେବେଳେ ବିବିଧ ପ୍ରକାର ତନ୍ତ୍ର-ସାଧନ କରି ସେଗୁଡ଼ିକରେ ସଫଳତା ଅର୍ଜନ କଲେ, ସେତେବେଳେ ଯଥାର୍ଥ ତନ୍ତ୍ରାଭିଳାଷୀମାନେ ମଧ୍ୟ ତାଙ୍କଠାରୁ ସେହି ଢଗରେ ଲକ୍ଷ୍ୟ ଓ ଉପାୟଗୁଡ଼ିକ ନିର୍ଦ୍ଦେଶରୂପେ ଲାଭ କରି କୃତାର୍ଥ ହେଲେ ଏବଂ ସ୍ୱୟଂ ତନ୍ତ୍ରମାର୍ଗ ମଧ୍ୟ ଲୋକନିନ୍ଦାରୁ ରକ୍ଷା ପାଇ ଅଧ୍ୟାତ୍ମ-ସାଧନାର ଏକ ମର୍ଯ୍ୟାଦା-ପୂର୍ଣ୍ଣ ପ୍ରତିଷ୍ଠା ଓ ମହିମା ପୁନର୍ବାର ଲାଭ କରିବାକୁ ସମର୍ଥ ହେଲା ।

ଠାକୁରଙ୍କ ପରି ଉତ୍ତମ ଅଧିକାରୀକୁ ଶିକ୍ଷାଦାନର ସୁଯୋଗ ଲାଭ କରି ଭୈରବୀ ବ୍ରାହ୍ମଣୀଙ୍କ ହୃଦୟ ଆନନ୍ଦରେ ପୂର୍ଣ୍ଣ ହୋଇଉଠିଲା; କିନ୍ତୁ କେବଳମାତ୍ର ବ୍ରାହ୍ମଣୀଙ୍କର ଆଗ୍ରହ ଓ ଉତ୍ତେଜନା ତାଙ୍କୁ ଏହି ତନ୍ତ୍ର-ସାଧନାରେ ନିଯୁକ୍ତ କରିନାହିଁ । ସାଧନପ୍ରସୂତ ଯୋଗଦୃଷ୍ଟି ପ୍ରଭାବରେ ସେ ବର୍ତ୍ତମାନ ନିଜ ଅନ୍ତରରେ ବୁଝିପାରିଥିଲେ ଯେ ଶାସ୍ତ୍ରୀୟ ପ୍ରଣାଳୀ ଅବଲମ୍ବନ କରି ଶ୍ରୀଶ୍ରୀଜଗନ୍ମାତାଙ୍କୁ ପ୍ରତ୍ୟକ୍ଷ କରିବାର ଯଥାର୍ଥ ସମୟ ବର୍ତ୍ତମାନ ଉପସ୍ଥିତ । ଶ୍ରୀଶ୍ରୀଜଗନ୍ମାତାଙ୍କ ଇଙ୍ଗିତରେ ଠାକୁର ବର୍ତ୍ତମାନ ସର୍ବସ୍ୱ ଭୁଲି ସାଧନାରେ ନିମଗ୍ନ ହେଲେ ଏବଂ ସେଥିରେ ସେ ପ୍ରଜ୍ଞାବତୀ କର୍ମକୁଶଳା ଭୈରବୀ ବ୍ରାହ୍ମଣୀଙ୍କର ବହୁ ସହାୟତା ମଧ୍ୟ ଲାଭ କରିଥିଲେ । ସେହି

---

ମନପ୍ରାଣ ଅର୍ପଣ କରିବାକୁ ଚେଷ୍ଟା କରନ୍ତି । ଈଶ୍ୱରାନୁରାଗର ପ୍ରବଳ ପ୍ରବାହରେ ଯାହାଙ୍କର କାମକ୍ରୋଧାଦି ଚିରକାଳ ଲାଗି ସମ୍ପୂର୍ଣ୍ଣରୂପେ ଭାସି ଯାଇଛି ଏବଂ କ୍ଷମା, ଦୟା, ସତ୍ୟାଦି ସଦ୍‌ଗୁଣସମୂହର ଅନୁଷ୍ଠାନ ସ୍ୱାଭାବିକ ହୋଇ ଉଠିଛି, ସେ ହିଁ ଦିବ୍ୟଭାବର ସାଧକ ହୋଇପାରନ୍ତି ।

ତନ୍ତ୍ରସିଦ୍ଧା ବ୍ରାହ୍ମଣୀ ତାନ୍ତ୍ରିକ କ୍ରିୟାର ଉପଯୋଗୀ ପଦାର୍ଥମାନ ସଂଗ୍ରହ କରି ଏଗୁଡ଼ିକର ପ୍ରୟୋଗ ସମ୍ବନ୍ଧରେ ମଧ୍ୟ ଠାକୁରଙ୍କୁ ଯଥାସମୟରେ ଉପଦେଶ ଦେବାରେ ତ୍ରୁଟି କରୁନଥିଲେ । ବ୍ରାହ୍ମଣୀ ଠାକୁରଙ୍କ ତନ୍ତ୍ର-ସାଧନାର ଉପକରଣରୂପେ ଶିବା, ସର୍ପ, କୁକୁର, ବୃଷ ଓ ମନୁଷ୍ୟ ସମେତ ପଞ୍ଚପ୍ରାଣୀଙ୍କ ମସ୍ତକକଙ୍କାଳ ଗଙ୍ଗାସ୍ନାନ ପ୍ରଦେଶରୁ ଅତି ଯତ୍ନ ସହକାରେ ଆହରଣ କରାଇ ମନ୍ଦିର-ଉଦ୍ୟାନରେ ଉତ୍ତରପଟ ବେଲଗଛ ତଳେ ଓ ଠାକୁର ନିଜ ହାତରେ ପୋତିଥିବା ପଞ୍ଚବଟୀ ତଳେ ସୁରକ୍ଷିତ କରି-ଥିଲେ । ଏହି ଦୁଇଟି ସ୍ଥାନରେ ସାଧନାନୁକୂଳ ଦୁଇଟି ବେଦିକା ପ୍ରସ୍ତୁତ ହୋଇଥିଲା । ଠାକୁର ପ୍ରୟୋଜନାନୁସାରେ ଏହି ମୁଣ୍ଡାସନ ଦୁଇଟିରୁ ଗୋଟିକ ଉପରେ ବସି ଜପ, ପୁରଶ୍ଚରଣ ଓ ଧ୍ୟାନାଦିରେ ସମୟ ଅତିବାହିତ କରୁଥିଲେ ।

ସେହି ସମୟର ଅଭିଜ୍ଞତା ସମ୍ବନ୍ଧରେ ଠାକୁର ନିଜ ମୁହଁରେ କହିଛନ୍ତି, "ଏହି ସମୟରେ ଦର୍ଶନ ପରେ ଦର୍ଶନ, ଅନୁଭବ ପରେ ଅନୁ-ଭବ, କି କି ଅଦ୍ଭୁତ କଥାମାନ ଯେ ପ୍ରତ୍ୟକ୍ଷ କରିଛି, ତା'ର ଇୟତ୍ତା ନାହିଁ । ବିଷ୍ଣୁକ୍ରାନ୍ତାରେ ପ୍ରଚଳିତ ଚଉଷଠୀ ପ୍ରକାର ତନ୍ତ୍ରରେ ଯେତେସବୁ ସାଧନାର କଥା ଅଛି, ସବୁଗୁଡ଼ିକ ଭୈରବୀ ବ୍ରାହ୍ମଣୀ ଗୋଟିକ ପରେ ଗୋଟିଏ ଅନୁଷ୍ଠାନ କରାଇଥିଲେ । କଠିନ କଠିନ ସାଧନ—ଯେଉଁଗୁଡ଼ିକ ସାଧନ କରୁକରୁ ଅଧିକାଂଶ ସାଧକ ପଥଭ୍ରଷ୍ଟ ହୁଅନ୍ତି, ଶ୍ରୀଶ୍ରୀଜଗଦମ୍ବାଙ୍କ କୃପାରେ ସେଗୁଡ଼ିକୁ ଉତ୍ତୀର୍ଣ୍ଣ ହୋଇଗଲି ।" ଠାକୁର ଆହୁରି ମଧ୍ୟ କହୁଥିଲେ ଯେ ସେହିସବୁ ସାଧନଗୁଡ଼ିକରୁ କୌଣସି ଗୋଟିକରେ ସାଫଲ୍ୟ ଲାଭ କରିବା ପାଇଁ ତାଙ୍କୁ ତିନିଦିନରୁ ଅଧିକ ସମୟ ଲାଗିନଥିଲା ।

ଏହି ତନ୍ତ୍ର-ସାଧନା କରିବା ପରଠାରୁ ଠାକୁରଙ୍କର ସୁଷୁମ୍ନାଦ୍ୱାର ପୂର୍ଣ୍ଣଭାବରେ ଉନ୍ମୋଚିତ ହୋଇଗଲା । ତା'ଫଳରେ ଠାକୁର ସଂପୂର୍ଣ୍ଣ ଭାବରେ ବାଳକ ଅବସ୍ଥାରେ ପ୍ରତିଷ୍ଠିତ ହୋଇଥିଲେ । ଏହି ସମୟ ପରେ ସେ କାନ୍ଧରେ ପଇତା ରଖି ପାରୁନଥିଲେ ଓ ବହୁ ଚେଷ୍ଟା କରି ମଧ୍ୟ ଅଣ୍ଟାରେ ଲୁଗା ରଖି ପାରୁନଥିଲେ । ତା'ର କାରଣ ହେଲା ଶ୍ରୀଶ୍ରୀ-

ଜଗଦମ୍ବାଙ୍କ ଶ୍ରୀପାଦପଦ୍ମରେ ତାଙ୍କର ମନ ସତତ ନିବିଷ୍ଟ ରହିବା ଫଳରେ ସେ ସମ୍ପୂର୍ଣ୍ଣଭାବରେ ଦେହବୋଧ ହରାଇ ବସିଥିଲେ । ଠାକୁର କହୁଥିଲେ ଯେ ଏହିସବୁ ସାଧନ ଶେଷରେ ତାଙ୍କର ସବୁ ପଦାର୍ଥରେ ଅଦ୍ୱୈତବୁଦ୍ଧି ଏତେ ବଢ଼ିଯାଇଥିଲା ଯେ, ସେପର୍ଯ୍ୟନ୍ତ ସେ ଯେଉଁସବୁ ପଦାର୍ଥକୁ ଅଶୁଦ୍ଧ ହେୟ ଓ ନଗଣ୍ୟ ବୋଲି ମନେ କରୁଥିଲେ, ସେଗୁଡ଼ିକ ମଧ୍ୟ ତାଙ୍କ ଦୃଷ୍ଟିରେ ମହାପବିତ୍ର ବସ୍ତୁଗୁଡ଼ିକ ସଙ୍ଗେ ସମାନ ମନେ ହେଲା । ସେ କହୁଥିଲେ—"ତୁଳସୀ ଆଉ ସଜନାପତ୍ର ସମାନଭାବରେ ପବିତ୍ର ବୋଧ ହେଲା । ଏହି ତନ୍ତ୍ରସାଧନ ପ୍ରଭାବରେ ଦିବ୍ୟଶକ୍ତି ଲାଭ କରି ଠାକୁରଙ୍କର ଆଉ ଗୋଟିଏ ବିଷୟରେ ଉପଲବ୍ଧି ହୋଇଥିଲା । ଶ୍ରୀଶ୍ରୀଜଗଦମ୍ବାଙ୍କ ଅନୁଗ୍ରହ ଯୋଗୁଁ ସେ ଜାଣିପାରିଥିଲେ ଯେ ପରବର୍ତ୍ତୀ କାଳରେ ବହୁ ବ୍ୟକ୍ତି ତାଙ୍କ ନିକଟକୁ ଧର୍ମଲାଭ କରିବା ପାଇଁ ଆସିବେ ଏବଂ କୃତାର୍ଥ ହେବେ । ପରମ ଅନୁଗତ ମଥୁରାନାଥ ଓ ହୃଦୟ ପ୍ରଭୃତିଙ୍କୁ ସେ ଏହି ଉପଲବ୍ଧିର କଥା କହିଥିଲେ । ସେକଥା ଶୁଣି ମଥୁରାନାଥ କହିଥିଲେ—"ବେଶ୍ ହେବ । ତା' ହେଲେ ସମସ୍ତେ ମିଶି ତୁମକୁ ନେଇ ଆନନ୍ଦ କରିବୁ ।"

## ଏକାଦଶ ଅଧ୍ୟାୟ

# ପଣ୍ଡିତ ଓ ସାଧୁସଙ୍ଗ

ପୂର୍ବରୁ ସୂଚିତ ହୋଇଛି ଯେ ରାଣୀ ରାସମଣିଙ୍କ ମୃତ୍ୟୁ ପରେ ମଥୁରବାବୁ ଠାକୁରଙ୍କର ସେବାଧିକାର ପୂର୍ଣ୍ଣଭାବରେ ଲାଭ କରି ଧନ୍ୟ ହୋଇଥିଲେ ଏବଂ ସେତେବେଳେ ଦକ୍ଷିଣେଶ୍ୱର କାଳୀ-ମନ୍ଦିରରେ ଶ୍ରୀଜଗଦମ୍ବାଙ୍କ ପୂଜାପଦ୍ଧତିରେ ସାମାନ୍ୟତମ ତ୍ରୁଟି ମଧ୍ୟ ପରିଲକ୍ଷିତ ହୋଇନଥିଲା । ମଥୁରବାବୁ ସେତେବେଳକୁ ସଂପୂର୍ଣ୍ଣଭାବରେ ରାମକୃଷ୍ଣଗତପ୍ରାଣ ହୋଇଯାଇଥିଲେ । ସୁତରାଂ ଠାକୁରାଣୀଙ୍କ ପୂଜା-ପଦ୍ଧତିରେ ନିୟମିତ ବ୍ୟୟ କରିବାରେ କୁଣ୍ଠିତ ହେବା ଦୂରେ ଥାଉ, ବରଂ ଅନେକ ସମୟରେ ଠାକୁରଙ୍କ ନିର୍ଦ୍ଦେଶରେ ଅଧିକ ଅର୍ଥ ମଧ୍ୟ ବ୍ୟୟ କରି ଦେଉଥିଲେ । ରାଣୀ ରାସମଣିଙ୍କ କାଳୀବାଡ଼ିର ଅଦ୍ଭୁତ ଆତିଥେୟତାର ଖ୍ୟାତି ସାଧୁ-ଭକ୍ତମାନଙ୍କ ଭିତରେ ସର୍ବତ୍ର ପ୍ରଚାରିତ ହୋଇଯାଇଥିଲା । ସେ ନିଜେ ବଞ୍ଚିଥିଲାବେଳେ ମଧ୍ୟ ବହୁ ପରିବ୍ରାଜକ, ତୀର୍ଥଯାତ୍ରୀ ଓ ଧର୍ମାର୍ଥୀମାନ ବହୁ ବିଶିଷ୍ଟ ଯୋଗୀ ସନ୍ନ୍ୟାସୀ ଦକ୍ଷିଣେଶ୍ୱର ଆସି ଏହି ସଦାବ୍ରତ କାଳୀବାଡ଼ିରେ କିଛିଦିନ ବିଶ୍ରାମ ନେଉଥିଲେ । ବର୍ତ୍ତମାନ ଏହାର ସୁଖ୍ୟାତି ଆହୁରି ବଢ଼ିଗଲା । ସବୁଠାରୁ ଆଶ୍ଚର୍ଯ୍ୟର କଥା ହେଲା—ଏଠାକୁ ସବୁ ସଂପ୍ରଦାୟର ସାଧୁସନ୍ନ୍ୟାସୀ ଓ ଭକ୍ତ ଆସୁଥିଲେ ଏବଂ ମଥୁରବାବୁଙ୍କ ଆତିଥେୟତାରେ ସନ୍ତୁଷ୍ଟ ହୋଇ ଓ ଠାକୁରଙ୍କ ଅଲୌକିକ ବ୍ୟକ୍ତିତ୍ୱର ସଂସ୍ପର୍ଶରେ ଆସି ସେମାନେ କୃତକୃତ୍ୟ ଚିତ୍ତରେ ଏଠାରୁ ପ୍ରତ୍ୟାବର୍ତ୍ତନ କରୁଥିଲେ ।

ସେହି ସମୟର କଥା କହିବାକୁ ଯାଇ ଠାକୁର ପରେ ବହୁଥର କହିଛନ୍ତି, "ସେତେବେଳେ ଏକ ଏକ ସମୟରେ ଗୋଟିଏ ଗୋଟିଏ ପ୍ରକାର ସାଧୁଙ୍କର ଭିଡ଼ ଜମି ଯାଉଥିଲା । ଏକଦା ବହୁ ପରମହଂସ ସନ୍ନ୍ୟାସୀ ଆସିବାକୁ ଲାଗିଲେ । ପେଟବିକଳିଆ ବୈରାଗୀଦଳ କିନ୍ତୁ ଏଠାକୁ ବେଶୀ

ଆସୁ ନ ଥିଲେ । ସବୁ ଭଲ ଭଲ ଲୋକଙ୍କ ଭିଡ଼ ହେଉଥିଲା । (ନିଜର ଘର ଦେଖାଇ) ଏହି ଘରେ ଦିନରାତି ସେମାନଙ୍କର ଭିଡ଼ ଲାଗିଥିଲା । ଆଉ ଦିନରାତି କେବଳ ବ୍ରହ୍ମ ଓ ମାୟାର ସ୍ୱରୂପ—ଅସ୍ତି, ଭାତି, ପ୍ରିୟ—ଏହିସବୁ ବେଦାନ୍ତ ବିଷୟର କଥା ହେଉଥିଲା ।''

ସେ ଯୁବକ ଭକ୍ତମାନଙ୍କୁ ପୁଣି କହୁଥିଲେ—''କେଶବ ସେନ୍ ଏଠାକୁ ଆସିବା ପରଠାରୁ ତୁମମାନଙ୍କ ଭଳି 'ଇୟଙ୍ଗ୍ ବେଙ୍ଗଲ୍'ର ଦଳ ହିଁ ଏଠାକୁ ଆସିବା ଆରମ୍ଭ କରିଦେଲେ । ଆଗେ ଏଠାକୁ କେତେ ଯେ ସାଧୁସନ୍ଥ, ତ୍ୟାଗୀ ସନ୍ନ୍ୟାସୀ, ବୈରାଗୀ ବାବାଜୀ ସବୁ ଆସୁଥିଲେ ତାହା ତୁମେମାନେ କିପରି ଜାଣିବ ? ରେଲ ହେବା ପରଠାରୁ ସେମାନେ ଆଉ ଏପଟେ ଆସନ୍ତି ନାହିଁ ।''

ଏ ସମ୍ପର୍କରେ ଗୋଟିଏ ବିଶେଷତ୍ୱ ହେଉଛି ଯେ ଠାକୁରଙ୍କ ନିକଟକୁ କେବଳ ଗୋଟିଏ ମତବାଦର ବା ଗୋଟିଏ ମାର୍ଗର ସାଧକବୃନ୍ଦ ଆସୁନଥିଲେ । ବିଭିନ୍ନ ମତର ସାଧକ ତାଙ୍କ ପାଖକୁ ଆସିବାର ମୁଖ୍ୟ କାରଣ ହେଲା—ଠାକୁର ନିଜେ ସବୁପ୍ରକାର ମାର୍ଗରେ ଏବଂ ସବୁପ୍ରକାର ମତାଦର୍ଶକୁ ଅବଲମ୍ବନ କରି ଈଶ୍ୱରୀୟ ଭାବର ସମ୍ୟକ୍ ଉପଲବ୍ଧି କରିଥିଲେ । ସେହିସବୁ ପଥର ସମ୍ବାଦ ତାଙ୍କୁ ବିଶେଷ ଭାବରେ ଜଣାଥିଲା ଓ ସେ ତାହା ଅନ୍ୟକୁ କହି ଦେଇପାରୁଥିଲେ । ପ୍ରତ୍ୟେକ ସାଧକ ଠାକୁରଙ୍କ ଦିବ୍ୟ ସଙ୍ଗଗୁଣରେ ନିଜନିଜ ପଥରେ ଅଧିକତର ଅଗ୍ରସର ହୋଇପାରୁଥିଲେ ଏବଂ ଏହି ପଥ ଦେଇ ଗ୍ଲଲେ ଯେ ଦିନେ ନା ଦିନେ ନିଶ୍ଚୟ ଈଶ୍ୱରଲାଭ ହୋଇପାରିବ ଏହା ମଧ୍ୟ ଧ୍ରୁବ ସତ୍ୟ ବୋଲି ବୁଝିପାରୁଥିଲେ ।

ସେତେବେଳେ ଦକ୍ଷିଣେଶ୍ୱରକୁ ଯେଉଁସବୁ ସାଧକ ପଣ୍ଡିତ ଠାକୁରଙ୍କ ନିକଟକୁ ଆସିଥିଲେ, ସେମାନଙ୍କ ଭିତରୁ କେହି କେହି ପୁଣି ଭକ୍ତିର ଆତିଶଯ୍ୟରେ ଠାକୁରଙ୍କ ନିକଟରୁ ଦୀକ୍ଷା ଏବଂ ସନ୍ନ୍ୟାସ ପର୍ଯ୍ୟନ୍ତ ନେଇ ଦକ୍ଷିଣେଶ୍ୱର ଛାଡ଼ିଥିଲେ । ସେମାନଙ୍କ ମଧ୍ୟରେ ପଣ୍ଡିତ ନାରାୟଣ ଶାସ୍ତ୍ରୀ ଅନ୍ୟତମ । ନାରାୟଣ ଶାସ୍ତ୍ରୀ ପ୍ରାଚୀନ ଯୁଗର ନିଷ୍ଠାବାନ ବ୍ରହ୍ମଚାରୀମାନଙ୍କ ଭଳି ଗୁରୁଗୃହରେ ଅବସ୍ଥାନ କରି ଏକାଦିକ୍ରମେ ପଚିଶିବର୍ଷ ସ୍ୱାଧ୍ୟାୟ ବା ନାନାଶାସ୍ତ୍ର ପାଠ କରିଥିଲେ । ସାତବର୍ଷ କାଳ ନବଦ୍ୱୀପରେ ରହି ନ୍ୟାୟ-

ଶାସ୍ତ୍ର ପଢ଼ା ଶେଷ କରିଥିଲେ । ତା'ପରେ ସେ ଆସିଥିଲେ ଦକ୍ଷିଣେଶ୍ୱର ଏବଂ ସେଠାରେ ସେ ଠାକୁରଙ୍କର ଦର୍ଶନ ଓ ସଂସ୍ପର୍ଶ ଲାଭ କଲେ । ସେଥିରେ ତାଙ୍କର ମନ ଏପରି ପରିପ୍ଳୁତ ହୋଇଗଲା ଯେ ସେ ସେଠାରେ କିଛିଦିନ ରହିଗଲେ । କ୍ରମେ ଠାକୁରଙ୍କ ସହିତ ତାଙ୍କର ଯେତିକି ପରିଚୟ ବଢ଼ିବାକୁ ଲାଗିଲା, ସେତିକି ସେ ତାଙ୍କପ୍ରତି ଆକୃଷ୍ଟ ହୋଇ ପଡ଼ିଲେ, ତାଙ୍କୁ ସେତିକି ଭଲ ପାଇ ବସିଲେ । ଠାକୁରଙ୍କ ପ୍ରତି ଅନୁରାଗ କ୍ରମେ ପ୍ରବଳ ଭକ୍ତିଭାବରେ ପରିଣତ ହୋଇଗଲା ଏବଂ ଏହି ମହାନ୍ ପୁରୁଷଙ୍କୁ ଆହୁରି ଅଧିକଭାବରେ ଜାଣିବାକୁ ଓ ବୁଝିବାକୁ ଶାସ୍ତ୍ରୀଙ୍କ ମନରେ ଗଭୀର ଇଚ୍ଛା ଜାଗ୍ରତ ହେଲା ।

ଦିନ ପରେ ଦିନ ବିତିଯାଉଥାଏ । ଏଣେ ଠାକୁରଙ୍କ ଦିବ୍ୟ ସଙ୍ଗଲାଭ ଫଳରେ ଶାସ୍ତ୍ରୀଙ୍କ ଚିତ୍ତରେ ବୈରାଗ୍ୟ ଓ ବ୍ୟାକୁଳତା ବୃଦ୍ଧି ପାଉଥାଏ । ପାଣ୍ଡିତ୍ୟାଭିମାନ, ପ୍ରତିଷ୍ଠା, ଯଶଲିପ୍ସାଦି ସମସ୍ତ ବାସନା ତାଙ୍କର ମନ ଭିତରୁ ଅନ୍ତର୍ହିତ ହୋଇଗଲା । ଅତ୍ୟନ୍ତ ଦୀନ ଭାବରେ ଶିଷ୍ୟଟିଏ ଭଳି ଶାସ୍ତ୍ରୀଜୀ ଠାକୁରଙ୍କ ପାଖରେ ରହିଥାଆନ୍ତି । ଠାକୁରଙ୍କ ଶ୍ରୀମୁଖରୁ ଅମୃତମୟୀ ବାକ୍ୟାବଳୀ ଏକାଗ୍ର ଚିତ୍ତରେ ଶ୍ରବଣ କରି ବେଳେବେଳେ ଭାବନ୍ତି— "ଉପନିଷଦ୍‌କାର କହିଛନ୍ତି ଯେ ଏତାଦୃଶ ମହାପୁରୁଷ ସିଦ୍ଧସଙ୍କଳ୍ପ ହୋଇଥାଆନ୍ତି । ଏହାଙ୍କର ଠିକ୍ କୃପାଲାଭ କରିପାରିଲେ ମନୁଷ୍ୟର ସଂସାର-ବାସନା ବିଦୂରିତ ହୋଇଯାଏ ଓ ବ୍ରହ୍ମଜ୍ଞାନର ଉଦୟ ହୁଏ । ମୁଁ ଭଲା କାହିଁକି ଏହାଙ୍କର ଶରଣାପନ୍ନ ନ ହେବି ?"

ସୁଯୋଗ ଖୋଜି ଦିନେ ଶାସ୍ତ୍ରୀଜୀ ଠାକୁରଙ୍କୁ ନିର୍ଜନରେ ପାଇ ନିଜ ମନୋଭାବ ପ୍ରକାଶ କଲେ ଏବଂ 'ନାଛୋଡ଼ବନ୍ଧା' ହୋଇ ତାଙ୍କୁ ଧରି ବସିଲେ "ମୋତେ ନିଶ୍ଚୟ ସନ୍ନ୍ୟାସଦୀକ୍ଷା ଦେବାକୁ ହେବ ।" ଠାକୁର ମଧ୍ୟ ତାଙ୍କର ଆଗ୍ରହାତିଶଯ୍ୟରେ ସମ୍ମତ ହୋଇ ଶୁଭ ଦିନରେ ତାଙ୍କୁ ସେହି ଦୀକ୍ଷା ପ୍ରଦାନ କଲେ । ସନ୍ନ୍ୟାସଗ୍ରହଣ ପରେ ଶାସ୍ତ୍ରୀଜୀ ଆଉ କାଳୀବାଡ଼ିରେ ରହିଲେ ନାହିଁ । ବଶିଷ୍ଠାଶ୍ରମରେ ବସି ସିଦ୍ଧକାମ ନ ହେବା ପର୍ଯ୍ୟନ୍ତ ବ୍ରହ୍ମୋପଲବ୍ଧିର ଚେଷ୍ଟାରେ ପ୍ରାଣପାତ କରିବେ ବୋଲି ସେ ସ୍ପଷ୍ଟଭାବେ ଠାକୁରଙ୍କୁ ନିଜର ମନୋଭାବ ଜଣାଇ ଦେଲେ । ତା'ପରେ ସଜଳ ନୟନରେ ତାଙ୍କର

ଆଶୀର୍ବାଦ ଭିକ୍ଷା କରି, ତାଙ୍କର ଶ୍ରୀଚରଣ ବନ୍ଦନା କରି ଚିରଦିନ ଲାଗି ଦକ୍ଷିଣେଶ୍ୱର ପରିତ୍ୟାଗ କରି ବାହାରିଗଲେ । ସେହି ଦିନଠାରୁ ନାରାୟଣ ଶାସ୍ତ୍ରୀଙ୍କ ସମ୍ବନ୍ଧରେ କୌଣସି ସମ୍ବାଦ ମିଳିଲା ନାହିଁ ।

ଠାକୁରଙ୍କର ଗୋଟିଏ ବିଶେଷ ସ୍ୱଭାବ ହେଲା ଯେ କୌଣସି ଯଥାର୍ଥ ସାଧକ, ସାଧୁ ବା ଭଗବଦ୍‌ଭକ୍ତ କେଉଁ ସ୍ଥାନରେ ବାସ କରୁଥିବାର ଶୁଣିଲେ—ସେ ଯେ କୌଣସି ସମ୍ପ୍ରଦାୟର ହୋଇଥାଆନ୍ତୁ ନା କାହିଁକି—ଠାକୁର ସ୍ୱୟଂ ତାଙ୍କୁ ଦେଖା କରିବାକୁ ଯାଉଥିଲେ ଏବଂ ଅଯାଚିତ ଭାବରେ ତାଙ୍କ ସହିତ ଭଗବତ୍‌ପ୍ରସଙ୍ଗରେ କିଛି ସମୟ କଟାଇ ଆସୁଥିଲେ । ଶାସ୍ତ୍ରଜ୍ଞ ସାଧକ ପଣ୍ଡିତମାନଙ୍କ କଥା ଶୁଣିଲେ ମଧ୍ୟ ସେ ଅନେକ ସମୟରେ ଏହିପରି ବ୍ୟବହାର କରୁଥିଲେ । ସେକାଳର ବର୍ଦ୍ଧମାନ ରାଜାଙ୍କର ସଭାପଣ୍ଡିତ ଶ୍ରୀଯୁକ୍ତ ପଦ୍ମଲୋଚନ ଏବଂ ଆର୍ଯ୍ୟସମାଜର ପ୍ରତିଷ୍ଠାତା ପ୍ରସିଦ୍ଧ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ପ୍ରଭୃତି ଅନେକଙ୍କୁ ଠାକୁର ଏହି ଭାବରେ ଦର୍ଶନ କରିବାକୁ ଯାଇଥିଲେ । ବଙ୍ଗଦେଶ ଚିରଦିନ ତନ୍ତ୍ର ଏବଂ ନ୍ୟାୟଶାସ୍ତ୍ରର ରଙ୍ଗଭୂମି । ଠାକୁରଙ୍କର ଆବିର୍ଭାବ ପୂର୍ବରୁ ଏଠାରେ ବେଦାନ୍ତଚର୍ଚ୍ଚା ଖୁବ୍ ବିରଳ ଥିଲା । ଅବଶ୍ୟ କେହି କେହି ଯେ ଏହାର ଉଦାର ମୀମାଂସାଗୁଡ଼ିକର ଅନୁଶୀଳନରେ ଆକୃଷ୍ଟ ନ ଥିଲେ, ତାହା ନୁହେଁ । ପଣ୍ଡିତ ପଦ୍ମଲୋଚନ ଏହି ବ୍ୟକ୍ତିମାନଙ୍କ ମଧ୍ୟରେ ଅନ୍ୟତମ । ନ୍ୟାୟଶାସ୍ତ୍ରରେ ବ୍ୟୁତ୍ପତ୍ତି ଲାଭ କଲା ପରେ ସେ କାଶୀଧାମରେ ଦୀର୍ଘ ଦିନ ଗୁରୁଗୃହରେ ରହି ବେଦାନ୍ତ ଚର୍ଚ୍ଚା କରିଥିଲେ । ତା'ପରେ ଦେଶକୁ ଫେରି ସେ, ବର୍ଦ୍ଧମାନ ରାଜାଙ୍କ ନିମନ୍ତ୍ରଣ ପାଇ ତାଙ୍କର ସଭାପଣ୍ଡିତ ରୂପେ ନିଯୁକ୍ତ ହେଲେ । ତାଙ୍କର ସୁଯଶ ସମଗ୍ର ବଙ୍ଗଦେଶରେ ପରିବ୍ୟାପ୍ତ ହୋଇଗଲା । ଠାକୁରଙ୍କ ଭଣଜା ହୃଦୟଙ୍କ ମୁହଁରୁ ଶୁଣାଯାଇଛି ଯେ ପଣ୍ଡିତଜୀଙ୍କ ସହିତ ଠାକୁରଙ୍କର ପ୍ରଥମ ମିଳନରୁ ହିଁ ସେ ଠାକୁରଙ୍କୁ ଅଦ୍‌ଭୁତ ଆଧ୍ୟାତ୍ମିକ ଅବସ୍ଥାରେ ଉପନୀତ ମହାପୁରୁଷ ବୋଲି ଧାରଣା କରିଥିଲେ । ଠାକୁର କହୁଥିଲେ, "ପଦ୍ମଲୋଚନ ଏତେ ବଡ଼ ପଣ୍ଡିତ ହୋଇ ମଧ୍ୟ ଏଠାରେ (ମାନେ, ଠାକୁରଙ୍କ ଉପରେ) ଏତେ ବିଶ୍ୱାସ ଭକ୍ତି କରୁଥିଲେ ! ସେ କହୁଥିଲେ, 'ମୁଁ ସବୁ ପଣ୍ଡିତଙ୍କୁ ଡାକି ସଭା

କରିବ ଏବଂ ସମସ୍ତଙ୍କୁ କହିବ ଯେ ତୁମେ ଈଶ୍ୱରଙ୍କର ଅବତାର । ମୋ କଥା କିଏ କାଟିପାରେ ଦେଖିବି' !'' ମଥୁରବାବୁ (ଥରେ ଅନ୍ୟ କାରଣରୁ) କେତେକ ପଣ୍ଡିତଙ୍କୁ ଡାକି ଦକ୍ଷିଣେଶ୍ୱରରେ ଏକ ସଭାର ଆୟୋଜନ କରିଥିଲେ । ମଥୁରବାବୁଙ୍କ ଆହୂତ ସଭାକୁ କିନ୍ତୁ ପଣ୍ଡିତଜୀ ଯାଇପାରି ନ ଥିଲେ । ସେହି ସଭା ଆହୂତ ହେବା ପୂର୍ବରୁ ତାଙ୍କର ଶାରୀରିକ ଅସୁସ୍ଥତା ବିଶେଷ ବୃଦ୍ଧି ପାଇଥିଲା ଏବଂ ସେ ସଜଳ ନୟନରେ ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି କାଶୀଧାମକୁ ଗମନ କରିଥିଲେ । ଶୁଣାଯାଏ, ସେଠାରେ ଅଳ୍ପ ଦିନ ରହିବା ପରେ ସେ ଶରୀର ତ୍ୟାଗ କରିଥିଲେ ।

ପଦ୍ମଲୋଚନଙ୍କ ବ୍ୟତୀତ ଆହୁରି ଅନେକ ଖ୍ୟାତନାମା ପଣ୍ଡିତଙ୍କ ସଙ୍ଗେ ଠାକୁରଙ୍କର ସମୟ ସମୟରେ ସାକ୍ଷାତ୍ ହୋଇଥିଲା । ଆର୍ଯ୍ୟମତର ପ୍ରବର୍ତ୍ତକ ସ୍ୱାମୀ ଦୟାନନ୍ଦ ସରସ୍ୱତୀ ଯେତେବେଳେ ବଙ୍ଗଦେଶକୁ ଭ୍ରମଣରେ ଆସିଥିଲେ, କଲିକତାର ଉତ୍ତର ପ୍ରାନ୍ତରେ ବରାହନଗରର ସିଁଥି ନାମକ ପଲ୍ଲୀରେ ଜନୈକ ଭଦ୍ରବ୍ୟକ୍ତିଙ୍କ ଉଦ୍ୟାନରେ ସେତେବେଳେ ସେ ଅବସ୍ଥାନ କରୁଥିଲେ । ଠାକୁର ଥରେ ସେଠାକୁ ଯାଇ ତାଙ୍କ ସଙ୍ଗେ ଦେଖା କରିଥିଲେ । ଜୟନାରାୟଣ ପଣ୍ଡିତଙ୍କ ସମ୍ବନ୍ଧରେ ଠାକୁର କହୁଥିଲେ, "ସେ ଏତେ ବଡ଼ ପଣ୍ଡିତ, ମାତ୍ର ଟିକିଏ ହେଲେ ଅହଙ୍କାର ନ ଥିଲା । ଆଉ ମଧ୍ୟ ଆଡ଼ିୟାଦହ ନିବାସୀ କୃଷ୍ଣକିଶୋର ଭଟ୍ଟାଚାର୍ଯ୍ୟଙ୍କର ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ପରମ ଭକ୍ତିର କଥା ମଧ୍ୟ ଠାକୁର ବହୁ ସମୟରେ ଉଲ୍ଲେଖ କରୁଥିଲେ । ଏହିସବୁ ସାଧକମାନଙ୍କ ବ୍ୟତୀତ ମହର୍ଷି ଦେବେନ୍ଦ୍ରନାଥ, ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗର, କାଲ୍‌ନାର ଭଗବାନ୍ ଦାସ ବାବାଜୀ ପ୍ରଭୃତିଙ୍କୁ ମଧ୍ୟ ଠାକୁର ଦେଖା କରିବାକୁ ଯାଇଥିଲେ । ମହର୍ଷି ଦେବେନ୍ଦ୍ରନାଥଙ୍କର ଉଦାର ଭକ୍ତି, ଈଶ୍ୱରଚନ୍ଦ୍ରଙ୍କର କର୍ମଯୋଗ-ପରାୟଣତା ଓ ଭଗବାନ ଦାସ ବାବାଜୀଙ୍କର ଆଧ୍ୟାତ୍ମିକତା ଦର୍ଶନ କରି ସେ ମୁଗ୍ଧ ହୋଇଥିଲେ ।

ଅଠର ଶହ ଚଉଷଠି ପଅଁଷଠି ଖ୍ରୀଷ୍ଟାବ୍ଦର କଥା । ଜଟାଧାରୀ ନାମକ ଜଣେ ରାମଭକ୍ତ ବାବାଜୀ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ତାଙ୍କ ପାଖରେ ଥିଲା ଭଗବାନ ରାମଚନ୍ଦ୍ରଙ୍କର ଏକ ବାଳକମୂର୍ତ୍ତି । ଏହି ମୂର୍ତ୍ତିଟିକୁ

ସେ ପ୍ରାଣଭରି ଭଲ ପାଉଥିଲେ ଏବଂ ଏହି ମୂର୍ତ୍ତିଟିର ବହୁକାଳ ସେବା ଓ ଆରାଧନା କରିବା ଫଳରେ ତାଙ୍କର ମନ ଭାବରାଜ୍ୟରେ ବୁଡ଼ି ରହିଥିଲା ଏବଂ ତାଙ୍କର ଚେତନା ଅନ୍ତର୍ମୁଖ ଓ ତନ୍ମୟାବସ୍ଥା ପ୍ରାପ୍ତ ହୋଇଥିଲା । ଦକ୍ଷିଣେଶ୍ୱର ଆସିବା ପୂର୍ବରୁ ସେ ଅନୁଭବ କରୁଥିଲେ ଯେ, ଶ୍ରୀରାମଚନ୍ଦ୍ରଙ୍କର ଜ୍ୟୋତିଃଘନ ବାଳବିଗ୍ରହ ସତକୁ ସତ ତାଙ୍କର ସମ୍ମୁଖରେ ଆବିର୍ଭୂତ ହୋଇ ତାଙ୍କର ଭକ୍ତିପୂତ ସେବା ଗ୍ରହଣ କରୁଛନ୍ତି । ଭାବରାଜ୍ୟର ଅଦ୍ୱିତୀୟ ଅଧୀଶ୍ୱର ଠାକୁରଙ୍କର ଦୃଷ୍ଟି ଯେତେବେଳେ ତାଙ୍କ ଉପରେ ପଡ଼ିଲା, ସେହି ପ୍ରଥମ ସାକ୍ଷାତ୍‌ରେ ସ୍ଥୂଳ ଯବନିକାର ଅନ୍ତରାଳ ଭେଦ କରି ତାଙ୍କ ଅନ୍ତରର ଗୂଢ଼ ରହସ୍ୟ ଠାକୁରଙ୍କ ଆଗରେ ଧରା ପଡ଼ିଥିଲା । ଠାକୁର କହୁଥିଲେ, "ସେହି ବାବାଜୀ ଏହି ମୂର୍ତ୍ତିଟିର ଚିରକାଳ ସେବା କରିଥିଲେ । ଯେଉଁଆଡ଼େ ଯାଉଥିଲେ, ତାଙ୍କୁ ସାଙ୍ଗରେ ଧରି ଯାଉଥିଲେ । ଯାହା ଭିକ୍ଷାସ୍ୱରୂପ ପାଉଥିଲେ, ରାନ୍ଧିବାଢ଼ି ତାହା ଭୋଗସ୍ୱରୂପ ଅର୍ପଣ କରୁଥିଲେ । କେବଳ ସେତିକି ନୁହେଁ, ସେ ଦେଖିପାରୁଥିଲେ ଯେ ରାମଲାଲା ସତକୁସତ ଖାଉଛନ୍ତି —କିମ୍ବା କୌଣସି ଗୋଟିଏ ଜିନିଷ ଖାଇବାକୁ ଇଚ୍ଛା କରୁଛନ୍ତି, କୁଆଡ଼େ ବୁଲି ଯିବାକୁ ଇଚ୍ଛା କରୁଛନ୍ତି—ଅଳି କରୁଛନ୍ତି; ଏପରି ନାନା ଲୀଳା କରୁଛନ୍ତି । ସେହି ବାବାଜୀ ଏହି ମୂର୍ତ୍ତିଟିକୁ ନେଇ ସର୍ବଦା ଆନନ୍ଦରେ ମତ୍ତ ବିଭୋର ହୋଇ ରହୁଥିଲେ । ମୁଁ ମଧ୍ୟ ଦେଖିପାରୁଥିଲି ଯେ ସତକୁ ସତ ରାମଲାଲା ଏହିଭଳି ସବୁ କରୁଛି । ମୁଁ ସେଥିପାଇଁ ସେ ବାବାଜୀଙ୍କ ପାଖରେ ଚବିଶି ଘଣ୍ଟା ବସି ରହୁଥିଲି—ଆଉ ରାମଲାଲାକୁ ଦେଖୁଥିଲି ! ଦିନପରେ ଦିନ ଆସୁଥାଏ, ଯାଉଥାଏ ଆଉ ରାମଲାଲାର ମଧ୍ୟ ମୋ ଉପରେ ପ୍ରୀତି ବଢ଼ି ଚାଲିଥାଏ । ମୁଁ ଯେତେବେଳପର୍ଯ୍ୟନ୍ତ ବାବାଜୀଙ୍କ ପାଖରେ ରହେ ସେତେବେଳ ଯାଏ ସେ ସେଠାରେ ବେଶ୍ ରହିଥାଏ—ଖେଳ କୌତୁକ କରୁଥାଏ । ଆଉ ମୁଁ ଯେତେବେଳେ ସେଠାରୁ ନିଜ ଘରକୁ ଚାଲିଆସେ, ସେତେବେଳେ ସେ ମଧ୍ୟ ମୋ ସଙ୍ଗେ ସଙ୍ଗେ ଚାଲିଆସେ । ···ମୁଁ ଦେଖୁଥିଲି, ସତକୁ ସତ ଦେଖୁଥିଲି—ଯେପରି ତୁମକୁ ସବୁ ଦେଖୁଛି ଠିକ୍ ସେହିପରି ଭାବରେ ଦେଖୁଥିଲି—ରାମଲାଲ ମୋ ସାଙ୍ଗରେ ଆସୁ ଆସୁ କେତେବେଳେ

ମୋ ଆଗେ ଆଗେ ବା କେତେବେଳେ ମୋ ପଛେ ପଛେ ନାଚି ନାଚି ଆସୁଛି ! କେତେବେଳେ ଅବା ମୋ କୋଳରେ ବସିବାକୁ ଅଳି କରୁଛି । କେବେ କେବେ ମୋ କୋଳ ଭିତରେ ତାକୁ ବସାଇଛି, କିନ୍ତୁ ସେ କୋଳରେ ରହି ଖୁଜୁବୁଜୁ ହେଉଛି—ବାହାରକୁ ପଳାଇ ଯିବାକୁ ଛଟପଟ ହେଉଛି—ତା'ର ଇଚ୍ଛା କୋଳରୁ ଖସିଯାଇ ବାହାରେ ଖରାରେ ଦୌଡ଼ା-ଦୌଡ଼ି କରିବ—କଣ୍ଟା ବଣରେ ପଶି ଫୁଲ ତୋଳିବ—କିମ୍ବା ଗଙ୍ଗାନଦୀ ଭିତରେ ଯାଇ ପାଣିରେ ଡିଆଁ ଡେଇଁ କରିବ !"

ଏହି ରାମଲାଲାଟିର ଅଦ୍‌ଭୁତ ଆଚରଣ ବିଷୟରେ ଠାକୁର ଆହୁରି ବହୁ କଥା କହିଛନ୍ତି—"ଦିନେ ଦିନେ ରନ୍ଧାରନ୍ଧି କରିସାରି ରାମଲାଲାକୁ ଖୁଆଇ ବସିବା ପାଇଁ ବାବାଜୀ ସବୁ ବଢ଼ାବଢ଼ି କରି ଦେଖିଲା ବେଳକୁ ରାମଲାଲା ନାହିଁ, କୁଆଡ଼େ ଅନ୍ତର୍ଦ୍ଧାନ । ବାବାଜୀଙ୍କ ମନ ଖରାପ ହୋଇଯାଏ—ସେ ମୋ ପାଖକୁ ଛୁଟି ଆସନ୍ତି । ଆସି ଦେଖନ୍ତି ଯେ ରାମଲାଲା ଏହି ଘରେ ବସି ଖେଳୁଛି !··· ଏହିପରି ଭାବରେ ଦିନ କଟୁଥାଏ । ସେହି ସାଧୁ ଏଠାରେ ବହୁଦିନ ଥିଲେ—କାରଣ ରାମଲାଲା ଏପାଖ (ଠାକୁରଙ୍କୁ) ଛାଡ଼ି କୁଆଡ଼େ ଯିବାକୁ ଚାହୁଁ ନ ଥିଲା । ଆଉ ସେ ବାବାଜୀ ମଧ୍ୟ ତାଙ୍କର ଚିରକାଳର ଆଦରର ଧନ ରାମଲାଲାକୁ ଛାଡ଼ି କେଉଁଆଡ଼େ ଯାଇପାରୁ ନ ଥିଲେ । ···ତା'ପରେ ଦିନେ ବାବାଜୀ ହଠାତ୍ ଆସି ସଜଳ ନୟନରେ କହିଲେ, 'ରାମଲାଲା ମୋତେ କୃପା କରି ମୋ ପ୍ରାଣର ପିପାସା ମେଣ୍ଟାଇ ମୁଁ ଯେପରି ଭାବେ ଚାହିଁଥିଲି, ସେହି ଭାବରେ ମୋତେ ଦେଖା ଦେଇ କହିଛି ଯେ ସେ ଆଉ ଏଠା ଛାଡ଼ି ଅନ୍ୟ କୁଆଡ଼େ ଯିବ ନାହିଁ । ତୁମକୁ ଛାଡ଼ି ସେ ଅନ୍ୟ କେଉଁଆଡ଼େ ଯିବାକୁ ଚାହୁଁନାହିଁ । ମୋର ମଧ୍ୟ ଆଉ ବର୍ତ୍ତମାନ ମନରେ କିଛି ସନ୍ତାପ ନାହିଁ, କିଛି କଷ୍ଟ ନାହିଁ । ତୁମ ପାଖରେ ସେ ବେଶ୍ ସୁଖରେ ଅଛି, ଆନନ୍ଦରେ ଖେଳବୁଲ କରୁଛି, ସେତିକି ଦେଖି ମୋର ହୃଦୟ ଆନନ୍ଦରେ ଭରି ଯାଉଛି । ମୋର ବର୍ତ୍ତମାନ ଏପରି ଅବସ୍ଥା ଯେ ମୁଁ ଭାବୁଛି—ତା'ର ଯେଉଁଥିରେ ସୁଖ ମୋର ମଧ୍ୟ ସେଥିରେ ଆନନ୍ଦ । ସେଥିପାଇଁ ମୁଁ ବର୍ତ୍ତମାନ ତାକୁ ତୁମ ପାଖରେ ଛାଡ଼ିଦେଇ ଅନ୍ୟତ୍ର ଚାଲିଯାଇପାରିବି । ତୁମ ପାଖରେ

ସେ ସୁଖରେ ଅଛୁ—ଏତିକି ଭାବି, ସେହି ବିଷୟ ଧ୍ୟାନ କରି ମୋତେ ଯଥେଷ୍ଟ ଆନନ୍ଦ ମିଳିବ ।' ଏହା କହି ସେ ରାମଲାଲାଙ୍କୁ ମୋ ପାଖରେ ଛାଡ଼ିଦେଇ ଏଠାରୁ ବିଦାୟ ନେଇ ଚାଲିଗଲେ । ସେହି ଦିନଠାରୁ ରାମଲାଲା ଏଠାରେ ରହିଛନ୍ତି ।''*

---

* ପ୍ରସଙ୍ଗକ୍ରମେ କୁହାଯାଇପାରେ ଯେ କୁଳଦେବତା ଶ୍ରୀରଘୁବୀରଙ୍କ ପୂଜା ଓ ସେବାଦି ଯଥାରୀତି ସମ୍ପନ୍ନ କରିବା ନିମିତ୍ତ ଠାକୁର ରାମମନ୍ତ୍ରରେ ଦୀକ୍ଷିତ ହୋଇଥିଲେ ମଧ୍ୟ ଜଟାଧାରୀଙ୍କ ଆଗମନ କାଳରେ ଅନ୍ତରର ଭାବର ପ୍ରେରଣାରେ ଗୁରୁମୁଖରୁ ଶାସ୍ତ୍ରବିହିତ ବାତ୍ସଲ୍ୟରସ ସାଧନୋଚିତ ମନ୍ତ୍ର ଗ୍ରହଣପୂର୍ବକ ଏହାର ଚରମ ଉପଲବ୍‌ଧି ପାଇଁ ବ୍ୟାକୁଳ ହୋଇ ଉଠିଥିଲେ । ଗୋପାଳମନ୍ତ୍ରରେ ସିଦ୍ଧକାମ ଜଟାଧାରୀ ତାଙ୍କର ଏଭଳି ଆଗ୍ରହ ବୁଝିପାରି ଅତି ଆନନ୍ଦର ସହିତ ନିଜ ଇଷ୍ଟମନ୍ତ୍ରରେ ତାଙ୍କୁ ଦୀକ୍ଷିତ କରିଥିଲେ ଏବଂ ଠାକୁର ଏହି ମନ୍ତ୍ରର ସହାୟତାରେ ତାଙ୍କଦ୍ୱାରା ପ୍ରଦର୍ଶିତ ମାର୍ଗରେ ସାଧନା-ନିମଗ୍ନ ହୋଇ କେତେଦିନ ଭିତରେ ଶ୍ରୀରାମଚନ୍ଦ୍ରଙ୍କ ବାଳଗୋପାଳ ମୂର୍ତ୍ତିର ଅନୁକ୍ଷଣ ଦିବ୍ୟଦର୍ଶନ ଲାଭରେ ସମର୍ଥ ହୋଇଥିଲେ । ସେହି କଥାଟି ସଂକ୍ଷେପରେ ଆମେ ବର୍ଣ୍ଣନା କରୁଛୁ ମାତ୍ର ।

## ଦ୍ୱାଦଶ ଅଧ୍ୟାୟ

# ମଧୁରଭାବ ଓ ଅଦ୍ୱୈତ ସାଧନା

ଠାକୁରଙ୍କ ମନରେ ଏକାଗ୍ରଭାବରେ ଯେଉଁ ଭାବର ଉଦୟ ହୁଏ, ସେଥିରେ ସେ କିଛିକାଳ ଲାଗି ତନ୍ମୟ ହୋଇ ରହନ୍ତି । ସେତେବେଳେ ସେହି ଗୋଟିଏ ଭାବ ହିଁ ତାଙ୍କର ମନକୁ ସମ୍ପୂର୍ଣ୍ଣଭାବରେ ଅଧିକାର କରିବସେ ଓ ଅନ୍ୟସବୁ ଭାବ ସେହି ସମୟ ପାଇଁ ତାଙ୍କ ମନରୁ ଲୁପ୍ତ ହୋଇଯାଏ । ଆଉ ଗୋଟିଏ ଅଦ୍ଭୁତ କଥା ହେଲା—ଏହି ବିଶେଷ ଭାବାଧିକାର ବେଳେ ଠାକୁରଙ୍କ ଶରୀରରେ ବିଶେଷ ପରିବର୍ତ୍ତନ ଦେଖା ଦିଏ ଓ ସେହି ଭାବର ଲକ୍ଷଣଗୁଡ଼ିକ ଶରୀରରେ ପ୍ରକଟିତ ହୋଇ ରହେ । ଏହିପରି ଭାବରେ ଠାକୁର ଶାନ୍ତ, ଦାସ୍ୟ, ସଖ୍ୟାଦି ଭାବଚତୁଷ୍ଟୟ ସାଧନାରେ ସିଦ୍ଧିଲାଭ କଲେ । ତା'ପରେ ଭାବରାଜ୍ୟର ସର୍ବୋଚ୍ଚ ସାଧନ ମଧୁରଭାବ-ସାଧନରେ ସିଦ୍ଧି ପାଇବା ଲାଗି ସେ ବ୍ୟାକୁଳ ହୋଇଉଠିଲେ ! ଏହି ଭାବସାଧନାରେ ପ୍ରବୃତ୍ତ ହୋଇ ଠାକୁର ସ୍ତ୍ରୀ-ଜନୋଚିତ ବେଶଭୂଷା ଧାରଣା କଲେ ଏବଂ ଏହିରୂପ ବେଶଭୂଷାରେ ସଜ୍ଜିତ ହୋଇ ଶ୍ରୀହରିଙ୍କ ପ୍ରେମୈକଲୋଲୁପା ବ୍ରଜରମଣୀଙ୍କ ଭାବରେ କ୍ରମେ ସେ ଏତେଦୂର ନିମଗ୍ନ ହୋଇଗଲେ ଯେ, ନିଜପ୍ରତି ତାଙ୍କର ପୁରୁଷବୋଧ ସମ୍ପୂର୍ଣ୍ଣ ଅନ୍ତର୍ହିତ ହୋଇଗଲା ଏବଂ ତାଙ୍କର ପ୍ରତିଟି ଚିନ୍ତା ଓ ବାକ୍ୟାଦି ରମଣୀସୁଲଭ ହୋଇଗଲା । ଏହି ମଧୁରଭାବ-ସାଧନା କାଳରେ ସେ ଛଅମାସ କାଳ ରମଣୀବେଶ ଧାରଣ କରି ରହିଥିଲେ । ଶ୍ରୀକୃଷ୍ଣଙ୍କ ଦର୍ଶନ ଓ ତାଙ୍କୁ ନିଜର ବଲ୍ଲଭରୂପେ ପାଇବାର ଲାଳସା କରି ଠାକୁର ବର୍ତ୍ତମାନ ଅନନ୍ୟଚିତ୍ତରେ ଶ୍ରୀଶ୍ରୀଯୁଗଳ-ପାଦପଦ୍ମର ସେବାରେ ରତ ହେଲେ । କ୍ରମେ ତାଙ୍କର ଶ୍ରୀକୃଷ୍ଣ-ବିରହଭାବ ଏତେ ପ୍ରବଳ ହେଲା ଯେ ତା'ର ପ୍ରଭାବରେ ତାଙ୍କ ଶରୀରର ଲୋମକୂପ ଭିତର ଦେଇ ବେଳେବେଳେ ବିନ୍ଦୁ ବିନ୍ଦୁ ରକ୍ତ ନିର୍ଗତ ହେଉଥିଲା; ଦେହର ପ୍ରତି ଗ୍ରନ୍ଥି ଭଗ୍ନପ୍ରାୟ ହୋଇ

ଯାଇଥିଲା; ସମଗ୍ର ଶରୀର ଶିଥିଳ ହୋଇ ପଡ଼ିଥିଲା ଏବଂ ହୃଦୟର ଅସୀମ ଯନ୍ତ୍ରଣାରେ ଇନ୍ଦ୍ରିୟଗୁଡ଼ିକ ନିଜନିଜ କ୍ରିୟାରୁ ବିରତ ହୋଇ ପଡ଼ିଥିଲେ । ସେଥିଲାଗି ବେଳେବେଳେ ଠାକୁର ମୃତପ୍ରାୟ ନିଶ୍ଚେଷ୍ଟ ଓ ସଂଜ୍ଞାଶୂନ୍ୟ ହୋଇ ଭୂମି ଉପରେ ପଡ଼ିରହୁଥିଲେ ।

କିନ୍ତୁ ମହାଭାବସ୍ୱରୂପିଣୀ ଶ୍ରୀମତୀ ରାଧାରାଣୀଙ୍କ କୃପାଲାଭ ନ କଲେ ଶ୍ରୀକୃଷ୍ଣଙ୍କ ଦର୍ଶନ ଅସମ୍ଭବ—ଏ କଥା ବୁଝିପାରି ଠାକୁର ବର୍ତ୍ତମାନ ତଦ୍‌ଗତ ଚିତ୍ତରେ ତାଙ୍କର ଉପାସନାରେ ପ୍ରବୃତ୍ତ ରହିଲେ । ତାଙ୍କର ପ୍ରେମଘନ-ମୂର୍ତ୍ତିର ସ୍ମରଣମନନ ଓ ଧ୍ୟାନରେ ନିରନ୍ତର ମଗ୍ନ ହୋଇ ତାଙ୍କର ଶ୍ରୀପାଦ-ପଦ୍ମରେ ହୃଦୟର ଆକୁଳ ଆବେଗ ଅବିରାମ ନିବେଦନ କରିବାକୁ ଲାଗିଲେ । ଫଳରେ ଅଳ୍ପ କିଛିଦିନ ଭିତରେ ସେ ଶ୍ରୀରାଧାଙ୍କ ଦର୍ଶନ ଲାଭ କଲେ । ଅନ୍ୟାନ୍ୟ ଦେବଦେବୀଙ୍କ କ୍ଷେତ୍ରରେ ଠାକୁର ଏହାପୂର୍ବରୁ ଯେପରି ପ୍ରତ୍ୟକ୍ଷ କରିଥିଲେ, ସେହିପରି ଏହି ଦର୍ଶନ କାଳରେ ମଧ୍ୟ ଏହି ମୂର୍ତ୍ତି ଠାକୁରଙ୍କ ନିଜ ଅଙ୍ଗରେ ସମ୍ମିଳିତ ହୋଇଗଲେ । ଏହି ଦର୍ଶନ ପରେ ଠାକୁର କିଛିଦିନପାଇଁ ନିଜକୁ ଶ୍ରୀମତୀରୂପେ ଉପଲବ୍ଧି କରିବାକୁ ଲାଗିଲେ । ନିଜକୁ ପ୍ରକୃତି ବୋଲି ଭାବି ଭାବି ସେ ଏହି ସମୟରେ ଏତେ ଦୂର ତନ୍ମୟ ହୋଇଯାଇଥିଲେ ଯେ ସ୍ୱପ୍ନରେ ବା ଭ୍ରମରେ ମଧ୍ୟ କେବେହେଲେ ନିଜକୁ ପୁରୁଷ ବୋଲି ଭାବି ପାରୁନଥିଲେ । ଏହିପରି ଠାକୁରଙ୍କର ପତିଭାବରେ ଈଶ୍ୱରପ୍ରେମ ବର୍ତ୍ତମାନ ପରିଶୁଦ୍ଧ ଓ ଘନୀଭୂତ ହୋଇଉଠିଲା ଏବଂ ସେ ପୂର୍ବୋକ୍ତ ପ୍ରକାରେ ବ୍ରଜେଶ୍ୱରୀ ଶ୍ରୀମତୀ ରାଧାରାଣୀଙ୍କ କୃପା ଅନୁଭବ କରି ଏହି ପ୍ରେମର ପ୍ରଭାବରେ ସ୍ୱଳ୍ପକାଳ ମଧ୍ୟରେ ସଚ୍ଚିଦାନନ୍ଦଘନବିଗ୍ରହ ଭଗବାନ ଶ୍ରୀକୃଷ୍ଣଙ୍କର ପୁଣ୍ୟ ଦର୍ଶନ ଲାଭ କରିବାକୁ ସମର୍ଥ ହେଲେ । ଶ୍ରୀକୃଷ୍ଣଙ୍କର ଏହି ଦିବ୍ୟମୂର୍ତ୍ତି ଅନ୍ୟାନ୍ୟ ଦୈବୀ ଅଭିଜ୍ଞତା ଭଳି ତାଙ୍କ ଶ୍ରୀଅଙ୍ଗରେ ମିଳିତ ହୋଇ ଯାଇଥିଲା । ଏ ସମ୍ବନ୍ଧରେ ଠାକୁର କହିଥିଲେ—ଏହି କାଳରେ ଶ୍ରୀକୃଷ୍ଣଙ୍କ ଚିନ୍ତାରେ ସମ୍ପୂର୍ଣ୍ଣ ତନ୍ମୟ ହୋଇ ସେ ନିଜ ପୃଥକ୍ ଅସ୍ତିତ୍ୱବୋଧ ହରାଇ କେବେ ଆପଣାକୁ ଭଗବାନ ଶ୍ରୀକୃଷ୍ଣ ବୋଲି ବୋଧ କରୁଥିଲେ ତ କେତେବେଳେ ଆବ୍ରହ୍ମସ୍ତମ୍ଭ ପର୍ଯ୍ୟନ୍ତ ସମସ୍ତଙ୍କୁ ଶ୍ରୀକୃଷ୍ଣ-ବିଗ୍ରହରୂପେ ଦର୍ଶନ କରୁଥିଲେ ।

ଏହି ମଧୁରଭାବର ସାଧନା ସମୟରେ ଠାକୁରଙ୍କର ଆଉ ଗୋଟିଏ ଦିବ୍ୟ ଦର୍ଶନ ହୋଇଥିଲା । ଥରେ ବିଷ୍ଣୁମନ୍ଦିର ସମ୍ମୁଖସ୍ଥ ବେଦୀ ଉପରେ ବସି ସେ ଶ୍ରୀମଦ୍ଭାଗବତ ପାଠ ଶ୍ରବଣ କରୁଥିଲେ । ଶ୍ରବଣ କରୁକରୁ ହଠାତ୍ ତାଙ୍କର ଭାବାବେଶ ହୋଇଗଲା ଏବଂ ସେ ଭଗବାନ ଶ୍ରୀକୃଷ୍ଣଙ୍କର ଜ୍ୟୋତିର୍ମୟ ମୂର୍ତ୍ତି ପ୍ରତ୍ୟକ୍ଷ କଲେ । ଠିକ୍ ପରେ ପରେ ସେ ପୁଣି ଦେଖିଲେ ଯେ ଏହି ମୂର୍ତ୍ତିଙ୍କର ପାଦପଦ୍ମରୁ ଗୋଟିଏ ଜ୍ୟୋତିରେଖା ବହିର୍ଗତ ହୋଇ ପ୍ରଥମେ ଭାଗବତ ଗ୍ରନ୍ଥକୁ ସ୍ପର୍ଶ କଲା ଏବଂ ପରେପରେ ତାଙ୍କ ନିଜର ବକ୍ଷଦେଶରେ ସଂଲଗ୍ନ ହୋଇ ଏହି ତିନୋଟି ବସ୍ତୁକୁ କିଛି ସମୟ ଏକତ୍ର ସଂଯୁକ୍ତ କରି ରଖିଲା । ଠାକୁର ଏହି ଅଭିଜ୍ଞତା ସଂପର୍କରେ କହିଛନ୍ତି ଯେ ସେ ଏହି ଦୃଶ୍ୟ ଦେଖିବା ପରେ ତାଙ୍କର ମନରେ ଦୃଢ଼ ଧାରଣା ହେଲା ଯେ ଭାଗବତ, ଭକ୍ତ ଓ ଭଗବାନ—ତିନୋଟି ଭିନ୍ନ ରୂପରେ ପ୍ରକାଶିତ ହୋଇଥିଲେ ମଧ୍ୟ ଏକ ପଦାର୍ଥ ବା ଏକ ପଦାର୍ଥର ପ୍ରକାଶସଂଭୂତ । ଭାଗବତ, ଭକ୍ତ ଓ ଭଗବାନ—ତିନହେଁ ଏକ, ଏକ ପୁଣି ତିନ ।

ମଧୁରଭାବରେ ସିଦ୍ଧ ହୋଇ ଠାକୁର ଭାବସାଧନାର ଚରମ ଭୂମିରେ ଉପନୀତ ହୋଇଥିଲେ । ଏହାପରେ ଠାକୁରଙ୍କ ମନରେ ସର୍ବଭାବାତୀତ ବେଦାନ୍ତପ୍ରସିଦ୍ଧ ଅଦ୍ୱୈତଭାବସାଧନର ପ୍ରବଳ ପ୍ରେରଣା ଆସି ଉପସ୍ଥିତ ହେଲା । ସେ ସମ୍ବନ୍ଧରେ ଠାକୁର କହିଛନ୍ତି, "ସମୁଦ୍ର କୂଳରେ ଯେଉଁ ବ୍ୟକ୍ତି ସର୍ବଦା ବାସ କରେ, ତା'ର ମନରେ ଯେପରି ବେଳେବେଳେ ବାସନାର ଉଦୟ ହୁଏ ଯେ ରତ୍ନାକର-ଗର୍ଭରେ କେତେପ୍ରକାର ରତ୍ନ ଅଛି, ତାହା କିପରି ସେ ଦେଖିଆସନ୍ତା, ସେହିପରି ମା'ଙ୍କୁ ପାଇ ମଧ୍ୟ, ମାଆଙ୍କ ନିକଟରେ ସର୍ବଦା ଥାଇ ମଧ୍ୟ ମୋର ସେତେବେଳେ ଇଚ୍ଛା ହେଉଥିଲା ଅନନ୍ତଭାବମୟୀ ଅନନ୍ତରୂପିଣୀ ତାଙ୍କୁ ନାନାଭାବରେ ଏବଂ ନାନାରୂପରେ କିପରି ଦେଖିବ !"

ଶ୍ରୀଶ୍ରୀଜଗଦମ୍ବାଙ୍କ ଇଙ୍ଗିତରେ ଯେ ଠାକୁର ବର୍ତ୍ତମାନ ଅଦ୍ୱୈତ ସାଧନାରେ ଅଗ୍ରସର ହୋଇଥିଲେ, ଏହା ପରିବ୍ରାଜକାଗ୍ରଣୀ ଶ୍ରୀମତ୍ ତୋତାପୁରୀଙ୍କ ଦକ୍ଷିଣେଶ୍ୱର ଆଗମନରୁ ହିଁ ସମ୍ୟକ୍‌ରୂପେ ବୁଝିହୁଏ । ଏହି

ତୋତାପୁରୀ ପୁଣ୍ୟତୋୟା ନର୍ମଦା ନଦୀତୀରରେ ବହୁକାଳ ଏକାନ୍ତ ବାସ କରି, ସାଧନଭଜନରେ ନିମଗ୍ନ ରହି ନିର୍ବିକଳ୍ପ ସମାଧିପଥରେ ବ୍ରହ୍ମ-ସାକ୍ଷାତ୍‌କାର କରିଥିଲେ । କୁରୁକ୍ଷେତ୍ର ନିକଟରେ ଲୁଧିୟାନା ନାମକ ସ୍ଥାନରେ ଥିଲା ତାଙ୍କର ଗୁରୁକ୍ଷେତ୍ର । ତାଙ୍କ ଗୁରୁ ମଧ୍ୟ ଜଣେ ବିଖ୍ୟାତ ଯୋଗୀ ପୁରୁଷ ଥିଲେ ଏବଂ ଏହି ସ୍ଥାନରେ ଗୋଟିଏ ମଠ ସ୍ଥାପନ କରିଥିଲେ । ଗୁରୁଙ୍କର ଦେହାନ୍ତ ହେବା ପରେ ଶ୍ରୀମତ୍ ତୋତାପୁରୀ ଏହି ମଠର ମହନ୍ତ-ପଦରେ ପ୍ରତିଷ୍ଠିତ ହୋଇଥିଲେ । ବ୍ରହ୍ମଜ୍ଞ ହେବା ପରେ ତାଙ୍କ ମନରେ କିଛିଦିନ ଲାଗି ଯଦୃଚ୍ଛା ପରିଭ୍ରମଣରେ ସଂକଳ୍ପ ଉଦିତ ହେଲା । ସେହି ପ୍ରେରଣାରେ ସେ ପୂର୍ବଭାରତ ପରିଭ୍ରମଣରେ ବାହାରିଗଲେ ଏବଂ ବହୁତୀର୍ଥ ପରିକ୍ରମା କଲେ । ସାଗରସଙ୍ଗମରେ ସ୍ନାନ କରି ସେ ପୁରୁଷୋତ୍ତମକ୍ଷେତ୍ରକୁ ଯାଇ ଜଗନ୍ନାଥଦେବଙ୍କ ଦର୍ଶନ କଲେ । ତା'ପରେ ଭାରତର ଉତ୍ତର-ପଶ୍ଚିମାଞ୍ଚଳକୁ ଫେରିବା ସମୟରେ (୧୮୬୪ ଖ୍ରୀ:ରେ) ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । କୌଣସି ଗୋଟିଏ ସ୍ଥାନରେ ତିନିଦିନରୁ ଅଧିକ ଅବସ୍ଥାନ କରିବା ତାଙ୍କର ନିୟମ ନ ଥିଲା । ସେଥିପାଇଁ କାଳୀବାଡ଼ିରେ ମଧ୍ୟ ସେ ତିନି ଦିନରୁ ଅଧିକ କାଳ ରହିବେ ନାହିଁ ବୋଲି ସ୍ଥିର କରିଥିଲେ । ପ୍ରଥମେ ସେ ଯେତେବେଳେ କାଳୀବାଡ଼ିରେ ପହଞ୍ଚିଲେ, ତାଙ୍କର ଦୃଷ୍ଟି ପଡ଼ିଲା ଗଙ୍ଗା-ଘାଟର ଚାନ୍ଦନୀ ଉପରେ ଗୋଟିଏ ପାଖରେ ଅନ୍ୟମନା ହୋଇ ବସିଥିବା ଠାକୁରଙ୍କ ଉପରେ । ଠାକୁରଙ୍କର ତପୋଦୀପ୍ତ ଭାବୋଜ୍ଜ୍ୱଳ ମୁଖମଣ୍ଡଳରେ ଦୃଷ୍ଟି ପଡ଼ିବାମାତ୍ରେ ଶ୍ରୀମତ୍ ତୋତାପୁରୀ ନିଜ ପ୍ରାଣରେ ଅନୁଭବ କଲେ— ଏହି ବ୍ୟକ୍ତି ସାମାନ୍ୟ ପୁରୁଷ ହୋଇ ନ ପାରନ୍ତି । ବେଦାନ୍ତସାଧନ ଲାଗି ଏଭଳି ଉତ୍ତମ ଅଧିକାରୀ ଅତ୍ୟନ୍ତ ବିରଳ । ତନ୍ତ୍ରପ୍ରାଣ ବଙ୍ଗଦେଶରେ ବେଦାନ୍ତର ଏତାଦୃଶ ଅଧିକାରୀ ଅଛନ୍ତି ଭାବି ସେ ବିସ୍ମୟରେ ଅଭିଭୂତ ହୋଇଗଲେ । ଠାକୁରଙ୍କୁ ବିଶେଷଭାବରେ ନିରୀକ୍ଷଣପୂର୍ବକ ସ୍ୱତଃପ୍ରଣୋଦିତ ହୋଇ ପଚାରିଲେ, "ତୁମକୁ ଉତ୍ତମ ଅଧିକାରୀ ବୋଲି ମନେହେଉଛି, ତୁମେ ବେଦାନ୍ତସାଧନ କରିବ କି ?" ଜଟାଜୂଟଧାରୀ ଦୀର୍ଘବପୁ ଉଲଗ୍ନ ସନ୍ନ୍ୟାସୀଙ୍କ ମୁଖରୁ ଏହି ପ୍ରଶ୍ନ ଶୁଣି ଠାକୁର ଉତ୍ତର ଦେଲେ, "କ'ଣ

କରିବି ନ କରିବି, ମୁଁ କିଛି ଜାଣେ ନାହିଁ—ମୋର ମା' ସବୁ ଜାଣନ୍ତି, ସେ ଆଦେଶ କଲେ କରିବି ।'' ଶ୍ରୀମତ୍ ତୋତା କହିଲେ, "ତେବେ ଯାଅ, ତୁମର ମା'ଙ୍କୁ ଏ ବିଷୟରେ ପଚାରି ଆସ । କାରଣ, ମୁଁ ଏଠାରେ ଦୀର୍ଘଦିନ ରହିପାରିବି ନାହିଁ ।'' ଠାକୁର ଏହି କଥା ଶୁଣି ଧୀରେଧୀରେ ଶ୍ରୀଶ୍ରୀଜଗଦମ୍ବାଙ୍କ ମନ୍ଦିରରେ ଉପସ୍ଥିତ ହେଲେ ଏବଂ ଭାବାବିଷ୍ଟ ହୋଇ ଶ୍ରୀଶ୍ରୀଜଗନ୍ମାତାଙ୍କ •ବାଣୀ ଶୁଣିବାକୁ ପାଇଲେ—"ଯାଅ ଶିକ୍ଷା କର । ତୁମକୁ ଶିଖାଇବା ପାଇଁ ଏ ସନ୍ନ୍ୟାସୀ ଏଠାକୁ ଆଗମନ କରିଛନ୍ତି ।''

ଏହା ଶୁଣି ଅର୍ଦ୍ଧବାହ୍ୟଭାବାବିଷ୍ଟ ଠାକୁର ହର୍ଷୋତ୍‌ଫୁଲ୍ଲ ବଦନରେ ତୋତାପୁରୀଙ୍କ ପାଖରେ ଆସି ପହଞ୍ଚି କହିଲେ, "ମା ସମ୍ମତି ଦେଇଛନ୍ତି ।'' ତୋତାପୁରୀ ଠିକ୍ ବୁଝିନେଲେ ଯେ ଏ ମା' ଆଉ କେହି ନୁହେଁ, ଏ ହେଉଛନ୍ତି ମନ୍ଦିର ଭିତରେ ପ୍ରତିଷ୍ଠିତା ଦେବୀମୂର୍ତ୍ତି । ପ୍ରେମରେ ସେ ତାଙ୍କୁ ଏପରି ମାତୃ-ସମ୍ବୋଧନ କରୁଛନ୍ତି ।

ଅବଶ୍ୟ ଠାକୁରଙ୍କର ଏହି ଶିଶୁସୁଲଭ ସରଳଭାବ ତୋତାପୁରୀଙ୍କୁ ଭଲ ଲାଗିଲା, କିନ୍ତୁ ବେଦାନ୍ତବାଦୀ ଜ୍ଞାନୀପ୍ରବର ତୋତାପୁରୀଙ୍କ ମାୟାଚ୍ଛିନ୍ନ ଦୃଷ୍ଟିରେ ଏ ପ୍ରକାର ଆଚରଣ ଅଜ୍ଞତା ଓ କୁସଂସ୍କାରପ୍ରସୂତ ବ୍ୟାପାର ଛଡ଼ା ଆଉ କିଛି ନୁହେଁ । ମାତ୍ର ସହସା ସେ ଠାକୁରଙ୍କୁ ଆଉ କିଛି କହିଲେ ନାହିଁ । ସେ ଭାବିଲେ ଯେ ତାଙ୍କଠାରୁ ଦୀକ୍ଷା ନେଇ ଜ୍ଞାନମାର୍ଗରେ ସାଧନ ଆରମ୍ଭ କଲେ, ଏସବୁ ଅଜ୍ଞତା ଓ କୁସଂସ୍କାର ନିଶ୍ଚୟ ଦୂରୀଭୂତ ହୋଇଯିବ । ସେ ଠାକୁରଙ୍କୁ କହିଲେ, "ବେଦାନ୍ତସାଧନରେ ଉପଦିଷ୍ଟ ଓ ପ୍ରବୃତ୍ତ ହେବା ଆଗରୁ ତୁମକୁ ଶିଖାସୂତ୍ର ପରିତ୍ୟାଗ କରିବାକୁ ପଡ଼ିବ ଓ ଶାସ୍ତ୍ରବିଧି ଅନୁଯାୟୀ ସନ୍ନ୍ୟାସ ଗ୍ରହଣ କରିବାକୁ ପଡ଼ିବ ।'' ଠାକୁର ଏହା ଶୁଣି କହିଲେ, "ଯଦି ଏହା ଗୋପନରେ କରାଯାଇପାରେ, ତେବେ ସନ୍ନ୍ୟାସ ଗ୍ରହଣ କରିବାରେ ମୋର ଆପତ୍ତି ନାହିଁ । ମାତ୍ର ପ୍ରକାଶ୍ୟରେ ଏଭଳି କଲେ ମୋର ଶୋକ-ସନ୍ତପ୍ତା ବୃଦ୍ଧା ଜନନୀଙ୍କ ପ୍ରାଣରେ ଖୁବ୍ ଆଘାତ ଲାଗିବ । ତେଣୁ ପ୍ରକାଶ୍ୟରେ ଏହା ମୁଁ କରିପାରିବି ନାହିଁ ।

ତୋତାପୁରୀ ଠାକୁରଙ୍କର ଅଭିପ୍ରାୟ ବୁଝିପାରି କହିଲେ, "ଉତ୍ତମ କଥା । ଶୁଭ ମୁହୂର୍ତ୍ତ ଉପସ୍ଥିତ ହେଲେ ତୁମକୁ ଗୋପନରେ ହିଁ ଦୀକ୍ଷା ଦେବି ।" ଏହା କହି ସେ ପଞ୍ଚବଟୀ ତଳେ ଆସି ଆସନ ବିସ୍ତୀର୍ଣ୍ଣ କଲେ ।

ତା'ପରେ ଶୁଭ ଦିନର ଉଦୟ ଜାଣି ଶ୍ରୀମତ୍ ତୋତା ଠାକୁରଙ୍କୁ ପିତୃପୁରୁଷମାନଙ୍କ ତୃପ୍ତି ନିମିତ୍ତ ଶ୍ରାଦ୍ଧାଦି କ୍ରିୟା ସମ୍ପନ୍ନ କରିବାକୁ ଆଦେଶ ଦେଲେ ଏବଂ ଏହି କାର୍ଯ୍ୟ ସମାଧା ହେଲାପରେ ଶିଷ୍ୟଙ୍କର ନିଜ ଆତ୍ମାର ତୃପ୍ତି ଲାଗି ଯଥାବିଧାନ ପିଣ୍ଡଦାନ କରାଇଲେ । ଶ୍ରାଦ୍ଧାଦି ପରେ ସେ ପଞ୍ଚ-ବଟୀର ନିଜ ସାଧନ-କୁଟୀରରେ ଗୁରୁନିର୍ଦ୍ଦିଷ୍ଟ ଦ୍ରବ୍ୟସବୁ ଆହରଣ କରି ଆନନ୍ଦରେ ଶୁଭ ମୁହୂର୍ତ୍ତର ପ୍ରତୀକ୍ଷା କରି ରହିଲେ । କ୍ରମେ ରଜନୀର ଅବସାନ ହେଲା, ଶୁଭ ବ୍ରାହ୍ମମୁହୂର୍ତ୍ତରେ ଗୁରୁ ଓ ଶିଷ୍ୟ ଉଭୟେ କୁଟୀର ମଧ୍ୟକୁ ସମାଗତ ହେଲେ । ପୂର୍ବକୃତ୍ୟ ସମାପ୍ତ ହେଲା । ହୋମାଗ୍ନି ପ୍ରଜ୍ୱଳିତ ହେଲା । ତା'ପରେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସର୍ବସ୍ୱ ତ୍ୟାଗରୂପକ ଯେଉଁ ବ୍ରତ ସନାତନ କାଳରୁ ଗୁରୁପରମ୍ପରାଗତ ହୋଇ ଭାରତବର୍ଷକୁ ବର୍ତ୍ତମାନ ମଧ୍ୟ ବ୍ରହ୍ମଙ୍କ ପଦବୀରେ ସୁପ୍ରତିଷ୍ଠିତ କରି ରଖିଅଛି, ସେହି ତ୍ୟାଗବ୍ରତା-ବଲମ୍ବନର ପୂର୍ବାଙ୍ଗୀୟ ମନ୍ତ୍ରଗୁଡ଼ିକର ସୁଗମ୍ଭୀର ଧ୍ୱନିରେ ପଞ୍ଚବଟୀ-ଉପବନ ମୁଖରିତ ହୋଇଉଠିଲା । ଗୁରୁ ମନ୍ତ୍ରପାଠରେ ପ୍ରବୃତ୍ତ ହେଲେ । ଶିଷ୍ୟ ଅବହିତ ଚିତ୍ତରେ ତାଙ୍କୁ ଅନୁସରଣପୂର୍ବକ ସେହିସବୁ କଥା ଉଚ୍ଚାରଣ କରି ସମିଧ-ହୁତାଶନରେ ଆହୁତି ପ୍ରଦାନ କରିବାକୁ ଲାଗିଲେ । ବହୁ ଆହୁତି ପ୍ରଦତ୍ତ ହେଲାପରେ "ଭୂରାଦିଲୋକ [ଭୂର୍ଭୁବଃସ୍ୱ- ମହଃଜନତପଃ ସତ୍ୟ ଆଦି ସପ୍ତଲୋକ] ଲାଭର ପ୍ରତ୍ୟାଶା ମୁଁ ଏହି ମୁହୂର୍ତ୍ତରେ ତ୍ୟାଗ କଲି" ଏବଂ "ଜଗତରେ ସର୍ବଭୂତଙ୍କୁ ମୁଁ ଅଭୟ ପ୍ରଦାନ କରୁଅଛି"—ଏହା କହିବା ପରେ ହୋମ ପରିସମାପ୍ତ ହେଲା । ତା'ପରେ ଠାକୁର ନିଜ ଅନୁଯାୟୀ ଶିଖାସୂତ୍ର ମଧ୍ୟ ଆହୁତି ଦେଲେ । ଆହୁତି ସମାପନାନ୍ତେ ଆବହମାନ କାଳରୁ ସାଧକପରମ୍ପରାନିଷେବିତ ଗୁରୁପ୍ରଦତ୍ତ କୌପୀନ, କାଷାୟ ଓ ନାମଦ୍ୱାରା ଭୂଷିତ ହୋଇ ଠାକୁର ଶ୍ରୀମତ୍ ତୋତାଙ୍କ ନିକଟରୁ ଉପଦେଶ ଗ୍ରହଣ ଲାଗି ଉପବିଷ୍ଟ ହେଲେ ।

ତା' ପରେ ବ୍ରହ୍ମଜ୍ଞ ତୋତା ଠାକୁରଙ୍କୁ ବେଦାନ୍ତ-ପ୍ରସିଦ୍ଧ 'ନେତି ନେତି'ର ଉପାୟ ଅବଲମ୍ବନ କରି ବ୍ରହ୍ମସ୍ୱରୂପରେ ଅବସ୍ଥାନ ନିମିତ୍ତ ଉତ୍ସାହିତ କରିବାକୁ ଲାଗିଲେ । କହିଲେ, "ନିତ୍ୟଶୁଦ୍ଧବୁଦ୍ଧମୁକ୍ତସ୍ୱଭାବ, ଦେଶ-କାଳାଦିଦ୍ୱାରା ଅପରିଚ୍ଛିନ୍ନ ଏକମାତ୍ର ବ୍ରହ୍ମବସ୍ତୁ ହିଁ ନିତ୍ୟ ସତ୍ୟ । ଅଘଟନ-ଘଟନ-ପଟୀୟସୀ ମାୟା ନିଜ ପ୍ରଭାବରେ ତାଙ୍କୁ ନାମରୂପଦ୍ୱାରା ଖଣ୍ଡିତବତ୍ ପ୍ରତୀତ କରାଇଲେ ମଧ୍ୟ ସେ ବାସ୍ତବରେ ତାହା ନୁହନ୍ତି । କାରଣ ସମାଧିସ୍ଥ ହେବା ସମୟରେ ମାୟାଜନିତ ଦେଶକାଳ ବା ନାମରୂପର ବିନ୍ଦୁମାତ୍ର ଉପଲବ୍ଧି ହୁଏ ନାହିଁ । ଅତଏବ ନାମରୂପର ସୀମା ମଧ୍ୟରେ ଯାହା କିଛି ଅବସ୍ଥିତ ତାହା କେବେହେଲେ ନିତ୍ୟବସ୍ତୁ ହୋଇ ନ ପାରେ । ନାମରୂପର ଏହି ଦୃଢ଼ ପିଞ୍ଜରକୁ ସିଂହବିକ୍ରମରେ ଭେଦ କରି ନିର୍ଗତ ହୋଇଯାଅ । ଆପଣାଠାରେ ଅବସ୍ଥିତ ଆତ୍ମତତ୍ତ୍ୱର ଅନ୍ୱେଷଣରେ ବୁଡ଼ିଯାଅ । ସମାଧିକୁ ଅବଲମ୍ବନ କରି ସେଥିରେ ଅବସ୍ଥାନ କର । ଦେଖିବ, ନାମରୂପାତ୍ମକ ଜଗତ ସେତେବେଳେ କେଉଁଆଡ଼େ ଲୋପ ପାଇଯିବ । କ୍ଷୁଦ୍ର ମୁଁ ବା ଅହଂଜ୍ଞାନ ବିରାଟରେ ଲୀନ ଓ ସ୍ତବ୍ଧୀଭୂତ ହୋଇଯିବ ଏବଂ ଅଖଣ୍ଡ ସଚ୍ଚିଦାନନ୍ଦଙ୍କୁ ନିଜ ସ୍ୱରୂପ ବୋଲି ସାକ୍ଷାତ୍ ପ୍ରତ୍ୟକ୍ଷ କରିବ ।"

ସେହି ସମୟର ଅଭିଜ୍ଞତା ବର୍ଣ୍ଣନା କରି ଠାକୁର କହିଛନ୍ତି, "ଦୀକ୍ଷା ପ୍ରଦାନ କରି ସେହି ଲଙ୍ଗୁଳୀ ସନ୍ନ୍ୟାସୀ ମୋତେ ନାନା ସିଦ୍ଧାନ୍ତ ବାକ୍ୟର ଉପଦେଶ ଦେବାକୁ ଲାଗିଲେ ଏବଂ ମନକୁ ସର୍ବତୋଭାବରେ ନିର୍ବିକଳ୍ପ କରି ଆତ୍ମଧ୍ୟାନରେ ନିମଗ୍ନ ହୋଇଯିବାକୁ କହିଲେ । ମୋର କିନ୍ତୁ ଏପରି ହେଲା ଯେ ଧ୍ୟାନ କରିବାକୁ ବସି ଚେଷ୍ଟା କଲେ ସୁଦ୍ଧା ମନକୁ ନିର୍ବିକଳ୍ପ କରିପାରିଲି ନାହିଁ କି ନାମରୂପର ଗଣ୍ଡି ଅତିକ୍ରମ କରିପାରିଲି ନାହିଁ । ଆଉ ସବୁଥିରୁ ମନକୁ ଓଟାରି ଆଣିପାରିଲି ଖୁବ୍ ସହଜରେ; କିନ୍ତୁ ମନ ଯେତେବେଳେ ସବୁଥିରୁ ମୁକ୍ତ ହୋଇଯାଏ, ତତ୍କ୍ଷଣାତ୍ ଶ୍ରୀଶ୍ରୀଜଗଦମ୍ବାଙ୍କର ଚିରପରିଚିତ ଚିଦ୍‌ଘନୋଜ୍ଜ୍ୱଳ ହାସ୍ୟମୟୀ ମୂର୍ତ୍ତି ସେଥିରେ ଜ୍ୱଳନ୍ତ ଜୀବନ୍ତଭାବରେ ସମୁଦିତ ହୋଇ ସବୁପ୍ରକାର ନାମରୂପ ତ୍ୟାଗର କଥା ଏକାବେଳକେ ଭୁଲାଇ ଦିଏ । ଯେତେବେଳେ ପ୍ରତ୍ୟେକ ଥର ସିଦ୍ଧାନ୍ତ ବାକ୍ୟସବୁ ଶ୍ରବଣ କରି ଧ୍ୟାନରେ

ବସିଲେ ଏହି ମୂର୍ତ୍ତି ଦେଖାଦେଲା, ସେତେବେଳେ ମୁଁ ନିର୍ବିକଳ୍ପ ସମାଧି ବିଷୟରେ ସମ୍ପୂର୍ଣ୍ଣ ନିରାଶ ହୋଇଗଲି । ଅରେ ଆଖି ଖୋଲି ସେହି ଲଙ୍ଗୁଳୀ ସନ୍ନ୍ୟାସୀଙ୍କୁ କହିଲି, 'ହେଲା ନାହିଁ; ମନକୁ ସମ୍ପୂର୍ଣ୍ଣ ନିର୍ବିକଳ୍ପ କରି ଆତ୍ମ-ଧ୍ୟାନରେ ମଗ୍ନ ହୋଇପାରୁ ନାହିଁ ।' ଲଙ୍ଗୁଳୀବାବା ତାହା ଶୁଣି ଖୁବ୍ ଉତ୍ତେଜିତ ହୋଇ ଉଠିଲେ ଏବଂ ତୀବ୍ର କଣ୍ଠରେ ତିରସ୍କାର କରି କହିଲେ, 'କେଁଓ ନେହିଁ ହୋଗା ?—କ'ଣ ! ହେବ ନାହିଁ ? ଏତେ ବଡ଼ କଥା ?' —ଏତକ କହୁକହୁ ସେ କୁଟୀର ଭିତରେ କ'ଣ ଅଣ୍ଡାଳୁ ଅଣ୍ଡାଳୁ ଖଣ୍ଡେ ଭଙ୍ଗାକାଚ ପାଇଗଲେ । ସେହି ଭଙ୍ଗା ମୁନିଆଁ କାଚଟାକୁ ଧରି ତା'ର ଗୋଜିଆ ଅଂଶଟାରେ ସେ ମୋର ଦୁଇ ଭ୍ରୂରୁ ମଝିରେ ଖୁବ୍ ଜୋର୍‌ରେ ବିନ୍ଧି ଦେଲେ ଓ କହିଲେ, 'ମନକୁ ଗୁଟିଆଣ୍ଡୁ ଆଣି ଏହି ବିନ୍ଦୁରେ ନିବଦ୍ଧ କର ।' ମୁଁ ତଦନୁଯାୟୀ ପୁନର୍ବାର ଦୃଢ଼ ସଂକଳ୍ପ କରି ଧ୍ୟାନରେ ବସିଲି ଏବଂ ଜଗଦମ୍ବାଙ୍କ ଶ୍ରୀମୂର୍ତ୍ତି ପୂର୍ବଭଳି ମୋ ମନରେ ଉଦିତ ହେବା ମାତ୍ରେ ଜ୍ଞାନକୁ ଅସିରୂପେ କଳ୍ପନା କରି ଏହାଦ୍ୱାରା ଏହି ମୂର୍ତ୍ତିକୁ ମନେମନେ ଦି'ଖଣ୍ଡ କରି କାଟିଦେଲି । ସେତେବେଳେ ମନରେ ମୋର ଆଉ କୌଣସି ପ୍ରକାର ବିକଳ୍ପ ରହିଲା ନାହିଁ । ଏକାଥରକେ ହୁହୁକରି ଏହା ସମଗ୍ର ନାମରୂପ-ରାଜ୍ୟର ଊର୍ଦ୍ଧ୍ୱକୁ ଉଠିଗଲା ଏବଂ ମୁଁ ସମାଧିରେ ନିମଗ୍ନ ହୋଇଗଲି ।''

ଠାକୁର ପୂର୍ବୋକ୍ତ ପ୍ରକାରେ ସମାଧିସ୍ଥ ହେଲାପରେ ଶ୍ରୀମତ୍ ତୋତା ଅନେକ ବେଳଯାଏ ତାଙ୍କ ପାଖରେ ବସି ରହିଲେ । ତା'ପରେ ନିଃଶବ୍ଦରେ କୁଟୀରର ବାହାରକୁ ଚାଲି ଆସିଲେ । କାଳେ କିଏ କୁଟୀର ଭିତରକୁ ତାଙ୍କ ଅଜାଣତରେ ପଶିଯାଇ ଠାକୁରଙ୍କର ଧ୍ୟାନ ଭାଙ୍ଗି ଦେବ, ସେଥିଲାଗି ସେ ବାହାରୁ ତାଲା ପକାଇ ଦେଲେ ଏବଂ କୁଟୀରଠାରୁ ଅଳ୍ପ ଦୂରରେ ପଞ୍ଚବଟୀ ତଳେ ନିଜ ଆସନରେ ବସିରହି ଠାକୁର କେତେବେଳେ ସମାଧିରୁ ଉଠି ଦ୍ୱାର ଖୋଲିବାକୁ ଆହ୍ୱାନ କରିବେ, ସେହି ପ୍ରତୀକ୍ଷାରେ ରହିଲେ । ଦିନଟି କଟିଗଲା । ଆସିଲା ରାତି । ଏହିପରି ଭାବରେ ତିନିଦିନ ତିନିରାତି କଟିଗଲା । ତଥାପି ଠାକୁର କୁଟୀର ଭିତରୁ ଦ୍ୱାର ଖୋଲିବା ପାଇଁ ଡାକିଲେ ନାହିଁ । ତୋତାପୁରୀଙ୍କର ବିସ୍ମୟର ସୀମା ରହିଲା ନାହିଁ । କୌତୂହଳରେ ସେ ନିଜେ

ଆସନ ଛାଡ଼ି ଉଠିଲେ ଏବଂ ଶିଷ୍ୟର ଅବସ୍ଥା କ'ଣ ହେଲା ବୁଝିବା ଲାଗି ଉତ୍କଣ୍ଠା ସହକାରେ କୁଟୀରର ଦ୍ୱାର ଖୋଲି ଭିତରେ ପ୍ରବେଶ କଲେ । ଘର ଭିତରେ ଦେଖିଲେ ଯେ ସେ ତିନଦିନ ତଳେ ଯେପରି ବସାଇ ଦେଇଥିଲେ, ଠାକୁର ସେହିପରି ଠିକ୍ ବସି ରହିଛନ୍ତି । ଦେହରେ ପ୍ରାଣର ପ୍ରକାଶ ମାତ୍ର ନାହିଁ, କିନ୍ତୁ ମୁଖମଣ୍ଡଳ ପ୍ରଶାନ୍ତ ଗମ୍ଭୀର ଓ ଜ୍ୟୋତିପୂର୍ଣ୍ଣ । ତୋତାପୁରୀ ବୁଝିଲେ ଯେ ତାଙ୍କର ଶିଷ୍ୟ ବର୍ତ୍ତମାନ ବହିର୍ଜଗତ ସମ୍ବନ୍ଧରେ ସମ୍ପୂର୍ଣ୍ଣ ମୃତକଳ୍ପ । ନିବାତନିଷ୍କମ୍ପ ପ୍ରଦୀପ ସଦୃଶ ତାଙ୍କର ଚିତ୍ତ ବ୍ରହ୍ମରେ ଲୀନ ହୋଇ ଅବସ୍ଥାନ କରୁଅଛି ।

ସମାଧିରହସ୍ୟଜ୍ଞ ତୋତାପୁରୀ ସ୍ତମ୍ଭିତ ହୃଦୟରେ ଭାବିଲାଗିଲେ ଯାହା ମୁଁ ଆଖିରେ ଦେଖୁଛି, ତାହା କ'ଣ ବାସ୍ତବିକ୍ ସତ୍ୟ ? ଚାଳିଶି ବର୍ଷ ବ୍ୟାପୀ କଠୋର ସାଧନାରେ ଯେଉଁ ସିଦ୍ଧି ଜୀବନରେ ଉପଲବ୍ଧି କରିବାକୁ ସକ୍ଷମ ହେଲି, ତାହା କ'ଣ ଏହି ମହାପୁରୁଷ ସତକୁସତ ଗୋଟିଏ ଦିନରେ (ଅନ୍ୟ ମତ ଅନୁଯାୟୀ ତିନି ଦିନରେ) ଆୟତ୍ତ କରିଦେଲେ ? ସନ୍ଦେହାବେଗରେ ତୋତା ପୁନର୍ବାର ପରୀକ୍ଷା କରି ବସିଲେ । ତନ୍ନ ତନ୍ନ କରି ଶିଷ୍ୟ-ଦେହରେ ପ୍ରକାଶିତ ଲକ୍ଷଣଗୁଡ଼ିକୁ ଅନୁଧାବନ କରିବାକୁ ଲାଗିଲେ; ହୃଦୟ ସ୍ପନ୍ଦିତ ହେଉଛି କି ନାହିଁ, ନାସିକାଦ୍ୱାରରେ ବିନ୍ଦୁମାତ୍ର ବାୟୁ ନିର୍ଗତ ହେଉଛି କି ନାହିଁ—ସବୁ କଥା ବିଶେଷ କରି ପରୀକ୍ଷା କରିଗଲେ । ସ୍ଥିରସ୍ଥିର କାଷ୍ଠଖଣ୍ଡ ସଦୃଶ ଶିଷ୍ୟଙ୍କର ଶରୀରକୁ ବାରମ୍ବାର ସ୍ପର୍ଶ କରିବାକୁ ଲାଗିଲେ । କିଛିମାତ୍ର ବିକାର, ବୈଲକ୍ଷଣ ବା ଚେତନାର ଉଦୟ ହେଲା ନାହିଁ । ସେତେବେଳେ ବିସ୍ମୟାନନ୍ଦରେ ଅଭିଭୂତ ହୋଇ ତୋତାପୁରୀ ଚିତ୍କାର କରି କହିଉଠିଲେ —"ୟହ କ୍ୟା ଦୈବୀ ମାୟା ! ସତ୍ୟ ସତ୍ୟ ହିଁ ସମାଧି ! ବେଦାନ୍ତୋକ୍ତ ଜ୍ଞାନମାର୍ଗର ଚରମ ଫଳ ଏହି ନିର୍ବିକଳ୍ପ ସମାଧି ଗୋଟିଏ ଦିନରେ ହୋଇଗଲା ? ଦେବତାଙ୍କର ଏ କି ଅଦ୍ଭୁତ ମାୟା !"

ତା'ପରେ ତୋତାପୁରୀ ଭାବିଲେ—ବର୍ତ୍ତମାନ ଶିଷ୍ୟକୁ ସମାଧିରୁ ଉଠାଇବାକୁ ହେବ । ତଦନୁଯାୟୀ ସେ ବିଧି ଅନୁସାରେ ସମାଧିଭଙ୍ଗ ପ୍ରକ୍ରିୟା

ଆରମ୍ଭ କରିଦେଲେ । ସଙ୍ଗେ ସଙ୍ଗେ "ହରି ଓମ୍" ମନ୍ତ୍ରର ସୁଗଭୀର ଆରାବରେ ପଞ୍ଚବର୍ଣ୍ଣର ଜଳସ୍ଥଳ ବ୍ୟୋମ ମୂର୍ତ୍ତ ହୋଇଉଠିଲା । ଧୀରେ ଧୀରେ ନିର୍ବିକଳ୍ପ ସମାଧିମଗ୍ନ ଶିଷ୍ୟଙ୍କର ମନ ଅଦ୍ୱୈତଭୂମିରୁ ଭାବରାଜ୍ୟର ଚେତନଭୂମିକୁ ଓହ୍ଲାଇ ଆସିଲା । ଆନନ୍ଦ-ଉଦ୍‌ବେଳିତ ଅନ୍ତରରେ ଶିଷ୍ୟ ବ୍ରହ୍ମଜ୍ଞ ଗୁରୁଙ୍କର ପାଦ ବନ୍ଦନା କଲେ ।

# ତ୍ରୟୋଦଶ ଅଧ୍ୟାୟ

## ତୋତାପୁରୀଙ୍କର ମାୟାଶକ୍ତିର ସ୍ୱରୂପଦର୍ଶନ

ବେଦାନ୍ତ-ଶାସ୍ତ୍ରରେ ଅଛି ଯେ ବ୍ରହ୍ମଜ୍ଞାନ ହେଲେ ମନୁଷ୍ୟ ସମ୍ପୂର୍ଣ୍ଣ ଭୟଶୂନ୍ୟ ହୋଇଯାଏ । ଯେ ସତକୁ ସତ ଦେଖିପାରେ ଯେ ଏହି ଜଗତରେ ଏକ ଭିନ୍ନ ଦ୍ୱିତୀୟ ବସ୍ତୁ ବା ବ୍ୟକ୍ତି ନାହିଁ, ତା'ର କପରି ବା ଭୟ ଆସିବ । ଠାକୁର କହୁଥିଲେ—ଏହି ପ୍ରକାର ଜ୍ଞାନରେ ସମ୍ପୂର୍ଣ୍ଣରୂପେ ରହିଲେ ଜୀବର ଦେହ ଏକୋଇଶ ଦିନ ମାତ୍ର ରହି ଶୁଷ୍କପତ୍ରପରି ଝଡ଼ିପଡ଼େ ଏବଂ ସେ ଆଉଥରେ ଅହଂଜ୍ଞାନ ଧରି ଏ ସଂସାରକୁ ଫେରିଆସେ ନାହିଁ । 'ଜୀବନ୍ମୁକ୍ତ' ପୁରୁଷମାନଙ୍କର ମଧ୍ୟେ ମଧ୍ୟେ ସ୍ୱଳ୍ପକାଳ ଲାଗି ଏହି ଜ୍ଞାନରେ ଅବସ୍ଥାନ ଓ ଆତ୍ମାର ଦର୍ଶନ ହେଉ ହେଉ ପରିଶେଷରେ ପୂର୍ଣ୍ଣ ଅବସ୍ଥାନ ଓ ଦର୍ଶନ ହୋଇଯାଏ । ନିତ୍ୟମୁକ୍ତ 'ଈଶ୍ୱରକୋଟି' ପୁରୁଷ, ଯେଉଁମାନେ କୌଣସି ବିଶେଷ ସତ୍ୟର ପ୍ରତିଷ୍ଠା କରି ବହୁ ଲୋକଙ୍କର କଲ୍ୟାଣସାଧନ କରିବାକୁ ଜଗତରେ ଜନ୍ମଗ୍ରହଣ କରିଥାଆନ୍ତି, ସେମାନେ ବାଲ୍ୟାବଧି ମଧ୍ୟେ ମଧ୍ୟେ ସ୍ୱଳ୍ପକାଳ ପାଇଁ ଏହି ଜ୍ଞାନରେ ଅବସ୍ଥାନ କରନ୍ତି ଏବଂ ଯେଉଁ କର୍ମ ନିମିତ୍ତ ସେମାନେ ଆସିଥାଆନ୍ତି, ସେହି କର୍ମ ଶେଷ ହେଲେ ପରିଶେଷରେ ସମ୍ପୂର୍ଣ୍ଣ ଭାବରେ ଜ୍ଞାନସ୍ୱରୂପରେ ଅବସ୍ଥାନ କରନ୍ତି । ପୁନଶ୍ଚ, ଯେଉଁମାନେ ସ୍ୱୟଂ ଈଶ୍ୱର ଏବଂ ମାନବକଲ୍ୟାଣ ନିମିତ୍ତ ମୂର୍ତ୍ତି ପରିଗ୍ରହଣ କରି ଆସିଥାଆନ୍ତି, ସେହି 'ଅବତାର ପୁରୁଷମାନେ' ଏହି ପୂର୍ଣ୍ଣ ଜ୍ଞାନାବସ୍ଥାକୁ ବାଲ୍ୟାବଧି ନିଜ ଇଚ୍ଛାନୁସାରେ ଉଠିପାରନ୍ତି ଓ ଯେତେକାଳ ଇଚ୍ଛା ସେଠାରେ ଅବସ୍ଥାନ କରିପାରନ୍ତି ଏବଂ ପୁନରାୟ ଇଚ୍ଛାନୁସାରେ ଲୋକକଲ୍ୟାଣ ଉଦ୍ଦେଶ୍ୟରେ ଜନ୍ମ-ଜରା-ଶୋକ-ହର୍ଷାଦିର ମିଳନଭୂମି ଏହି ସଂସାରକୁ ଫେରିପାରନ୍ତି । ଠାକୁରଙ୍କ ଶିକ୍ଷାଗୁରୁ ଶ୍ରୀମତ୍ ତୋତାପୁରୀ ଗୋସ୍ୱାମୀ ଚାଳିଶିବର୍ଷର କଠୋର ସାଧନା ଫଳରେ ପୂର୍ବୋକ୍ତ 'ଜୀବନ୍ମୁକ୍ତ ଅବସ୍ଥା' ଲାଭ କରିଥିଲେ ଏବଂ ନିତ୍ୟମୁକ୍ତ ବାୟୁ ସଦୃଶ ସେ ବାଧାଶୂନ୍ୟ ହୋଇ ଯଥେଚ୍ଛ ବିଚରଣ କରି

ବୁଲୁଥିଲେ । ବାୟୁଭଳି ସଂସାରର ଦୋଷ-ଗୁଣ ତାଙ୍କୁ କେବେ ସ୍ପର୍ଶ କରିପାରୁ ନ ଥିଲା ଏବଂ ସେ ତିନଦିନରୁ ଅଧିକ କେଉଁଠାରେ ଅବସ୍ଥାନ କରୁ ନ ଥିଲେ । କିନ୍ତୁ ଠାକୁରଙ୍କର ଅଦ୍‌ଭୁତ ଆକର୍ଷଣରେ ତୋତା ଦକ୍ଷିଣେଶ୍ୱରରେ ଏକାଦିକ୍ରମେ ଏଗାର ମାସ ଅବସ୍ଥାନ କରିବାକୁ ବାଧ୍ୟ ହୋଇଥିଲେ । ଠାକୁରଙ୍କର କି ଅଦ୍‌ଭୁତ ମୋହିନୀ ଶକ୍ତି ଥିଲା ତାହା ଏହିଥିରୁ ଜଣାପଡ଼େ ।

ଦକ୍ଷିଣେଶ୍ୱରରେ ରହିଥିବା ବେଳେ 'ଲଙ୍ଗୁଲୀବାବା' ତୋତାପୁରୀ ପଞ୍ଚବଟୀର ବୃକ୍ଷତଳେ ଆସନ କରି ସେହିଠାରେ ଅବସ୍ଥାନ କରୁଥିଲେ ଏବଂ ପାଖରେ ଦିନରାତି ଧୁନି ଜାଳି ରଖୁଥିଲେ । ନାଗା-ସାଧୁମାନେ ଅଗ୍ନିକୁ ମହାପବିତ୍ର ବୋଲି ମନେ କରନ୍ତି । ଖରା ହେଉ କି ବର୍ଷା ହେଉ ଲଙ୍ଗୁଲୀଙ୍କ ଧୁନି ସବୁବେଳେ ଜଳୁଥାଏ । ଦିନକର କଥା । ଠାକୁର ସନ୍ଧ୍ୟାପରେ ପୁରୀଜୀଙ୍କ ଧୁନି ପାଖରେ ବସିଥାଆନ୍ତି । ଏହି ସମୟରେ ବଗିଚାର ଚାକର ମାଳିଙ୍କ ଭିତରୁ ଜଣଙ୍କର ବିଡ଼ି ଖାଇବାର ବିଶେଷ ଇଚ୍ଛା ହେଲା । ସେ ବିଡ଼ି ଖଣ୍ଡିକ ମୁହଁରେ ଧରି ସେହି ଧୁନିରୁ ଖଣ୍ଡିଏ ଜଳନ୍ତା କାଠ କାଢ଼ି ସେଥିରୁ ନିଆଁ ନେବାକୁ ବସିଲା । ଖଣ୍ଡିଏ ଜଳନ୍ତା କାଠ କାଢ଼ିଛି କି ନାହିଁ ତା' ଉପରେ ପୁରୀଜୀଙ୍କ ଦୃଷ୍ଟି ପଡ଼ିଗଲା । ସେହି ଦୃଶ୍ୟରେ ସେ ଅତ୍ୟନ୍ତ ବିରକ୍ତ ଓ କ୍ରୁଦ୍ଧ ହୋଇ ଉଠିଲେ ଏବଂ ତୀବ୍ର ଭାବରେ ତାକୁ ଗାଳିଗୁଲଜ ଆରମ୍ଭ କରିଦେଲେ । ଏପରିକି ଚିମୁଟା ଉଠାଇ ତାକୁ ପାହାରେ ଦୁଇ ପାହାର କଷି ଦେବାକୁ ମଧ୍ୟ ଚାହିଁକି ଉଠିଲେ । ଠାକୁର ସେତେବେଳେ ଅର୍ଦ୍ଧବାହ୍ୟ-ଦଶାରେ ଥାଇ ମଧ୍ୟ ଏ କାଣ୍ଡ ଦେଖି ହୋ ହୋ ହୋଇ ହସି ଉଠିଲେ । ତୋତା ଠାକୁରଙ୍କୁ ଏପରି ହସିବାର ଦେଖି ଆଶ୍ଚର୍ଯ୍ୟ ହୋଇ କହିଲେ, "ତୁମେ ଏପରି ହସୁଛ କାହିଁକି ?" ଠାକୁର ହସି ହସି କହିଲେ, "ତୁମର ବ୍ରହ୍ମଜ୍ଞାନର ଦଉଡ଼ ଦେଖି ହସୁଛି ହେ ! ଏଇ ମୁହଁରେ କହୁଥିଲ ବ୍ରହ୍ମ ବିନା ଦ୍ୱିତୀୟ ସତ୍ତା ନାହିଁ, ଜଗତର ସମସ୍ତ ବସ୍ତୁ ଓ ବ୍ୟକ୍ତି ତାଙ୍କର ହିଁ ପ୍ରକାଶ । ପୁଣି ପରକ୍ଷଣରେ ସବୁକଥା ଭୁଲିଯାଇ ମଣିଷକୁ ମାରିବାକୁ ଚାହିଁକି ଯାଉଛ ! ସେଥିପାଇଁ ହସୁଛି ! ଆହା ! ମାୟାର କି ପ୍ରଭାବ !" ତୋତା ଏ କଥା ଶୁଣି ଗମ୍ଭୀର ହୋଇ କିଛି ସମୟ ଚୁପ୍ ରହିଲା ପରେ ଠାକୁରଙ୍କୁ ସମ୍ବୋଧନ କରି

କହିଲେ, "ଠିକ୍ କହିଛ ! କ୍ରୋଧରେ ସବୁ କଥା ବାସ୍ତବିକ ଭୁଲିଯାଇଥିଲି । କ୍ରୋଧ ବଡ଼ ପାଜି ଜିନିଷ । ଆଜିଠାରୁ ଆଉ କ୍ରୋଧ କରିବି ନାହିଁ । ଏହି ମୁହୂର୍ତ୍ତିରୁ କ୍ରୋଧ ପରିତ୍ୟାଗ କଲି ।" ସତକୁ ସତ ସେହି ଦିନଠାରୁ ସ୍ୱାମୀଜୀଙ୍କୁ ଆଉ କେହି କ୍ରୁଦ୍ଧ ହେବାର ଦେଖି ନାହିଁ ।

ତୋତାପୁରୀଙ୍କ ପାଖରେ ଗୋଟିଏ ଲୋଟା, ଗୋଟିଏ ଦୀର୍ଘ ଚିମୁଟା ଏବଂ ଗୋଟିଏ ହରିଣଚମଡ଼ାର ଆସନ ବ୍ୟତୀତ ଆଉ କିଛି ନ ଥିଲା । ଏହା ଛଡ଼ା ସେ ଗୋଟିଏ ମୋଟା ଚଦରରେ ନିଜ ଦେହକୁ ସର୍ବଦା ଆବୃତ କରି ରଖୁଥିଲେ । ଲୋଟା ଆଉ ଚିମୁଟାଟିକୁ ସେ ସବୁବେଳେ ମାଜି ଚକ୍ ଚକ୍ କରି ରଖୁଥିଲେ । ପୁରୀଜୀଙ୍କର ନିତ୍ୟ ଧ୍ୟାନ ଅନୁଷ୍ଠାନ କରୁଥିବାର ଦେଖି ଦିନେ ଠାକୁର ତାଙ୍କୁ ପଚାରିଲେ, "ତୁମର ତ ବ୍ରହ୍ମଲାଭ ହୋଇଛି, ତୁମେ ସିଦ୍ଧ ହୋଇଛ, ପୁଣି କାହିଁକି ସବୁବେଳେ ଧ୍ୟାନାଭ୍ୟାସ କରୁଛ ?" ଏକଥା ଶୁଣି ତୋତା ଠାକୁରଙ୍କୁ କୋମଳ ଭାବରେ ଚାହିଁ, ଚକ୍‌ମକ୍ କରୁଥିବା ଲୋଟାଟି ଆଡ଼କୁ ଅଙ୍ଗୁଳି ନିର୍ଦ୍ଦେଶ କରି କହିଲେ, "କିପରି ଚକ୍‌ମକ୍ ଉଜ୍ଜ୍ୱଳ ଦିଶୁଛି ଦେଖୁଛ ତ ? ଆଉ ମୁଁ ଯଦି ତାକୁ ସବୁଦିନେ ନ ମାଜେ ତା'ହେଲେ ମଳିନ ହୋଇଯିବନି କି । ମନ ମଧ୍ୟ ଠିକ୍ ସେହିପରି । ଧ୍ୟାନାଭ୍ୟାସ କରି ମନକୁ ଏହିପରି ସବୁଦିନେ ମଜାଘଷା ନ କଲେ, ମନ ମଧ୍ୟ ମଳିନ ହୋଇଯାଏ ।"

ତୀକ୍ଷ୍ଣଦୃଷ୍ଟିସମ୍ପନ୍ନ ଠାକୁର ଗୁରୁଙ୍କ କଥା ସ୍ୱୀକାର କରି କହିଲେ, "କିନ୍ତୁ ଯଦି ସୁନାର ଲୋଟା ହୁଏ ? ତା'ହେଲେ ସବୁ ଦିନେ ନ ମାଜିଲେ ମଧ୍ୟ ମଇଳା ହୋଇଯିବ ନାହିଁ ।" ତୋତାପୁରୀ ହସି ହସି କହିଲେ, "ହଁ, ସେକଥା ସତ !" ବୁଝିଥିଲେ—ଠାକୁରଙ୍କ ମନ ବାସ୍ତବରେ ସୁନାର ଲୋଟାଭଳି ଉଜ୍ଜ୍ୱଳ । ଗୁରୁଶିଷ୍ୟଙ୍କର ଭାବର ଆଦାନପ୍ରଦାନ ପ୍ରଥମରୁ ଶେଷଯାଏ ଚାଲିଥିଲା ।

ଠାକୁର ପ୍ରତିଦିନ ସକାଳେ ଆଉ ସନ୍ଧ୍ୟାବେଳେ କରତାଳି ଦେଇ ଏବଂ ନୃତ୍ୟ କରିକରି "ହରିବୋଲ—ହରିବୋଲ" "ହରିଗୁରୁ" "ଗୁରୁହରି" ବୋଲି ଉଚ୍ଚ ସ୍ୱରରେ ଭଜନ କରନ୍ତି । ଏହା ତାଙ୍କର ବାଲ୍ୟକାଳରୁ

ଅଭ୍ୟାସ । ବର୍ତ୍ତିମାନ ବେଦାନ୍ତର ଅଦ୍ୱୈତ ଭାବରେ ନିର୍ବିକଳ୍ପ ସମାଧିଲାଭ କଲାପରେ ମଧ୍ୟ ସେ ସବୁଦିନେ ଏହିପରି କରୁଥାଆନ୍ତି । ଦିନେ ପଞ୍ଚବଟୀରେ ଅପରାହ୍ନ ସମୟରେ ପୁରୀଜୀଙ୍କ ପାଖରେ ବସି ନାନା ଧର୍ମକଥା ପ୍ରସଙ୍ଗରେ ସନ୍ଧ୍ୟା ହୋଇ ଆସିଲା । ସନ୍ଧ୍ୟା ସମାଗତା ଦେଖି ଠାକୁର ବାକ୍ୟାଳାପ ବନ୍ଦ କରି ପୂର୍ବବତ୍ କରତାଳି ଦେଇ "ହରିବୋଲ୍" ଶବ୍ଦ କରି ନୃତ୍ୟ ସହ ଭଗବାନଙ୍କ ଭଜନ ଆରମ୍ଭ କରିଦେଲେ । ପୁରୀଜୀ ଠାକୁରଙ୍କର ଏ କାଣ୍ଡ ଦେଖି ଅବାକ୍ ହୋଇ ଭାବିଲେ—ଯେ ବେଦାନ୍ତ-ମାର୍ଗରେ ଏତେ ଉତ୍ତମ ଅଧିକାରୀ ହୋଇ ମାତ୍ର ତିନି ଦିନରେ ନିର୍ବିକଳ୍ପ ସମାଧି ଲାଭ କରିପାରିଲେ, ହୀନାଧିକାରୀ ଭଳି ତାଙ୍କର ଏସବୁ ଅନୁଷ୍ଠାନ କାହିଁକି ? ପ୍ରକାଶ୍ୟରେ ସାମାନ୍ୟ ବିଦ୍ରୂପ ମିଶା ସ୍ୱରରେ କହିଲେ, "ଆରେ କେଉଁ ରୋଟି ଠୋକୁଚେ ହୋ ?" ଠାକୁର ଏହା ଶୁଣି ହସି ହସି କହିଲେ, "ମୁଁ ଈଶ୍ୱରଙ୍କ ନାମ କରୁଛି, ଆଉ ତୁମେ କହୁଛ କ'ଣ ନା ମୁଁ ରୁଟି ଠୁକୁଛି !" ପୁରୀଜୀ ଠାକୁରଙ୍କ ତୁଣ୍ଡରୁ ଏହି ବାଳକସୁଲଭ କଥା ଶୁଣି ହସି ଉଠିଲେ ଏବଂ କ୍ରମେ ବୁଝିପାରିଲେ ଯେ ଠାକୁରଙ୍କର ଏପ୍ରକାର ଅନୁଷ୍ଠାନ ନିରର୍ଥକ ନୁହେଁ ।

ତୋତାପୁରୀଙ୍କର ପଶ୍ଚିମ ଭାରତୀୟ ଶରୀରଟି ଖୁବ୍ ସୁସ୍ଥ ସବଳ ଥିଲା । ଶରୀରର ନାନା ପ୍ରକାର ଅସୁସ୍ଥତା କ'ଣ କିପରି ହୁଏ, ତାହା ତାଙ୍କୁ ଆଦୌ ଜଣା ନ ଥିଲା । କିନ୍ତୁ ବଙ୍ଗଦେଶର ଜଳବାୟୁରେ କେତୋଟି ମାସ ରହିଲା ପରେ ତାଙ୍କର ସେହି ଦୃଢ଼ ବଳିଷ୍ଠ ଶରୀରରେ ମଧ୍ୟ ରୋଗ ପ୍ରବେଶ କଲା । ପୁରୀଜୀ କଠିନ ରକ୍ତାମାଶୟ ରୋଗରେ ଆକ୍ରାନ୍ତ ହୋଇପଡ଼ିଲେ । ଦିନରାତି ପେଟରେ ଯନ୍ତ୍ରଣା ହେଲା । ଏପରି ଯନ୍ତ୍ରଣା ହେଲା ଯେ ତାଙ୍କର ଧୀରସ୍ଥିର ସମାଧିସ୍ଥ ମନ ମଧ୍ୟ ଅନେକ ସମୟରେ ବ୍ରହ୍ମ-ସଦ୍ଭାବରୁ ବିଚ୍ୟୁତ ହୋଇ ଶରୀର ଉପରେ ନିବଦ୍ଧ ହେବାକୁ ଲାଗିଲା । ସ୍ୱାମୀଜୀ କ୍ରମଶଃ ଏହି ହାଡ଼ମାଂସର ପଞ୍ଜୁରୀଟି ଉପରେ ଅତ୍ୟନ୍ତ ବିରକ୍ତ ହୋଇ ଉଠିଲେ । ସେ ଭାବିଲେ—ମୁଁ ଠିକ୍ ଜାଣେ ଯେ ମୁଁ କୌଣସିମତେ ଏହି ଶରୀର ନୁହେଁ । ତେବେ ଏହି ପଚା ଦେହଟା ସାଙ୍ଗରେ ରହି ମୁଁ ଆଉ କାହିଁକି ଏତେ ଯନ୍ତ୍ରଣା ଭୋଗ କରିବି ? ଏହା ଭାବି ଦିନେ ଗଭୀର ରାତିରେ ସେ ଆପଣାର ଶରୀରଟିକୁ ଗଙ୍ଗାବକ୍ଷରେ

ବିସର୍ଜନ କରିଦେବାକୁ ମନସ୍ଥ କରି ଧୀରେ ଧୀରେ ନଦୀ ଭିତରକୁ ପ୍ରବେଶ କଲେ । ସେତେବେଳେ ସେ ଖୁବ୍ ଯତ୍ନରେ ମନକୁ ବ୍ରହ୍ମଚିନ୍ତାରେ ସ୍ଥିର ରଖି କ୍ରମେ କ୍ରମେ ଗଭୀର ଜଳ ମଧ୍ୟକୁ ପ୍ରବେଶ କଲେ । କିନ୍ତୁ କି ଆଶ୍ଚର୍ଯ୍ୟ ! ଗଭୀର ଭାଗୀରଥୀ କ'ଣ ଆଜି ସତକୁ ସତ ତାଙ୍କ ପାଇଁ ଶୁଷ୍କ ହୋଇଗଲା ? ନଦୀର ଜଳ ତୋତାପୁରୀଙ୍କ ଗ୍ରୀବା ପର୍ଯ୍ୟନ୍ତ ମାତ୍ର ହେଲା, ଆଉ ଅଧିକ ହେଲା ନାହିଁ ।

ତୋତାଜୀ ଅବାକ୍ ହୋଇଗଲେ । ଏ କ'ଣ ଦୈବୀ ମାୟା ! ବୁଡ଼ି ମରିବା ଲାଗି ଯେତିକି ପାଣି ଦରକାର, ସେତିକି ମଧ୍ୟ ଏହି ମୁହୂର୍ତ୍ତରେ ନଦୀରେ ନାହିଁ କିପରି ? ଏ କି ଅପୂର୍ବ ଲୀଳା ଭଗବାନଙ୍କର !! ସେ ଏପରି ବିସ୍ମୟ ଓ ବିମୂଢ଼ତାରେ ଆଚ୍ଛନ୍ନ ରହି ଭାବୁଛନ୍ତି, ହଠାତ୍ ତାଙ୍କ ଆଗରେ ଏକ ଉଜ୍ଜ୍ୱଳ ଆଲୋକ ଉଦ୍ଭାସିତ ହେଲା । ସେ ପୁଲକିତ ଶରୀରରେ ଚିତ୍କାର କରି ଉଠିଲେ, "ମା, ମା, ମା ! ବିଶ୍ୱଜନନୀ ମା ! ଅଚିନ୍ତ୍ୟ ଶକ୍ତିରୂପିଣୀ ମା ! ଜଳେ ମା ! ସ୍ଥଳେ ମା ! ଦେହରେ ମା ! ମନରେ ମା ! ଯନ୍ତ୍ରଣା ମା ! ସୁସ୍ଥତା ମା ! ଜ୍ଞାନ ମା ! ଅଜ୍ଞାନ ମା ! ଜୀବନ ମା ! ମୃତ୍ୟୁ ମା ! ଯାହା କିଛି ଦେଖୁଛି, ଶୁଣୁଛି, ଭାବୁଛି, କଳ୍ପନା କରୁଛି—ସବୁ ମା ! ପୁଣି ଶରୀର, ମନ ବୁଦ୍ଧିର ଆର ପାରିରେ ମଧ୍ୟ ସେହି ମା—ତୁରୀୟା, ନିର୍ଗୁଣା ମା !"

ଏତେ ଦିନ ଧରି ଯାହାଙ୍କୁ ବ୍ରହ୍ମ ବୋଲି ଉପାସନା କରି ତୋତାଜୀ ପ୍ରାଣର ଭକ୍ତି ପ୍ରେମ ଦେଇ ଆସିଛନ୍ତି, ସେ ହିଁ ମା ! ଶିବଶକ୍ତି ଏକାଧାରରେ ହରଗୌରୀ ମୂର୍ତ୍ତିରେ ଅବସ୍ଥିତା— ବ୍ରହ୍ମ ଆଉ ବ୍ରହ୍ମଶକ୍ତି ଅଭେଦ ! ତୋତା ମନରେ ଏହା ଅନୁଭବ କରୁ କରୁ ଜଳ ଭିତରୁ ଧୀରେ ଧୀରେ ଉପରକୁ ଉଠି ଆସିଲେ । ଶରୀରରେ ଯନ୍ତ୍ରଣା ଥିଲେ ସୁଦ୍ଧା ବର୍ତ୍ତମାନ ଆଉ ତା'ର ଅନୁଭବ ନ ଥିଲା । ପ୍ରାଣ ସମାଧିସ୍ଥିତର ଅପୂର୍ବ ଉଲ୍ଲାସରେ ଉଲ୍ଲସିତ । ଧୀରେ ଧୀରେ ପଞ୍ଚବଟୀ ତଳେ ଧୁନି ପାଖକୁ ଆସି ସେ ଧୀରସ୍ଥିର ଭାବରେ ସେଠାରେ ଉପବେଶନ କଲେ ଓ ସମସ୍ତ ରାତି ଜଗଦମ୍ବାଙ୍କ ଧ୍ୟାନ ଓ ନାମ-ଜପରେ ଅତିବାହିତ କଲେ ।

ରାତି ପାହି ସକାଳ ହେଲା । ଠାକୁର ସ୍ୱାମୀଜୀଙ୍କ ଶାରୀରିକ କୁଶଳ ସମ୍ବାଦ ଜାଣିବାକୁ ଆସି ଦେଖିଲେ ସେ ଯେପରି ଆଉ ସେହି ପୁରୁଣା

ତୋତାପୁରୀ ନୁହନ୍ତି । ମୁଖମଣ୍ଡଳ ଆନନ୍ଦରେ ପ୍ରଫୁଲ୍ଲ, ହାସ୍ୟପ୍ରସ୍ଫୁଟିତ-ଅଧର, ଶରୀରରେ ସତେଇକ କୌଣସି ରୋଗ ନାହିଁ । ଠାକୁରଙ୍କ ଇଙ୍ଗିତରେ ତାଙ୍କ ପାଖରେ ବସାଇଲେ ତୋତାଜୀ । ତା'ପରେ ଧୀରେ ଧୀରେ ରାତିର ସମସ୍ତ ଅଲୌକିକ ଅଭିଜ୍ଞତା ତାଙ୍କ ଆଗରେ ବର୍ଣ୍ଣନା କଲେ । କହିଲେ, "ରୋଗ ହିଁ ମୋର ବନ୍ଧୁର କାର୍ଯ୍ୟ କରିଛି । କାଲି ଗଙ୍ଗାବକ୍ଷରେ ଜଗଦମ୍ବାଙ୍କ ଦର୍ଶନ ପାଇଗଲି । ତାଙ୍କ କୃପାରେ ମୋର ସବୁ ରୋଗ ମଧ୍ୟ ଭଲ ହୋଇଗଲା । ଏତେ ଦିନ ଧରି ମୁଁ କି ଅଜ୍ଞ ଥିଲି !"

ଠାକୁର ଏକଥା ଶୁଣି ହସି ହସି ଗଡ଼ିଗଲେ । କହିଲେ, "ତା' ହେଲେ ମା'ଙ୍କୁ ଯେ ଆଗରୁ ମାନୁ ନ ଥିଲ ? ମୋ ସାଙ୍ଗରେ 'ଶକ୍ତି' ମିଥ୍ୟା ଆଉ 'ଝୁଟ୍' ବୋଲି ତର୍କ କରୁଥିଲ ? ବର୍ତ୍ତମାନ ତ ନିଜେ ପ୍ରତ୍ୟକ୍ଷ କଲ । ଚକ୍ଷୁକର୍ଣ୍ଣର ବିବାଦ ଘୁଞ୍ଚିଗଲା ତ ? ମତେ ସେ ଆଗରୁ ବୁଝାଇ ଦେଇଛନ୍ତି —'ବ୍ରହ୍ମ ଆଉ ଶକ୍ତି ଅଭେଦ । ଅଗ୍ନି ଆଉ ତା'ର ଦାହିକାଶକ୍ତି ଯେପରି ପୃଥକ୍ ନୁହେଁ, ସେହିପରି ।"

ମନ୍ଦିରରୁ ଏହି ସମୟରେ ପ୍ରଭାତୀ ସ୍ୱରରେ ସାହାନାଇଁ ବାଜି ଉଠିଲା । ତାହା ଶୁଣି ଶିବରାମସଦୃଶ ଗୁରୁଶିଷ୍ୟ ସମ୍ବନ୍ଧରେ ଆବଦ୍ଧ ଉଭୟ ମହାପୁରୁଷ ସେଠାରୁ ଗାତ୍ରୋତ୍ଥାନ କରି ଜଗଦମ୍ବାଙ୍କ ମନ୍ଦିରକୁ ଦର୍ଶନାର୍ଥେ ଗମନ କଲେ ଏବଂ ପ୍ରଣାମାଦି ଅର୍ପଣ କଲେ । ଏହାର କିଛି ଦିନ ପରେ ତୋତାଜୀ ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି ଦକ୍ଷିଣେଶ୍ୱର କାଳୀବାଟି ପରିତ୍ୟାଗ କରି ପଶ୍ଚିମ ଭାରତକୁ ପ୍ରସ୍ଥାନ କଲେ ।

ଏହି ଘଟଣାର ଅବ୍ୟବହିତ ପରେ ପରେ ଠାକୁରଙ୍କ ମନରେ ଦୃଢ଼ ସଂକଳ୍ପ ଉପସ୍ଥିତ ହେଲା—ସେ ଆଜିଠାରୁ ନିରନ୍ତର ନିର୍ବିକଳ୍ପ ଅଦ୍ୱୈତ ଭୂମିରେ ଅବସ୍ଥାନ କରିବେ ଏବଂ ତାହା ହିଁ ହେଲା । ସେ ଅତି ଅପୂର୍ବ କଥା । ସେତେବେଳେ ଶରୀରଟା ଅଛି ବୋଲି ଠାକୁରଙ୍କର ହୋସ୍ ନ ଥିଲା । ସେ ଅବସ୍ଥାରେ "ମୁଁ, ମୋର" ନାହିଁ କି "ତୁ, ତୋର" ମଧ୍ୟ ନାହିଁ । ଦୁଇ ନାହିଁ କି ଏକ ମଧ୍ୟ ନାହିଁ । କାରଣ ଦୁଇର ସ୍ମୃତି ରହିଲେ ତ ଏକର ଉପଲବ୍ଧି ହେବ । ସେହି ଅବସ୍ଥାରେ ମନର ସବୁ ବୃତ୍ତି ସ୍ଥିର, ଶାନ୍ତ । କେବଳ ଆନନ୍ଦ,

ଆନନ୍ଦ । କେବଳ ଅଶରୀରୀ ଆତ୍ମା ନିଜର ଅନନ୍ତଚିନ୍ମୟ ଆନନ୍ଦମୟ ଅବସ୍ଥାରେ ମନବୁଦ୍ଧିର ଗୋଚରରେ ଯେତେ ପ୍ରକାର ଭାବରାଶି ରହିଛି, ସେସବୁର ଅତୀତ ଏକ ପ୍ରକାର ଭାବାତୀତ ଭାବରେ ହିଁ ଅବସ୍ଥିତ । ଏହି ନିର୍ବିକଳ୍ପ ଅବସ୍ଥାରେ ଠାକୁର ପ୍ରାୟ ଛଅମାସ କାଳ ଥିଲେ । ସେହି ଅବସ୍ଥାର ବର୍ଣ୍ଣନା କରି ଠାକୁର ନିଜ ମୁହଁରେ କହିଛନ୍ତି, "ଯେଉଁ ଅବସ୍ଥାରେ ସାଧାରଣ ଜୀବମାନେ ପହଞ୍ଚିଲେ ଆଉ ଫେରିପାରନ୍ତି ନାହିଁ—ସେହି ଅବସ୍ଥାରେ ମାତ୍ର ଏକୋଇଶିଟି ଦିନ ପର୍ଯ୍ୟନ୍ତ ଶରୀର ବଞ୍ଚିପାରେ, ତା'ପରେ ଶୁଖିଲା ପତ୍ର ଗଛରୁ ଖସି ପଡ଼ିଲା ପରି ଶରୀର ମରିଯାଏ—ସେହି ଅବସ୍ଥାରେ ଛଅମାସ କାଳ ଥିଲି । ଏ ଦେହ କ'ଣ ଆଉ ଥାଆନ୍ତା ? ସେହି ସମୟରେ ହିଁ ନଷ୍ଟ ହୋଇ ଯାଇଥାଆନ୍ତା । ତେବେ ସେହି ସମୟରେ ଜଣେ ସାଧୁ ଆସି ପହଞ୍ଚିଥିଲେ । ସେହି ଅବସ୍ଥା ଦେଖି ଚିହ୍ନି ପାରିଥିଲେ । ସେ ବୁଝିଥିଲେ—ଏହି ଦେହଟି ଦ୍ୱାରା ମା'ଙ୍କର ଅନେକ କାର୍ଯ୍ୟ ବର୍ତ୍ତମାନ ମଧ୍ୟ ବାକି ଅଛି । ଏହାକୁ ରକ୍ଷା କଲେ ଅନେକ ଲୋକଙ୍କର କଲ୍ୟାଣ ହେବ । ସେଥିପାଇଁ ଖାଇବାବେଳେ ଖାଦ୍ୟପଦାର୍ଥ ଆଣି ମାରି ମାରି ହୋସ୍ ଆଣିବାକୁ ଚେଷ୍ଟା କରୁଥିଲେ । ଟିକେ ହୋସ୍ ଆସୁଛି ଦେଖିଲେ ହିଁ ପାଟି ଭିତରେ ଖାଇବା ଦ୍ରବ୍ୟ ଗୁଞ୍ଜି ଦେଉଥିଲେ । ତା'ପରେ, ଏହି ଅବସ୍ଥାର କିଛି ଦିନପରେ ଶୁଣିବାକୁ ପାଇଲି ମା'ଙ୍କର ବାଣୀ—'ତୁ ଭାବମୁଖ* ହୋଇ ରହ । ଲୋକଶିକ୍ଷା ଲାଗି ଭାବମୁଖ ହୋଇ ରହ ।' ତା'ପରେ ପରେ ରୋଗ ହେଲା—ରକ୍ତ-ଆମାଶୟ । ଖୁବ୍ ପେଟ ଟାଣିଲା । ଶୂଳ ମାରିଲା—ଭାରି ଯନ୍ତ୍ରଣା ଭୋଗିବାକୁ ହେଲା । ସେହି

---

* ନିର୍ଗୁଣ ଓ ସଗୁଣର ମଧ୍ୟସ୍ଥଳରେ ଯେଉଁ ବିରାଟ 'ମୁଁ-ଭାବ' ବିଦ୍ୟମାନ, ତାହା ହିଁ ଭାବମୁଖ । ଏହା ଥିବାରୁ ବିରାଟ ମନରେ ଅଖଣ୍ଡ ଭାବର ସ୍ଫୁରଣ ହେଉଅଛି । ଅର୍ଥାତ୍ ଯେଉଁଥିରୁ ଯେତେପ୍ରକାର ବିଶ୍ୱଭାବର ଉତ୍ପତ୍ତି ହେଉଅଛି, ସେହି ବିରାଟ ମୁଁ ହେଉଛ ତୁମେ । ତାଙ୍କର ଇଚ୍ଛା ହିଁ ତୁମର ଇଚ୍ଛା—ଏହି ଭାବଟି ସର୍ବଦା ଅନୁଭବ କରି ଜୀବନ ଯାପନ କରିବା ଓ ଲୋକକଲ୍ୟାଣ କରିବା ହେଉଛି ଭାବମୁଖରେ ରହିବାର ତାତ୍ପର୍ଯ୍ୟ ।

ଯନ୍ତ୍ରଣା ପ୍ରାୟ ଛଅମାସ ଭୋଗି ଭୋଗି ତେବେ ଯାଇ ଦେହ ଉପରେ ମନର ସଚେତନତା ଆସିଲା । ସାଧାରଣ ମଣିଷ ଭଳି ହୋସ୍ ଫେରିଲା ।”

ମନୋରାଜ୍ୟରେ ଠାକୁରଙ୍କର ଯେ କି ପ୍ରବଳ ପ୍ରତାପ ଥିଲା, ତାହା କହିବା ଅସମ୍ଭବ । ସ୍ୱାମୀ ବିବେକାନନ୍ଦ ଏହି ସମ୍ପର୍କରେ କହିଛନ୍ତି, “ମନର ପରିସର ବାହାରେ ଥିବା ଜଡ଼ଶକ୍ତିମାନଙ୍କୁ କୌଣସି ଉପାୟରେ ଆୟତ୍ତ କରି ଗୋଟିଏ ଅଦ୍ଭୁତ ବ୍ୟାପାର (miracle) ଦେଖାଇବା ବଡ଼ କଥା ନୁହେଁ; କିନ୍ତୁ ଏହି ଯେଉଁ ପାଗଳା ବ୍ରାହ୍ମଣ ଲୋକଙ୍କ ମନକୁ ମାଟି ପିଣ୍ଡୁଳାଟିଏ ଭଳି ହାତରେ ଧରି ଭାଙ୍ଗୁଥିଲା, ପିଟୁଥିଲା, ଗଢ଼ୁଥିଲା, ସ୍ପର୍ଶମାତ୍ରେ ନୂତନ ଛାଞ୍ଚରେ ପକାଇ ନୂତନ ଭାବରେ ସୃଷ୍ଟି କରି ଦେଇପାରୁଥିଲା— ଏହାଠାରୁ ବଡ଼ ଆଶ୍ଚର୍ଯ୍ୟ ଘଟଣା (miracle) ମୁଁ ଆଉ କିଛି ଦେଖିନାହିଁ ।”

ଏହି ସମୟରେ ମଥୁରବାବୁଙ୍କ ଜୀବନରେ ଗୋଟିଏ ସାଂଘାତିକ ଦୁର୍ଘଟଣା ଘଟିବାକୁ ଯାଉଥିଲା; ମାତ୍ର ଠାକୁରଙ୍କର ଅଲୌକିକ କରୁଣା ଓ କ୍ଷମତା ବଳରେ ସେ ସେଥିରୁ ରକ୍ଷା ପାଇଥିଲେ । ମଥୁରବାବୁଙ୍କର ଦ୍ୱିତୀୟ ପକ୍ଷ ପତ୍ନୀ ଜଗଦମ୍ବା ଦାସୀ ଭୟଙ୍କର ଗ୍ରହଣୀ ରୋଗରେ ଆକ୍ରାନ୍ତ ହୋଇ ପଡ଼ିଲେ । ରୋଗ ଏତେ ଦୂର ବଢ଼ିଗଲା ଯେ କଲିକତାର ପ୍ରସିଦ୍ଧ ଡାକ୍ତର ଓ ବୈଦ୍ୟମାନେ ତାଙ୍କର ଜୀବନରକ୍ଷା ସମ୍ପର୍କରେ ପ୍ରଥମେ ସନ୍ଦିହାନ ଓ ପରେ ହତାଶ ହୋଇ ପଡ଼ିଲେ । ଜଗଦମ୍ବା ଦାସୀଙ୍କର ଏହି ସାଂଘାତିକ ରୋଗରେ ମଥୁରବାବୁ ଯେ କେବଳ ପ୍ରିୟତମା ପତ୍ନୀଙ୍କୁ ହରାଇଥାଆନ୍ତେ ତାହା ନୁହେଁ, ତତ୍ ସଙ୍ଗେ ସଙ୍ଗେ ତାଙ୍କ ଶାଶୁଙ୍କ ବିଷୟ ସମ୍ପତ୍ତି ଉପରୁ ମଧ୍ୟ ଆଧିପତ୍ୟ ହରାଇଥାଆନ୍ତେ । ରୋଗୀର ଅବସ୍ଥା ଦେଖି ଡାକ୍ତର ବୈଦ୍ୟମାନେ ଯେତେବେଳେ ନିରାଶ ହୋଇ ଫେରିଗଲେ ସେତେବେଳେ ମଥୁରବାବୁ କାତର ହୋଇ ଆସି ଠାକୁରଙ୍କ ପାଦତଳେ ପଡ଼ିଯାଇ ସଜଳନୟନରେ ଗଦ୍‌ଗଦ କଣ୍ଠରେ ବାରମ୍ବାର ଦୀନ ଭାବରେ ନିବେଦନ କଲେ, “ଆଜ୍ଞା, ମୋର ତ ଯାହା ହେବାର ତାହା ହୋଇ ଯିବାଭଳି ଲାଗୁଛି । ବାବା ! ଏଣିକି ତୁମର ସେବା-ଅଧିକାରରୁ ମଧ୍ୟ ଚିରଦିନ ଲାଗି ବଞ୍ଚିତ ହୋଇଯିବି । ଆଉ ତୁମର ସେବା କରିପାରିବି ନାହିଁ ।”

ମଥୁରଙ୍କର ଏଭଳି ଦୈନ୍ୟ ଦେଖି ଠାକୁର ଭାବାବିଷ୍ଟ ହୋଇ ତାଙ୍କୁ କହିଲେ, "ଭୟ ନାହିଁ ! ତୁମର ପତ୍ନୀ ଆରୋଗ୍ୟଲାଭ କରିବେ ।" ତା'ପରେ ମଥୁର ମନରେ ଠାକୁରଙ୍କର ଅଭୟ-ବାକ୍ୟ ପ୍ରତି ଅଗାଧ ବିଶ୍ୱାସ ଓ ଆସ୍ଥା ପୋଷଣ କରି ଜାନବଜାରକୁ ଫେରି ଆସିଲେ । ଆସି ଦେଖନ୍ତି ତ ପତ୍ନୀଙ୍କର ସାଂଘାତିକ ଅବସ୍ଥାର ବହୁ ପରିବର୍ତ୍ତନ ହୋଇ ଯାଇଛି । ଏ ସମ୍ପର୍କରେ ଠାକୁରଙ୍କ ଶ୍ରୀମୁଖରୁ ଶୁଣାଯାଇଛି—"ସେହିଦିନଠାରୁ ଜଗଦମ୍ବା ଦାସୀ ଧୀରେ ଧୀରେ ଆରୋଗ୍ୟ ଲାଭ କଲେ ଏବଂ ତାଙ୍କର ଏହି ରୋଗର ଭୋଗ (ନିଜ ଶରୀରକୁ ଦେଖାଇ) ଏହି ଶରୀର ଉପର ଦେଇ ହୋଇଗଲା । ଜଗଦମ୍ବା ଦାସୀଙ୍କୁ ଆରୋଗ୍ୟ କରି ଛଅମାସ କାଳ ପେଟରେ ପୀଡ଼ା ଓ ଅନ୍ୟାନ୍ୟ ଯନ୍ତ୍ରଣା ଭୋଗ କରିବାକୁ ହୋଇଥିଲା ।"

ଠାକୁରଙ୍କ ପ୍ରତି ମଥୁରବାବୁଙ୍କର ଅଦ୍‌ଭୁତ ପ୍ରେମପୂର୍ଣ୍ଣ ସେବା ବିଷୟରେ ଦିନେ ଠାକୁର କହିଥିଲେ, "ମଥୁର ଯେ ଚଉଦବର୍ଷ କାଳ ସେବା କରିଥିଲା, ତାହା କ'ଣ ସେ ଶୂନ୍ୟରେ କରିଥିଲା ? ମା' ତାକୁ (ନିଜର ଶରୀର ଦେଖାଇ) ଏହା ଭିତର ଦେଇ ନାନାପ୍ରକାର ଅଦ୍‌ଭୁତ ଅଦ୍‌ଭୁତ ସବୁ ଦେଖାଇଥିଲେ । ସେଥିପାଇଁ ସେ ଏତେ ଦୂର ସେବା କରୁଥିଲା ।"

## ଚତୁର୍ଦ୍ଦଶ ଅଧ୍ୟାୟ

# ଇସ୍‌ଲାମ ଧର୍ମ ସାଧନ ଓ ଭୈରବୀ ବ୍ରାହ୍ମଣୀଙ୍କ ଶେଷ କଥା

ଠାକୁରଙ୍କ ଶରୀର ପୂର୍ବୋକ୍ତ କାରଣ ଯୋଗୁଁ ବ୍ୟାଧିଗ୍ରସ୍ତ ହେଲେ ସୁଦ୍ଧା ତାଙ୍କର ଦେହବୋଧବର୍ଜିତ ମନ ବର୍ତ୍ତମାନ ଯେ କି ଅପୂର୍ବ ଶାନ୍ତ ଓ ନିରବଚ୍ଛିନ୍ନ ଆନନ୍ଦରେ ଅବସ୍ଥାନ କରୁଥିଲା, ତାହା ବର୍ଣ୍ଣନା କରିବା ସହଜ ନୁହେଁ । ଠାକୁର ନିଜେ କହୁଥିଲେ—ଏହି ସମୟରେ ତାଙ୍କ ନିକଟକୁ ବେଦାନ୍ତମାର୍ଗ-ବିଚରଣଶୀଳ ସାଧକ-ଶ୍ରେଣୀ ପରମହଂସମାନେ ଆଗମନ କରୁଥିଲେ ଏବଂ 'ନେତି ନେତି', 'ଅସ୍ତିଭାତିପ୍ରିୟ', 'ଅୟମାତ୍ମାବ୍ରହ୍ମ' ପ୍ରଭୃତି ବେଦାନ୍ତପ୍ରସିଦ୍ଧ ତତ୍ତ୍ୱସମୂହର ବିଚାରଧ୍ୱନିରେ ତାଙ୍କର ବାସଗୃହ ନିରନ୍ତର ମୁଖରିତ ହୋଇ ରହୁଥିଲା । ଏହିସବୁ ତତ୍ତ୍ୱଗୁଡ଼ିକର ବିଚାର କାଳରେ ସେମାନେ ଯେତେବେଳେ କୌଣସି ବିଷୟରେ ସୁମୀମାଂସାରେ ଉପନୀତ ହୋଇ ପାରୁନଥିଲେ, ସେତେବେଳେ ଠାକୁରଙ୍କୁ ମଧ୍ୟସ୍ଥ ହୋଇ ତା'ର ମୀମାଂସା କରିଦେବାକୁ ପଡ଼ୁଥିଲା । ଜାତିସ୍ମରତ୍ୱ ସହାୟତାରେ ଠାକୁର ଏହି କାଳରେ ସମ୍ୟକ୍ ବୁଝିଥିଲେ ଯେ, ସେ ନିତ୍ୟ-ଶୁଦ୍ଧ-ବୁଦ୍ଧ-ମୁକ୍ତ-ସ୍ୱଭାବବାନ୍ ଆଧିକାରିକ ଅବତାର ପୁରୁଷ; ବର୍ତ୍ତମାନ ଯୁଗର ଧର୍ମଗ୍ଲାନି ଦୂର କରି ଲୋକକଲ୍ୟାଣ-ସାଧନ ନିମିତ୍ତ ତାହାଙ୍କୁ ଦେହଧାରଣ ଓ ତପସ୍ୟାଦି କରିବାକୁ ପଡ଼ୁଅଛି ।

[ଏହି ଅବସରରେ ଜାତିସ୍ମରତ୍ୱ ବିଷୟଟି କ'ଣ ତାହା ବୁଝାଯାଉ । "(ସଂସ୍କାରସାକ୍ଷାତ୍‌କରଣାତ୍) ପୂର୍ବଜାତିଜ୍ଞାନମ୍"—ପାତଞ୍ଜଳସୂତ୍ର, ବିଭୂତି-ପାଦ, ୧୮ଶ ସୂତ୍ର ।—ଶାସ୍ତ୍ର କହନ୍ତି, ଅଦ୍ୱୈତ ଭାବର ସହାୟତାରେ ଜ୍ଞାନସ୍ୱରୂପରେ ପୂର୍ଣ୍ଣଭାବରେ ଅବସ୍ଥାନ କରିବା ପୂର୍ବରୁ ସାଧକ ଜାତିସ୍ମରତ୍ୱ ଲାଭ କରିଥାଏ । ଅର୍ଥାତ୍, ଏହି ଭାବର ପରିପାକରେ ତାଙ୍କର ସ୍ମୃତି

ଏତେଦୂର ପରିଣତ ଅବସ୍ଥାରେ ଉପସ୍ଥିତ ହୁଏ ଯେ ଇତଃପୂର୍ବେ ସେ ଯେଉଁ ଭାବରେ, ଯେପରି, ଯେତେଥର ଶରୀର ପରିଗ୍ରହପୂର୍ବକ ଯାହା କିଛି କରିଥିଲେ, ସେସବୁ କଥା ତାଙ୍କର ସ୍ମରଣ-ପଥରେ ଉଦିତ ହୋଇଥାଏ ।] ଏହି ଜାତିସ୍ମର-ଚେତନା ପ୍ରାପ୍ତ ହୋଇ ଠାକୁର ବୁଝିଥିଲେ—ପୂର୍ବ ପୂର୍ବ ଯୁଗରେ ଯେ 'ଶ୍ରୀରାମ' ଏବଂ 'ଶ୍ରୀକୃଷ୍ଣ' ରୂପେ ଆବିର୍ଭୂତ ହୋଇ ଲୋକକଲ୍ୟାଣ-ସାଧନ କରିଥିଲେ, ସେ ହିଁ ବର୍ତ୍ତମାନ କାଳରେ ପୁନର୍ବାର ଶରୀର ପରିଗ୍ରହପୂର୍ବକ 'ଶ୍ରୀରାମକୃଷ୍ଣ' ରୂପରେ ଆବିର୍ଭୂତ ହୋଇଅଛନ୍ତି । ଅଦ୍ୱୈତ ଭାବର କଥା ଜିଜ୍ଞାସା କଲେ ସେ କହୁଥିଲେ, "ଏହା ଶେଷ କଥାରେ ! ଶେଷ କଥା ! ଈଶ୍ୱରପ୍ରେମର ଚରମ ପରିଣତିସ୍ୱରୂପ ସର୍ବଶେଷରେ ଏହା ସାଧକ-ଜୀବନରେ ସ୍ୱତଃ ଆସି ଉପସ୍ଥିତ ହୋଇଥାଏ । ଏ କଥା ଜାଣିବ ଯେ ସବୁ ମତର ଏହା ଶେଷ କଥା ଏବଂ ଯେତେ ମତ ସେତେ ପଥ ।"

ଅଦ୍ୱୈତ ବିଜ୍ଞାନରେ ପ୍ରତିଷ୍ଠିତ ହୋଇ ଠାକୁରଙ୍କ ମନ ବର୍ତ୍ତମାନ କିଭଳି ଉଦାରଭାବାପନ୍ନ ହୋଇଥିଲା, ତାହା ଏହି ସମୟର ଗୋଟିଏ ଘଟଣାରେ ସ୍ପଷ୍ଟ ବୁଝିହୁଏ । ୧୮୬୬ ମସିହାର କଥା । ଗୋବିନ୍ଦ ରାୟ ନାମକ ଜଣେ ସୁଫୀ-ଧର୍ମାବଲମ୍ବୀ ନିଷ୍ଠାବାନ ମୁସଲମାନ ସାଧକ ଦକ୍ଷିଣେଶ୍ୱର କାଳୀବାଡ଼ିରେ ଆସି ଉପସ୍ଥିତ ହେଲେ । ସେହି ସ୍ଥାନଟି ତାଙ୍କୁ ଅତ୍ୟନ୍ତ ଧର୍ମାନୁକୂଳ ବୋଧ ହେଲା । ସେ ପଞ୍ଚବଟୀର ଛାୟାରେ ଆସନ ବିସ୍ତୀର୍ଣ୍ଣ କରି ସେଠାରେ କିଛି କାଳ ଅବସ୍ଥାନ କରିବାକୁ ଲାଗିଲେ । ପ୍ରେମିକ ଗୋବିନ୍ଦଙ୍କୁ ଦେଖିବା ମାତ୍ରେ ଠାକୁର ତାଙ୍କ ପ୍ରତି ଆକୃଷ୍ଟ ହୋଇ ପଡ଼ିଲେ ଏବଂ ଖୁବ୍ ଶୀଘ୍ର ତାଙ୍କଠାରୁ ଦୀକ୍ଷା ଗ୍ରହଣ କରି ଇସ୍‌ଲାମ ଧର୍ମ ସାଧନରେ ଲାଗିପଡ଼ିଲେ ।

ଏହି ଇସଲାମ ଧର୍ମ ସାଧନ କଲାବେଳେ ସେ ମଥୁରାନାଥଙ୍କ ଘରେ ରହୁଥିଲେ । ମଥୁରାନାଥ ଜଣେ ମୁସଲମାନ ବବୁର୍ଚ୍ଚି (ରାନ୍ଧୁଣୀୟା) ମଗାଇ ତା'ର ନିର୍ଦ୍ଦେଶରେ ଜଣେ ବ୍ରାହ୍ମଣ ପାଚକଙ୍କ ଦ୍ୱାରା ମୁସଲମାନୀ ପ୍ରଣାଳୀରେ ଠାକୁରଙ୍କ ପାଇଁ ଖାଦ୍ୟଦ୍ରବ୍ୟାଦି ରନ୍ଧନକରି ତାଙ୍କୁ ଖୁଆଉଥିଲେ । ଠାକୁରଙ୍କ ମୁହଁରୁ ଏହି କାଳର ସାଧନା ବିଷୟରେ ଶୁଣିବାକୁ ମିଳେ । ସେ କହୁଥିଲେ, "ଏହି ସମୟରେ 'ଆଲ୍ଲା' ମନ୍ତ୍ର ଜପ କରୁଥିଲି ଏବଂ ହିନ୍ଦୁଭାବ ମନ ଭିତରୁ

ସମ୍ପୂର୍ଣ୍ଣ ଲୁପ୍ତ ହୋଇଯିବା ହେତୁ ହିନ୍ଦୁ ଦେବଦେବୀଙ୍କୁ ପ୍ରଣାମ କରିବା ଦୂରେ ଥାଉ, ଦର୍ଶନ କରିବାକୁ ମଧ୍ୟ ପ୍ରବୃତ୍ତି ହେଉନଥିଲା । ଏହି ଭାବରେ ମାତ୍ର ତିନିଦିନ ଥିଲି । ଏହି ତିନିଦିନର ସାଧନାରେ ଇସଲାମ୍ ଧର୍ମ ସାଧନର ଫଳ ସମ୍ୟକ୍ ଭାବେ ହସ୍ତଗତ ହୋଇଥିଲା ।''

ଏହି ଇସଲାମ୍ ଧର୍ମ ସାଧନ କଲାବେଳେ ଠାକୁର ପ୍ରଥମେ ଜଣେ ଦୀର୍ଘଶ୍ମଶ୍ରୁ ବିଶିଷ୍ଟ ସୁଗମ୍ଭୀର ଜ୍ୟୋତିର୍ମୟ ପୁରୁଷପ୍ରବରଙ୍କର ଦିବ୍ୟ ଦର୍ଶନ ଲାଭ କରିଥିଲେ ଏବଂ ଠିକ୍ ପରେ ପରେ ସଗୁଣ ବିରାଟ ବ୍ରହ୍ମଙ୍କର ଉପଲବ୍‌ଧିପୂର୍ବକ ତୁରୀୟ ନିର୍ଗୁଣ ବ୍ରହ୍ମରେ ତାଙ୍କର ମନ ଲୀନ ହୋଇଯାଇଥିଲା । ଠାକୁର କହୁଥିଲେ,''ହିନ୍ଦୁ ଓ ମୁସଲମାନମାନଙ୍କ ଭିତରେ ଯେପରି ଏକ ବିରାଟ ପର୍ବତ -ପ୍ରମାଣ ବ୍ୟବଧାନ ରହିଆସିଛି ! ପରସ୍ପରର ଚିନ୍ତାପ୍ରଣାଳୀ, ଧର୍ମବିଶ୍ୱାସ ଓ କାର୍ଯ୍ୟକଳାପ ପରସ୍ପର ନିକଟରେ ସମ୍ପୂର୍ଣ୍ଣ ଦୁର୍ବୋଧ ହୋଇ ରହିଯାଇଛି ।'' ଏହି ଅଜ୍ଞତାପ୍ରସୂତ ବ୍ୟବଧାନ ଯେ ଦିନେ ଅନ୍ତର୍ହିତ ହେବ ଏବଂ ଉଭୟେ ପ୍ରେମରେ ପରସ୍ପରକୁ ଆଲିଙ୍ଗନ କରିବେ ଯୁଗାବତାର ଠାକୁରଙ୍କର ମୁସଲମାନ ଧର୍ମ ସାଧନ ନିଶ୍ଚିତଭାବରେ ଏହାର ପୂର୍ବ ସୂଚନାସ୍ୱରୂପ ବୋଲି ବୁଝିବାକୁ ହେବ । ['ରାମକୃଷ୍ଣ ସଂଘ—ଆଦର୍ଶ ଓ ଇତିହାସ' ଗ୍ରନ୍ଥରେ ୩୪-୩୫ ପୃଷ୍ଠାରେ ଉଲ୍ଲେଖ ଅଛି ଯେ—''ବୈଦାନ୍ତିକ ଯେଉଁ ଭଳି ଜାତିଧର୍ମ ନିର୍ବିଶେଷରେ ସମଗ୍ର ନରନାରୀଙ୍କୁ ଏକ ବ୍ରହ୍ମ ବା ଆତ୍ମସ୍ୱରୂପ ବୋଲି ଜ୍ଞାନ କରନ୍ତି, ସେହିପରି ଇସଲାମ୍‌ଧର୍ମୀଗଣ ସାମାଜିକ ଦୃଷ୍ଟିରୁ ସେମାନଙ୍କ ଧର୍ମାବଲମ୍ବୀ-ମାନଙ୍କୁ ଭ୍ରାତୃଭାବରେ ଦେଖିଆଆନ୍ତି ଏବଂ ତଦନୁରୂପ ବ୍ୟବହାର କରିଆଆନ୍ତି । କହିବା ବାହୁଲ୍ୟ ଯେ ବେଦାନ୍ତର ଏହି ଆତ୍ମିକ ଐକ୍ୟ ତଥା ଅଭେଦତ୍ୱମୂଳକ ସାମ୍ୟ-ମୈତ୍ରୀ ଓ ସମଦର୍ଶନ ଏବଂ ଇସ୍‌ଲାମ୍‌ର ସାମାଜିକ ସାମ୍ୟ, ଭ୍ରାତୃତ୍ୱ ଓ ସମଦର୍ଶିତା ମିଳିତ ହୋଇ ଏକ ପୂର୍ଣ୍ଣାଙ୍ଗ ଭାରତ ଗଢ଼ି ତୋଳିବେ ! ସମନ୍ୱୟର ଆଚାର୍ଯ୍ୟ ଶ୍ରୀରାମକୃଷ୍ଣଙ୍କର ଇସ୍‌ଲାମ୍ ଧର୍ମସାଧନାର ପୂର୍ଣ୍ଣ ସାର୍ଥକତା ଏହା ମଧ୍ୟରେ ସୁସ୍ପଷ୍ଟ ସୂଚିତ ହୋଇଅଛି ।'']

ଠାକୁରଙ୍କର ଏହି ଅଦ୍ୱୈତଭାବ ଯେ କେତେଦୂର ପର୍ଯ୍ୟନ୍ତ ଅନ୍ତରରେ ବଦ୍ଧମୂଳ ଥିଲା, ତାହା ନିମ୍ନଲିଖିତ ଘଟଣାରୁ ବେଶ୍ ବୁଝି ହେବ । ଥରେ

ଠାକୁର କାଳୀବାଡ଼ିର ବନ୍ଧାଣ୍ଡ ଗଙ୍ଗାଘାଟର ଚବୁତରା ଉପରେ ଠିଆ ହୋଇ ଭାବାବେଶରେ ଗଙ୍ଗା ଦର୍ଶନ କରୁଥିଲେ । ସେତେବେଳେ ଘାଟରେ ଦୁଇଟି ନୌକା ଲାଗିଥିଲା ଏବଂ ଦୁଇଟି ନୌକାର ମାଝିଙ୍କ ଭିତରେ କୌଣସି କାରଣରୁ କଳହ ଲାଗିଥିଲା । ଏହି କଳି କ୍ରମଶଃ ଏତେ ବଢ଼ିଗଲା ଯେ ତାଙ୍କ ଭିତରୁ ସବଳ ମାଝି ଜଣକ ଦୁର୍ବଳ ମାଝି ପିଠିରେ ଭୀଷଣ ଜୋର୍‌ରେ ଚଟକଣାଟାଏ ମାରିଦେଲା । ଠାକୁର ଏହା ଦେଖିବା ମାତ୍ରେ ଚିତ୍କାର କରି କାନ୍ଦି ଉଠିଲେ । ତାଙ୍କର ଏହି କାତର କ୍ରନ୍ଦନ ଶୁଣି କାଳୀବାଡ଼ିରୁ ହୃଦୟ ଦୌଡ଼ି ଆସିଲେ ଏବଂ ଦେଖିଲେ ଯେ ଠାକୁରଙ୍କର ପିଠି ଫୁଲି ଯାଇଛି ଓ ପାଞ୍ଚ ଆଙ୍ଗୁଠିର ନାଲି ଦାଗ ପଡ଼ିଛି । ଏହା ଦେଖିବା ମାତ୍ରେ ହୃଦୟ କ୍ରୁଦ୍ଧ କଣ୍ଠରେ କହିଲେ, "ମାମୁଁ ! କିଏ ତୁମକୁ ଏମିତି ମାରିଛି ଶୀଘ୍ର କହ । ମୁଁ ତା'ର ମୁଣ୍ଡ ଫଟାଇ ଦେବି ।" ହୃଦୟଙ୍କର ରୁଦ୍ରମୂର୍ତ୍ତି ଦେଖି ନାଉରିଆମାନେ ନୌକା ଧରି ଗଙ୍ଗାମଝିକୁ ପଳାଇଗଲେ । ଠାକୁରଙ୍କ ମୁହଁରୁ ସବୁକଥା ଶୁଣି ହୃଦୟ ଅବାକ୍ ହୋଇ ଠିଆ ହୋଇ ରହିଲେ । ଯେଉଁ ମାଝିଟିର ପିଠିରେ ମାଡ଼ ବସିଥିଲା—ତାହାର ଆଘାତ ତଟଠାରୁ ବହୁ ଦୂରରେ ଠିଆ ହୋଇଥିବା ଠାକୁରଙ୍କ ପିଠିରେ ଏପରି ଲାଗିଛି ଯେ ପିଠିରେ ତା'ର ନିଦାରୁଣ ଚିହ୍ନ ପଡ଼ିଯାଇଛି । ସମଗ୍ର ପୃଥିବୀ ସହିତ ଏକୀଭୂତ ଆତ୍ମା ଏହି ପରମ-କାରୁଣିକ ଅଥଚ ଅଶିକ୍ଷିତ ପାଗଳ ଠାକୁରଙ୍କ ମୁହଁରୁ ଏ କଥା ଶୁଣିଲେ କେହି କ'ଣ ଏହି ବୈଜ୍ଞାନିକ ଯୁଗରେ ସତକୁସତ ଏହା ବିଶ୍ୱାସ କରିପାରିବ ?

କିଛିଦିନ ପରେ ଆସିଗଲା ବର୍ଷାଋତୁ । ଗଙ୍ଗାନଦୀର ସ୍ୱଚ୍ଛ ଜଳ ପଙ୍କିଳ ହୋଇ ଉଠିଲା । ଏହି ସମୟରେ ଠାକୁରଙ୍କର ପେଟର ପୀଡ଼ା ବଢ଼ିଯାଏ । ଏଥର ମଧ୍ୟ ତାହା ହିଁ ଆଶଙ୍କା କରି ମଥୁରବାବୁ ପ୍ରଭୃତି ସମସ୍ତେ ସ୍ଥିର କଲେ ଯେ ଅଳ୍ପ କେତୋଟି ମାସ ଠାକୁର ନିଜ ଜନ୍ମଭୂମି କାମାରପୁକୁରରେ ଅତିବାହିତ କଲେ ଭଲ ହେବ । ତାହା ହିଁ ହେଲା । ୧୮୬୭ ମସିହା ମେ ମାସର ଏକ ଶୁଭ ମୁହୂର୍ତ୍ତରେ ଠାକୁର ଜନ୍ମଭୂମି ଉଦ୍ଦେଶ୍ୟରେ କାଳୀବାଡ଼ି ଛାଡ଼ି ବାହାରି ଗଲେ । ତାଙ୍କ ସହିତ ଭଣଜା ହୃଦୟ ଓ ଭୈରବୀ ବ୍ରାହ୍ମଣୀ ମଧ୍ୟ ଗଲେ । ତାଙ୍କର ବୃଦ୍ଧା ଜନନୀ କିନ୍ତୁ ସେହି ଦକ୍ଷିଣେଶ୍ୱରରେ ହିଁ

ରହିଲେ । ଏହା ପୂର୍ବରୁ ପ୍ରାୟ ଆଠ ବର୍ଷ କାଳ ଠାକୁର କାମାରପୁକୁର ଆସିନଥିଲେ । ଏତେଦିନ ପରେ ତାଙ୍କୁ ପାଇ ଏହି ଦରିଦ୍ର ସଂସାରରେ ବର୍ତ୍ତମାନ ଆନନ୍ଦର ହାଟ ବସିଗଲା । ଏହି ଆନନ୍ଦକୁ ପରିପୂର୍ଣ୍ଣ କରିବା ପାଇଁ ଘରର ସ୍ତ୍ରୀ-ଲୋକମାନଙ୍କର ପରାମର୍ଶରେ ନବବଧୂକୁ ଆଣିବା ଲାଗି ଜୟରାମବାଟୀ ଗ୍ରାମକୁ ଲୋକ ପଠାଗଲା । ବିବାହ ପରେ ନବବଧୂର ଭାଗ୍ୟରେ ଥରେ ମାତ୍ର ସ୍ୱାମୀମୁଖ ଦର୍ଶନର ସୌଭାଗ୍ୟ ଘଟିଥିଲା—ଯେତେ-ବେଳେ ମା’ ସାରଦାମଣିଙ୍କୁ ମାତ୍ର ସାତବର୍ଷ ଏବଂ କୁଳର ପ୍ରଥାନୁସାରେ ସ୍ୱାମୀ ହିସାବରେ ଠାକୁରଙ୍କୁ ଶ୍ୱଶୁରଘରକୁ ଦିନକ ପାଇଁ କ୍ୱାଁଇ ଡାକରାରେ ଯିବାକୁ ପଡ଼ିଥିଲା । ସେହି ଘଟଣାର ପ୍ରାୟ ଛଅବର୍ଷ ପରେ, ମାଆଙ୍କୁ ଯେତେ-ବେଳେ ତେରବର୍ଷ ବୟସ, ସେତେବେଳେ ସେ କାମାରପୁକୁରକୁ ପୁଅାଣୀ ହୋଇ ଆସିଥିଲେ । କିନ୍ତୁ ସେତେବେଳେ ଠାକୁର ଓ ତାଙ୍କର ଜନନୀ ଦକ୍ଷିଣେଶ୍ୱରରେ ଥିଲେ । ଫଳରେ ସାରଦାମଣିଙ୍କ ଭାଗ୍ୟରେ ସେମାନଙ୍କୁ ଦେଖିବାର ସୁଯୋଗ ଘଟି ନ ଥିଲା । ଏହାର ପ୍ରାୟ ଛଅମାସ ପରେ ପୁନରାୟ ଶ୍ୱଶୁରଘରକୁ ଆସି ଦେଢ଼ମାସ କାଳ ରହିଲେ ମଧ୍ୟ ପୂର୍ବୋକ୍ତ କାରଣରୁ ସେ ସେମାନଙ୍କୁ ଦେଖି ପାରି ନ ଥିଲେ । ବର୍ତ୍ତମାନ ସାରଦାମଣି ଚଉଦ ବର୍ଷରେ ପଦାର୍ପଣ କଲେଣି । ଗୋଟିଏ ଦିଗରୁ କହିବାକୁ ଗଲେ, ବିବାହ ପରେ ଏହା ହିଁ ତାଙ୍କର ପ୍ରଥମ ସ୍ୱାମୀ ସନ୍ଦର୍ଶନ ।

କାମାରପୁକୁରରେ ଠାକୁର ଏଥର ଛଅ ସାତମାସ କାଳ ଥିଲେ । ଧର୍ମଦାସ ଲାହାଙ୍କର ସରଳହୃଦୟା ଭକ୍ତିମତୀ ବିଧବା କନ୍ୟା ପ୍ରସନ୍ନ, ଠାକୁରଙ୍କ ବାଲ୍ୟସଖା ଗୟାବିଷ୍ଣୁ ଲାହା, ସରଳବିଶ୍ୱାସୀ ଶ୍ରୀନିବାସ ଶଙ୍ଖାରି, ପାଇନ୍ ପରିବାରର ଭକ୍ତିପରାୟଣା ନାରୀବୃନ୍ଦ, ଠାକୁରଙ୍କର ଭିକ୍ଷାମାତା କମାରୁଣୀ ଧନୀ ପ୍ରଭୃତି ପ୍ରାୟ ସବୁବେଳେ ତାଙ୍କ ନିକଟରେ ଉପସ୍ଥିତ ରହୁଥିଲେ । ଯେଉଁମାନେ ବିଷୟ ବା ଗୃହକର୍ମ-ଜଞ୍ଜାଳରେ ରହି ସବୁବେଳେ ଆସିପାରୁ ନ ଥିଲେ, ସେମାନେ ସକାଳେ, ସନ୍ଧ୍ୟାବେଳେ, ବା ମଧ୍ୟାହ୍ନ ସମୟରେ ଅବସର ପାଇଲେ ହିଁ ଆସି ପହଞ୍ଚି ଯାଉଥିଲେ ଏବଂ ଠାକୁର ସେମାନଙ୍କ

ସଙ୍ଗେ ହାସ୍ୟ, କୌତୁକ, ପରିହାସ ଛଳରେ ଈଶ୍ୱରଙ୍କ କଥାର ଅବତାରଣା କରି ସେମାନଙ୍କ ଭିତରେ ଭଗବଦ୍‌ଭାବ ସଞ୍ଚାର କରି ଦେଉଥିଲେ ।

ଠାକୁର ଏଥର କାମାରପୁକୁର ଆସି ଏକ ସୁମହତ୍ କର୍ତ୍ତବ୍ୟପାଳନରେ ଯତ୍ନପରାୟଣ ହୋଇଥିଲେ । ନିଜ ପତ୍ନୀ ତାଙ୍କ ପାଖକୁ ଆସନ୍ତୁ ବା ନ ଆସନ୍ତୁ ଏ ସମ୍ବନ୍ଧରେ ଉଦାସୀନ ଥିଲେ ସୁଦ୍ଧା ଯେତେବେଳେ ସେ ତାଙ୍କର ସେବା କରିବା ଲାଗି କାମାରପୁକୁରରେ ଆସି ଉପସ୍ଥିତ ହେଲେ, ଠାକୁର ସେତେ-ବେଳେ ତାଙ୍କୁ ଶିକ୍ଷାଦୀକ୍ଷାଦି ପ୍ରଦାନ କରି ତାଙ୍କର କଲ୍ୟାଣ-ସାଧନରେ ତତ୍ପର ହୋଇଉଠିଲେ । ଠାକୁରଙ୍କୁ ବିବାହିତ ଜାଣି ଶ୍ରୀମଦାଚାର୍ଯ୍ୟ ତୋତାପୁରୀ ତାଙ୍କୁ ଥରେ କହିଥିଲେ, "ସ୍ତ୍ରୀ ନିକଟରେ ଥିଲେ ମଧ୍ୟ ଯାହାର ତ୍ୟାଗ, ବୈରାଗ୍ୟ, ବିବେକ, ବିଜ୍ଞାନ, ସର୍ବତୋଭାବରେ ଅକ୍ଷୁଣ୍ଣ ଥାଏ, ସେହି ବ୍ୟକ୍ତି ହିଁ ଯଥାର୍ଥରେ ବ୍ରହ୍ମଭାବରେ ପ୍ରତିଷ୍ଠିତ ହୋଇଥାଆନ୍ତି । ସ୍ତ୍ରୀ ଓ ପୁରୁଷ ଉଭୟଙ୍କୁ ଯେ ସମଭାବରେ ସର୍ବଦା ଆତ୍ମା ବୋଲି ଦେଖିପାରେ ଓ ତଦନୁରୂପ ବ୍ୟବହାର କରିପାରେ, ତାହାର ହିଁ ଯଥାର୍ଥ ବ୍ରହ୍ମବିଜ୍ଞାନଲାଭ ହୋଇଥାଏ ।" ତୋତାପୁରୀଙ୍କର ଏହି କଥା ଠାକୁରଙ୍କର ସ୍ମରଣପଥରେ ଉଦିତ ହୋଇ ବହୁକାଳ ବ୍ୟାପୀ ସାଧନାଲବ୍ଧ ନିଜ ବିଜ୍ଞାନର ପରୀକ୍ଷାରେ ଏବଂ ନିଜ ପତ୍ନୀଙ୍କର କଲ୍ୟାଣସାଧନରେ ତାଙ୍କୁ ନିଯୁକ୍ତ କରି ରଖିଲା ।

କିନ୍ତୁ ଭୈରବୀ ବ୍ରାହ୍ମଣୀ ବର୍ତ୍ତମାନ ଠାକୁରଙ୍କର ଏହି ପତ୍ନୀଙ୍କ ପ୍ରତି ଦାୟିତ୍ୱ ଓ କର୍ତ୍ତବ୍ୟପରାୟଣତାର ସୂକ୍ଷ୍ମ ମର୍ମଟି ବୁଝିପାରିଲେ ନାହିଁ; ବରଂ ତାଙ୍କର ସନ୍ଦେହ ହେଲା ଯେ ଠାକୁରଙ୍କର ଏହି ପତ୍ନୀପରାୟଣତା ଯୋଗୁଁ ତାଙ୍କର ବ୍ରହ୍ମଚର୍ଯ୍ୟରେ ହାନି ଘଟିବ । ସ୍ତ୍ରୀଙ୍କ ସହିତ ନ ମିଶିବା ପାଇଁ ସେ ଠାକୁରଙ୍କୁ ଉପଦେଶ ଦେଲେ; ମାତ୍ର ଠାକୁର ସେ ଉପଦେଶ ରକ୍ଷା କରି-ପାରିଲେ ନାହିଁ । ବ୍ରାହ୍ମଣୀ ଠାକୁରଙ୍କ ପ୍ରତି କ୍ରମଶଃ ଅଭିମାନୀ ହୋଇ ପଡ଼ିଲେ ଓ ଏହି ଅଭିମାନ ଅହଙ୍କାରରେ ପରିଣତ ହେଲା । କ୍ରମେ ଠାକୁରଙ୍କ ପ୍ରତି ତାଙ୍କର ଶ୍ରଦ୍ଧା ମଧ୍ୟ କମିଆସିଲା । ଏହା ଫଳରେ ସାମାନ୍ୟ କାରଣରେ ଓ ସମୟ ସମୟରେ ବିନା କାରଣରେ ମଧ୍ୟ ସେ ବିରକ୍ତ ହେବାକୁ ଲାଗିଲେ ଏବଂ ଘରର ସ୍ତ୍ରୀ-ଲୋକମାନଙ୍କ ଉପରେ ଅସନ୍ତୁଷ୍ଟ ହୋଇ ସେମାନଙ୍କୁ

ତିରସ୍କାର କରିବାକୁ ଲାଗିଲେ । ଠାକୁର କିନ୍ତୁ ଭୈରବୀଙ୍କର ଏଭଳି ଅନ୍ୟାୟ ଓ ଅସ୍ୱାଭାବିକ ଆଚରଣ ଦେଖି ତିଳେମାତ୍ର କ୍ଷୁଣ୍ଣ ହେଉ ନ ଥିଲେ କିମ୍ବା ତାଙ୍କ ପ୍ରତି ଠାକୁରଙ୍କର ପୂର୍ବ ଶ୍ରଦ୍ଧା ତିଳାର୍ଦ୍ଧ ମଧ୍ୟ କମି ନ ଥିଲା । ତାଙ୍କର ନିର୍ଦ୍ଦେଶରେ ସାରଦାଦେବୀ ଭୈରବୀଙ୍କୁ ସର୍ବଦା ଶାଶୁତୁଲ୍ୟ ଭକ୍ତି ମାନ୍ୟ ଓ ସେବା ମଧ୍ୟ କରି ଚାଲିଥିଲେ । ତାଙ୍କର କେଉଁ କଥା ବା କାର୍ଯ୍ୟରେ କେବେ ହେଲେ ସାମାନ୍ୟତମ ପ୍ରତିବାଦ ସୁଦ୍ଧା କରୁ ନ ଥିଲେ ।

ଯେତେ ବୁଦ୍ଧିମାନ ବ୍ୟକ୍ତି ହେଉ ପଛେ, ଅଭିମାନ ଅହଙ୍କାର ବୃଦ୍ଧି ପାଇଲେ ମନୁଷ୍ୟର ମତିଭ୍ରମ ହୋଇଥାଏ । ଅହଂକାରର ବଶବର୍ତ୍ତିନୀ ହୋଇ ବ୍ରାହ୍ମଣୀ ଏହି ସମୟରେ ଦିନେ ବିଷମ ଅନର୍ଥ ଘଟାଇ ବସିଲେ । ଶ୍ରୀନିବାସ ଶଙ୍ଖାରୀ କଥା ଆଗରୁ କୁହାଯାଇଛି । ଉଚ୍ଚ ଜାତିରେ ଜନ୍ମଗ୍ରହଣ କରି ନ ଥିଲେ ସୁଦ୍ଧା ଶ୍ରୀନିବାସ ଭଗବଦ୍‌ଭକ୍ତିରେ ଅନେକ ବ୍ରାହ୍ମଣଙ୍କ ଅପେକ୍ଷା ମଧ୍ୟ ଉନ୍ନତ ଥିଲେ । ଦିନେ ସେ ଶ୍ରୀଶ୍ରୀରଘୁବୀରଙ୍କ ପ୍ରସାଦ ପାଇବା ଲାଗି ଠାକୁରଙ୍କ ପାଖକୁ ଆସିଲେ । ମଧ୍ୟାହ୍ନ କାଳ ପର୍ଯ୍ୟନ୍ତ ନାନା ଭକ୍ତିପ୍ରସଙ୍ଗ ଚାଲିଲା । ତା'ପରେ ଶ୍ରୀଶ୍ରୀରଘୁବୀରଙ୍କ ଭୋଗରାଗ ସଂପୂର୍ଣ୍ଣ ହେବାରୁ ଶ୍ରୀନିବାସ ପ୍ରସାଦ ସେବା କରିବାକୁ ବସିଲେ । ଭୋଜନ ସରିବାରୁ ପ୍ରଚଳିତ ପ୍ରଥାନୁସାରେ ସେ ଆପଣାର ଉଚ୍ଛିଷ୍ଟ ପରିଷ୍କାର କରିବାକୁ ଉଦ୍ୟତ ହେଲେ । କିନ୍ତୁ ବ୍ରାହ୍ମଣୀ ତାଙ୍କୁ ନିଷେଧ କରି କହିଲେ, "ତୁମେ ଆପଣା ଉଚ୍ଛିଷ୍ଟ ଉଠାଅ ନାହିଁ— ଆମେ ଉଠାଇବୁ ।" ଶ୍ରୀନିବାସ ସେ କଥା ମାନି ମୁହଁହାତ ଧୋଇ ନିଜ ଘରକୁ ଗଲେ । କିନ୍ତୁ ଏ ଘଟଣାରେ ଗାଁର ଅନ୍ୟ ବ୍ରାହ୍ମଣ ଘରର ଝିଅ ବୋହୂମାନେ ବିଚଳିତ ହୋଇ ଭୈରବୀ ବ୍ରାହ୍ମଣୀଙ୍କ ଉପରେ ବିରକ୍ତ ହୋଇ କହିଲେ, "ତୁମେ ବ୍ରାହ୍ମଣୀ ହୋଇ ଏହା କରିବା ଅନୁଚିତ ହେଲା ।" ହୃଦୟ ମଧ୍ୟ ଭୈରବୀଙ୍କୁ ଏହା ନ କରିବା ଲାଗି ପ୍ରବର୍ତ୍ତାଇ ଥିଲେ । ମାତ୍ର ଭୈରବୀ କାହା କଥା ଶୁଣି ନ ଥିଲେ । ଏଥିରେ ହୃଦୟ ଓ ବ୍ରାହ୍ମଣୀଙ୍କ ମଧ୍ୟରେ ତୁମୁଳ ଝଗଡ଼ା ହେଲା । ଅନ୍ୟମାନେ ବହୁ ଚେଷ୍ଟା କରି ଦୁହିଁଙ୍କ ଭିତରେ ମଧ୍ୟସ୍ଥତା କରି ସେଦିନର କଳହ ଉପଶମ କରାଇଲେ ।

ଅଭିମାନିନୀ ବ୍ରାହ୍ମଣୀଙ୍କର ଅହଙ୍କାରକୁ ଏହା ଖୁବ୍ ବାଧିଗଲା । କିଛି ଦିନ ପରେ ଅବଶ୍ୟ ତାଙ୍କର କ୍ରୋଧ କମି ଆସିଲା ଓ ସ୍ଥିର ଚିତ୍ତରେ ସେ ନିଜର ଭ୍ରମ ବୁଝି ପାରିଲେ ଏବଂ ଭାବିଲେ ଯେ—ଏଠାରେ ବେଶୀ ଦିନ ରହି ଏପରି ମତିଭ୍ରମ ହୋଇଛି । ଅତଃପର ଆଉ ଏଠାରେ ଅଧିକ ସମୟ ତାଙ୍କ ପକ୍ଷରେ ରହିବା ଅନୁଚିତ । ଏହା ଭାବି ଅଳ୍ପ କିଛି ଦିନ ପରେ ସେ ଭକ୍ତି ସହକାରେ କେତୋଟି ଫୁଲହାର ନିଜ ହାତରେ ଗୁନ୍ଥି, ଚନ୍ଦନ ସହ-ଯୋଗରେ ଠାକୁରଙ୍କ ପାଖକୁ ଆସିଲେ ଏବଂ ଗୌରାଙ୍ଗ-ଜ୍ଞାନରେ ତାଙ୍କୁ ମାଲ୍ୟଚନ୍ଦନାଦିରେ ଭୂଷିତ କରି ସର୍ବାନ୍ତଃକରଣରେ କ୍ଷମାପ୍ରାର୍ଥନା କଲେ । ତା'ପରେ ସଂଯତ ମନରେ, ଈଶ୍ବରଙ୍କ ନିକଟରେ ମନପ୍ରାଣ ଅର୍ପଣ କରି କାମାରପୁକୁର ପରିତ୍ୟାଗ କରି କାଶୀଧାମ ଅଭିମୁଖେ ଯାତ୍ରା କଲେ ।

ଏହିପରି ପ୍ରାୟ ସାତମାସ କାଳ କାମାରପୁକୁରରେ ଅତିବାହିତ କରି ୧୮୬୭ ମସିହା ଅକ୍ଟୋବର କିମ୍ବା ନଭେମ୍ବର ମାସରେ ଠାକୁର ପୁନର୍ବାର ଦକ୍ଷିଣେଶ୍ବରକୁ ଫେରିଆସିଲେ ।

## ପଞ୍ଚଦଶ ଅଧ୍ୟାୟ

# ତୀର୍ଥପର୍ଯ୍ୟଟନ ଏବଂ ହୃଦୟ ଓ ମଥୁରବାବୁଙ୍କ ଇତିକଥା

ଇତିମଧ୍ୟରେ ଦିନେ ମଥୁରନାଥ ବିଶ୍ୱାସ ଭାରତର ଉତ୍ତର-ପଶ୍ଚିମାଞ୍ଚଳର ପୁଣ୍ୟତୀର୍ଥଗୁଡ଼ିକ ସସ୍ତ୍ରୀକ ଦର୍ଶନ କରିବା ଲାଗି ଅଭିଳାଷ ପ୍ରକାଶ କଲେ ଏବଂ ଠାକୁରଙ୍କୁ ତାଙ୍କର ସତୀର୍ଥ ହେବାକୁ ଅନୁରୋଧ କଲେ । ଠାକୁର ଏହି ପ୍ରସ୍ତାବରେ ରାଜି ହେଲେ ଓ ଭଣଜା ହୃଦୟଙ୍କୁ ମଧ୍ୟ ସଙ୍ଗରେ ନେବା ପାଇଁ ସ୍ଥିର କଲେ । ୧୮୬୮ ମସିହା ଜାନୁୟାରୀ ୧୭ତାରିଖ ଶୁଭଦିନ ଅନୁକୂଳ ଦେଖି ସେମାନେ ସମସ୍ତେ ଯାତ୍ରା ଆରମ୍ଭ କଲେ । ପ୍ରଥମେ ଦେଓ-ଘରେ ପହଞ୍ଚି ସେମାନେ ଶ୍ରୀବୈଦ୍ୟନାଥଙ୍କର ଦର୍ଶନ ଓ ପୂଜାଦି ପାଇଁ ସେଠାରେ କିଛି ଦିନ ଅବସ୍ଥାନ କଲେ । ଏହି ସ୍ଥାନରେ ଗୋଟିଏ ଦରିଦ୍ର ପଲ୍ଲୀଗ୍ରାମ ଥିଲା । ସେହି ଗ୍ରାମର ଦୀନଦରିଦ୍ର ଅଧିବାସୀଙ୍କ ଦୁର୍ଦ୍ଦଶା ଦେଖି ଠାକୁରଙ୍କ ହୃଦୟ କରୁଣାରେ ବିଗଳିତ ହୋଇଗଲା । ସେ ମଥୁର-ବାବୁଙ୍କୁ ଅନୁରୋଧ କରି ସେମାନଙ୍କ ପାଇଁ ଗୋଟିଏ ଦିନର ଭୋଜନ ଓ ପ୍ରତ୍ୟେକଙ୍କୁ ଖଣ୍ଡିଏ ଲେଖାଏଁ ବସ୍ତ୍ର ପ୍ରଦାନ କଲେ । ତା'ପରେ ବୈଦ୍ୟନାଥରୁ ମଥୁରବାବୁ ଠାକୁରଙ୍କ ଦିବ୍ୟଗହଣରେ ସିଧା ଯାଇ କାଶୀ-ଧାମରେ ଉପସ୍ଥିତ ହେଲେ ଏବଂ କେଦାରଘାଟ ଉପରେ ପାଖାପାଖି ଦୁଇଟି ଘରଭଡ଼ା ନେଇ ରହିଲେ ।

ନୌକା ଯୋଗେ ବାରାଣସୀରେ ପ୍ରବେଶ କରିବା ସମୟରେ ଠାକୁର ଭାବଦୃଷ୍ଟିରେ ଦେଖିଲେ ଯେ ଶିବପୁରୀ ପ୍ରକୃତରେ ସୁବର୍ଣ୍ଣରେ ନିର୍ମିତ । ବାସ୍ତ-ବିକ୍ ଏଠାରେ ମାଟି ପଥର ନାହିଁ, ଯୁଗଯୁଗାନ୍ତର ଧରି ସାଧୁଭକ୍ତମାନଙ୍କର ପୁଣ୍ୟୋଜ୍ଜ୍ୱଳ ହୃଦୟର ଅମୂଲ୍ୟ ଭାବରାଶି ଏଠାରେ ସ୍ତରେ ସ୍ତରେ ପୁଞ୍ଜୀଭୂତ ଓ ଘନୀଭୂତ ହୋଇ ଏହି ଧାମକୁ ଶିବମୟ କରି ଗଢ଼ି ତୋଳିଛି । ସେହି ଜ୍ୟୋତିର୍ମୟ ଭାବଘନମୂର୍ତ୍ତି ହିଁ ଏହାର ନିତ୍ୟ ସ୍ୱରୂପ ଏବଂ ବାହାରର ଏହି

ପ୍ରାକୃତିକ ସ୍ଥାନଟି ତାହାର ଛାୟା ମାତ୍ର । କାଶୀରେ ଠାକୁରଙ୍କର ଆଉ ଗୋଟିଏ ବିଶେଷ ଦର୍ଶନ ହୋଇଥିଲା । ଦିନେ ମଥୁରବାବୁ ଠାକୁରଙ୍କୁ ସାଙ୍ଗରେ ଧରି ବାରାଣସୀର ମଣିକର୍ଣ୍ଣିକାଦି ପଞ୍ଚତୀର୍ଥ ଦର୍ଶନ କରିସାରି ଗଙ୍ଗା-ବକ୍ଷରେ ନୌକା ଯୋଗେ ଯାଉଥିଲେ । ମଣିକର୍ଣ୍ଣିକା ଘାଟରେ କାଶୀର ପ୍ରଧାନ ଶ୍ମଶାନ-ଭୂମି । ନୌକା ଯେତେବେଳେ ମଣିକର୍ଣ୍ଣିକା ପାଖରେ ଆସି ପହଞ୍ଚିଲା, ସେତେବେଳେ ଭାବମୟ ଠାକୁର ସେହି ଦିଗକୁ ଚାହିଁ ହଠାତ୍ ଆନନ୍ଦରେ ଉତ୍ଫୁଲ୍ଲ ଓ ରୋମାଞ୍ଚିତ-କଳେବର ହୋଇଗଲେ ଏବଂ ଦୌଡ଼ି ଆସି ନୌକାର ଧାରରେ ଠିଆ ହୋଇ ସମାଧିସ୍ଥ ହୋଇ ପଡ଼ିଲେ । କିଛି ସମୟ ପରେ ଠାକୁରଙ୍କର ସେହି ଦିବ୍ୟ ଭାବର ବିରାମ ହେଲା ଏବଂ ତାଙ୍କର ସେହି ଅଦ୍ଭୁତ ଦିବ୍ୟ ଦର୍ଶନ କଥା ସେ ମଥୁରବାବୁ ପ୍ରଭୃତିଙ୍କ ଆଗରେ ପ୍ରକାଶ କଲେ । ସେ କହିଲେ—

"କ'ଣ ଦେଖିଲି ଜାଣ ? ଦେଖିଲି ପିଙ୍ଗଳବର୍ଣ୍ଣ ଜଟାଧାରୀ ଦୀର୍ଘକାୟ ଜଣେ ଶ୍ୱେତବର୍ଣ୍ଣ ପୁରୁଷ ଗମ୍ଭୀର ପଦ-ବିକ୍ଷେପରେ ଶ୍ମଶାନର ପ୍ରତ୍ୟେକ ଚିତା ପାଖକୁ ଆସୁଛନ୍ତି ଏବଂ ପ୍ରତ୍ୟେକ ଦେହକୁ ସଯତ୍ନ ଉତ୍ତୋଳନ କରି ତା'ର କର୍ଣ୍ଣରେ ତାରକବ୍ରହ୍ମମନ୍ତ୍ର ପ୍ରଦାନ କରୁଛନ୍ତି—ସର୍ବଶକ୍ତିମୟୀ ଶ୍ରୀଜଗଦମ୍ବା ମଧ୍ୟ ସ୍ୱୟଂ ମହାକାଳୀ ରୂପରେ ସେହି ଚିତା ଉପରେ ଜୀବର ଅପର ପାର୍ଶ୍ୱରେ ବସି ତା'ର ସ୍ଥୂଳ, ସୂକ୍ଷ୍ମ, କାରଣ ପ୍ରଭୃତି ସମସ୍ତ ପ୍ରକାର ସଂସ୍କାର-ବନ୍ଧନ ଖୋଲି ଦେଉଛନ୍ତି ଏବଂ ନିର୍ବାଣର ଦ୍ୱାର ଉନ୍ମୁକ୍ତ କରି ନିଜ ହସ୍ତରେ ତାକୁ ଅଖଣ୍ଡର ଘରକୁ ପ୍ରେରଣ କରୁଛନ୍ତି । ଏହିରୂପେ ବହୁ-କଳ୍ପର ଯୋଗ-ତପସ୍ୟାରେ ଯେଉଁ ଅଦ୍ୱୈତାନୁଭବର ଭୂମାନନ୍ଦ ଜୀବ ପାଖରେ ଆସି ପହଞ୍ଚେ ତାହା ହିଁ ଶ୍ରୀବିଶ୍ୱନାଥ ତାକୁ ସଦ୍ୟ ସଦ୍ୟ ପ୍ରଦାନ କରି କୃତାର୍ଥ କରୁଅଛନ୍ତି ।"

ଏଠାରେ ଥିବାବେଳେ ଠାକୁର ପ୍ରତିଦିନ ପାଲିଙ୍କିରେ ବସି ଶ୍ରୀବିଶ୍ୱ-ନାଥଙ୍କୁ ଦର୍ଶନ କରିବାକୁ ଯାଉଥିଲେ । ହୃଦୟ ମଧ୍ୟ ତାଙ୍କ ସଙ୍ଗରେ ଯାଉ-ଥିଲେ । ଯିବା ପଥରେ ହିଁ ବେଳେ ବେଳେ ଠାକୁର ଭାବାବିଷ୍ଟ ହୋଇ ପଡ଼ୁଥିଲେ; ସୁତରାଂ ଦେବଦର୍ଶନ କାଳବେଳର କଥା ସହଜରେ ଅନୁମେୟ ।

ଏପରି ଭାବରେ ସମସ୍ତ ଦେବସ୍ଥାନରେ ତାଙ୍କର ଭାବାବେଶ ହେଉଥିଲେ ମଧ୍ୟ ଶ୍ରୀକେଦାରନାଥଙ୍କ ମନ୍ଦିରରେ ତାଙ୍କର ବିଶେଷ ଭାବାବେଶ ହେଉଥିଲା । କାଶୀରେ ରହୁଥିଲା ବେଳେ ସେଠାର ଖ୍ୟାତନାମା ସାଧୁମାନଙ୍କ ସହିତ ଠାକୁର ଦେଖା କରୁଥିଲେ । ତ୍ରୈଲିଙ୍ଗ ସ୍ୱାମୀଙ୍କୁ ଦେଖି ତାଙ୍କର ବିଶେଷ ଶ୍ରଦ୍ଧା ଜାତ ହୋଇଥିଲା । ଠାକୁରଙ୍କ ନିଜ ମୁହଁରୁ ଶୁଣା ଯାଇଛି—"ଦେଖିଲି ଯେ ସ୍ୱୟଂ ବିଶ୍ୱନାଥ ତାଙ୍କର ଶରୀରକୁ ଆଶ୍ରୟ କରି ସାକ୍ଷାତ୍ ପ୍ରକାଶିତ ହୋଇ ରହିଛନ୍ତି । ସେ ସ୍ୱଦେହରେ ରହିବାରୁ କାଶୀ ଉଜ୍ଜ୍ୱଳ ହୋଇ ରହିଛି । ତାଙ୍କର ଉଚ୍ଚଜ୍ଞାନର ଅବସ୍ଥା । ଇଙ୍ଗିତରେ ଦିନେ ତାଙ୍କୁ ପଚାରିଲି—ଈଶ୍ୱର ଏକ ନା ଅନେକ ? ସେ ମଧ୍ୟ ଇଙ୍ଗିତ କରି ବୁଝାଇ ଦେଲେ—ସମାଧିସ୍ଥ ହୋଇ ଦେଖିଲେ ଏକ; ତା' ନ ହେଲେ ଯେତେବେଳ ଯାଏ ମୁଁ, ତୁମେ, ଜୀବ, ଜଗତ ଇତ୍ୟାଦି ନାନା ଜ୍ଞାନ ରହିଛି, ସେତେବେଳେ ସେ ଅନେକ । ତାଙ୍କୁ ଦେଖାଇ ହୃଦୟକୁ କହିଥିଲି—'ଏହା ହିଁ ଠିକ୍ ଠିକ୍ ପରମହଂସ ଅବସ୍ଥା' ।"

କାଶୀରେ ପାଞ୍ଚସାତ ଦିନ ରହିବା ପରେ ଠାକୁର ମଥୁରବାବୁଙ୍କ ସହିତ ପ୍ରୟାଗ ଗଲେ । ସେଠାରେ ପୁଣ୍ୟ ସଙ୍ଗମରେ ସ୍ନାନ ଓ ତ୍ରିରାତ୍ର ବାସ ମଧ୍ୟ କଲେ । ପ୍ରୟାଗରୁ ପୁନଶ୍ଚ କାଶୀ ପ୍ରତ୍ୟାବର୍ତ୍ତନ କରି ସେଠାରେ ପନ୍ଦର ଦିନ ରହିଲେ । ତା'ପରେ ଶ୍ରୀବୃନ୍ଦାବନ ଦର୍ଶନ ଲାଗି ଯାତ୍ରା କଲେ । ବୃନ୍ଦାବନରେ ବାଙ୍କବିହାରୀ ମୂର୍ତ୍ତି ଦର୍ଶନ କରି ତାଙ୍କର ଅଦ୍‌ଭୁତ ଭାବାବେଶ ହୋଇଥିଲା—ଆତ୍ମହରା ହୋଇ ସେ ତାଙ୍କୁ ଆଲିଙ୍ଗନ କରିବାକୁ ଧାଇଁ ଯାଇଥିଲେ । ପୁନଶ୍ଚ ସନ୍ଧ୍ୟାକାଳରେ ଗୋପାଳ ବାଳକମାନଙ୍କ ସଙ୍ଗେ ଗୋରୁଗୋଠ ନେଇ ଯମୁନା ପାରି ହୋଇ ମୟୂରପୁଚ୍ଛଧାରୀ ନବନୀରଦ-ଶ୍ୟାମ ଗୋପାଳକୃଷ୍ଣଙ୍କର ଗୋଷ୍ଠବାହୁଡ଼ା ଦୃଶ୍ୟ ମଧ୍ୟ ସେ ଦିବ୍ୟ ଦୃଷ୍ଟିରେ ଦେଖି ପ୍ରେମରେ ତନ୍ମୟ ହୋଇ ଯାଇଥିଲେ । ବ୍ରଜର ନାନା ସ୍ଥାନରେ ଠାକୁର ସଂସାରବିରାଗୀ ଅନେକ ସାଧକଙ୍କୁ ଜପଧ୍ୟାନରେ ନିମଗ୍ନ ରହିଥିବାର ଦେଖିଥିଲେ । ନିଧୁବନରେ ସିଦ୍ଧ ପ୍ରେମିକା ବର୍ଷୀୟସୀ ତପସ୍ୱିନୀ ଗଙ୍ଗା-ମାତାଙ୍କ ଦର୍ଶନ ଓ ମଧୁର ସଙ୍ଗଲାଭ କରି ଠାକୁର ଏତେ ବିମୋହିତ

ହୋଇ ଯାଇଥିଲେ ଯେ ତାଙ୍କର ମନେ ହୋଇଥିଲା ବ୍ରଜଧାମ ଛାଡ଼ି ସେ ଆଉ କେଉଁଆଡ଼େ ଯିବେ ନାହିଁ । ସେହି ଗଙ୍ଗାମାତା ଠାକୁରଙ୍କୁ ଶ୍ରୀମତୀ ରାଧିକା ସ୍ୱୟଂ ଅବତୀର୍ଣ୍ଣା ବୋଲି ଭାବୁଥିଲେ ଏବଂ ତାଙ୍କୁ 'ଦୁଲାଲୀ' ବୋଲି ସମ୍ବୋଧନ କରୁଥିଲେ । ଠାକୁର କହୁଥିଲେ— "ବ୍ରଜକୁ ଯାଇ ସବୁ କିଛି ଭୁଲ୍ ହୋଇ-ଯାଇଥିଲି । ମନେ ହୋଇଥିଲା—ଆଉ ଫେରିବି ନାହିଁ । କିନ୍ତୁ କିଛିଦିନ ପରେ ମା'ର କଥା ମନେପଡ଼ିଲା । ମନେ ହେଲା—ତା'ର କେତେ କଷ୍ଟ ହେବ ! କିଏବା ତାକୁ ବୁଢ଼ୀ ବୟସରେ ଦେଖିବ ! ସେବା କରିବ ! ଏହି କଥା ମନରେ ଉଠିବାରୁ ଆଉ ସେଠାରେ ରହିପାରିଲି ନାହିଁ ।"
ମାତୃଋଣ ସମ୍ବନ୍ଧରେ ଠାକୁର କହୁଥିଲେ—"ଆରେ, ସଂସାରରେ ବାପା ମା' ପରମ ଗୁରୁ । ସେମାନେ ଯେତେଦିନ ବଞ୍ଚିଥାଆନ୍ତି, ଯଥାଶକ୍ତି ସେମାନଙ୍କର ସେବା କରିବାକୁ ହୁଏ···କେବଳ ମାତ୍ର ଈଶ୍ୱରଙ୍କ ଲାଗି ବାପମାଆଙ୍କ ଆଜ୍ଞା ଲଙ୍ଘନ କରିହୁଏ; ସେଥିରେ ଦୋଷ ହୁଏ ନାହିଁ । ଯେପରି ପ୍ରହ୍ଲାଦ ବାପ ମନା କଲେ ମଧ୍ୟ କୃଷ୍ଣନାମ ନିଜ ତୁଣ୍ଡରୁ ଛାଡ଼ିଲା ନାହିଁ । ଏପରିକି ମାଆ ବାରଣ କଲେ ସୁଦ୍ଧା ଧ୍ରୁବ ତପସ୍ୟା କରିବା ପାଇଁ ବଣକୁ ପଳାଇ ଗଲା—ସେଥିରେ ଦୋଷ ହୁଏ ନାହିଁ ।"

ଠାକୁର ବୃନ୍ଦାବନରେ ପ୍ରାୟ ଗୋଟିଏ ପକ୍ଷ ରହିଥିଲେ । ତା'ପରେ ଗଙ୍ଗାମାତାଙ୍କ ନିକଟରୁ ବହୁକଷ୍ଟରେ ବିଦାୟ ନେଇ ଠାକୁର ମଥୁରବାବୁଙ୍କ ସହିତ ପୁନର୍ବାର କାଶୀକୁ ପ୍ରତ୍ୟାବର୍ତ୍ତନ କଲେ । ସେଠାରେ କିଛିଦିନ ରହିବା ପରେ ଦୀପାବଳି ଅମାବାସ୍ୟା ଦିନ ଶ୍ରୀଶ୍ରୀଅନ୍ନପୂର୍ଣ୍ଣା ଦେବୀଙ୍କର ସୁବର୍ଣ୍ଣପ୍ରତିମା ଦର୍ଶନ କରି ଠାକୁର ଭାବ-ପ୍ରେମରେ ମୋହିତ ହୋଇ ଯାଇ-ଥିଲେ । ମଥୁରବାବୁଙ୍କର କାଶୀରୁ ଗୟା ଯିବା ପାଇଁ ଇଚ୍ଛା ହେଲା । କିନ୍ତୁ ଠାକୁର ସେଠାକୁ ଯିବା ଲାଗି ଅନିଚ୍ଛା ପ୍ରକାଶ କରିବାରୁ ସେ ପ୍ରସ୍ତାବ ବନ୍ଦ ହେଲା । ପିତୃସ୍ୱପ୍ନ ସ୍ମରଣ କରି ଠାକୁର କହିଲେ—ଏହି ସ୍ଥାନକୁ ଗଲେ ତାଙ୍କର ଶରୀର ରହିବ ନାହିଁ । ଏପରି ଗଭୀର ସମାଧି ହୋଇଯିବ ଯେ ସେଥିରୁ ତାଙ୍କର ମନ ଆଉ ନିମ୍ନ ମନୁଷ୍ୟ-ଲୋକକୁ ଫେରି ଆସିବ ନାହିଁ ।"
ଶ୍ରୀଗୌରାଙ୍ଗଦେବଙ୍କର ଲୀଳା-ସମ୍ବରଣ-ସ୍ଥଳ ନୀଳାଚଳ ବା ପୁରୀଧାମକୁ ଯିବା ପ୍ରସ୍ତାବରେ ମଧ୍ୟ ଆଉଦିନେ ଠାକୁର ଏହି କଥା କହିଥିଲେ ।

କାଶୀଧାମରେ ଯୋଗେଶ୍ୱରୀ ନାମ୍ନୀ ଭୈରବୀ ବ୍ରାହ୍ମଣୀଙ୍କ ସହିତ ଠାକୁରଙ୍କର ପୁନର୍ବାର ଦେଖା ହୋଇଥିଲା ଏବଂ ଚୌଷଠି ଯୋଗିନୀ ନାମକ ପଲ୍ଲୀସ୍ଥ ତାଙ୍କର ବାସଭବନକୁ ଠାକୁର କେତେଥର ଯାଇଥିଲେ । ଠାକୁର ବ୍ରାହ୍ମଣୀଙ୍କୁ ସେହିଦିନଠାରୁ ବୃନ୍ଦାବନରେ ଅବସ୍ଥାନ କରିବା ଲାଗି ଅନୁରୋଧ କରିଥିଲେ । ହୃଦୟଙ୍କ କଥାରୁ ଜଣାଯାଏ ଯେ ଠାକୁର ସେଠାରୁ ଫେରିବାର କିଛିକାଳ ପରେ ବ୍ରାହ୍ମଣୀ ବୃନ୍ଦାବନ ଯାଇ ସେଠାରେ ଦେହରକ୍ଷା କରିଥିଲେ ।

ବୃନ୍ଦାବନରେ ଅବସ୍ଥାନ କାଳରେ ଦିନେ ଠାକୁରଙ୍କର ବୀଣା ଶୁଣିବାକୁ ଇଚ୍ଛା ହୋଇଥିଲା । କାଶୀକୁ ଫେରି ତାଙ୍କ ମନରେ ପୁନର୍ବାର ଏହି ଇଚ୍ଛାର ଉଦୟ ହେବାରୁ ମଦନପୁରା ପଲ୍ଲୀସ୍ଥ ମହେଶଚନ୍ଦ୍ର ସରକାର ନାମକ ଜଣେ ଅଭିଜ୍ଞ ବୀଣାବାଦକଙ୍କ ଭବନରେ ହୃଦୟଙ୍କ ସାଙ୍ଗରେ ଉପସ୍ଥିତ ହୋଇ ସେ ତାଙ୍କୁ ବୀଣା ଶୁଣାଇବା ଲାଗି ଅନୁରୋଧ କଲେ । ଠାକୁରଙ୍କ ଅନୁରୋଧରେ ସେ ପରମ ଆହ୍ଲାଦରେ ସେଦିନ ଅନେକ ସମୟ ପର୍ଯ୍ୟନ୍ତ ବୀଣା ବାଦନ କରିଥିଲେ । ଅପରାହ୍ଣ ପାଞ୍ଚଟାରୁ ରାତି ଆଠଟା ପର୍ଯ୍ୟନ୍ତ ଏହିଭାବରେ ଆନନ୍ଦରେ ଅତିବାହିତ ହେବାପରେ ମହେଶବାବୁଙ୍କ ଅନୁରୋଧରେ ସେ ଏହି ସ୍ଥାନରେ କିଞ୍ଚିତ୍ ଜଳଯୋଗ କରି ଫେରିଆସିଥିଲେ ।

ଏହିଭାବରେ ଚାରିମାସକାଳ ତୀର୍ଥଭ୍ରମଣ କରି ଠାକୁର ମଥୁରବାବୁଙ୍କ ସହିତ ପୁନରାୟ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ବୃନ୍ଦାବନରୁ ଠାକୁର ରାଧାକୁଣ୍ଡ ଓ ଶ୍ୟାମକୁଣ୍ଡର ରଜ ଆଣିଥିଲେ । ଦକ୍ଷିଣେଶ୍ୱରକୁ ଆସି ସେ ଏହାର କିୟଦଂଶ ପଞ୍ଚବଟୀର ଚତୁର୍ଦ୍ଦିଗରେ ବିଞ୍ଚିଦେଲେ ଏବଂ ଅବଶିଷ୍ଟାଂଶ ନିଜ ସାଧନକୁଟୀର ମଧ୍ୟରେ ନିଜ ହାତରେ ପୋତି କହିଥିଲେ—"ଆଜିଠାରୁ ଏହି ସ୍ଥଳ ବୃନ୍ଦାବନତୁଲ୍ୟ ଦେବଭୂମି ହେଲା ।" ଶ୍ରୀରାମକୃଷ୍ଣଙ୍କ କଥାରୁ ଜଣାପଡ଼େ ଯେ ଏହି ତୀର୍ଥ ଭ୍ରମଣ ଉପଲକ୍ଷେ ମଥୁରବାବୁ ଲକ୍ଷାଧିକ ଟଙ୍କା ବ୍ୟୟ କରିଥିଲେ ।

କାଶୀ, ବୃନ୍ଦାବନଆଦି ତୀର୍ଥ ଭ୍ରମି ଠାକୁର ଥରେ ମହାପ୍ରଭୁ ଶ୍ରୀଚୈତନ୍ୟଙ୍କ ଜନ୍ମସ୍ଥାନ ଦର୍ଶନ କରିବା ଲାଗି ନବଦ୍ୱୀପ ଯାଇଥିଲେ । ଠାକୁର

କହିଥିଲେ, "ମଥୁର ସଙ୍ଗେ ନବଦ୍ୱୀପ ଗଲି ! ଭାବିଲି– ଯଦି ସେ ଅବତାର ହୋଇଥାଆନ୍ତି, ତା'ହେଲେ ସେଠାରେ କିଛି ନା କିଛି ପ୍ରକାଶ ନିଶ୍ଚୟ ଥିବ ! ଦେଖିଲେ ବୁଝିପାରିବି । ଘୂରି ଘୂରି ବିଭିନ୍ନ ଠାକୁର ଦେବତାଙ୍କ ପାଖକୁ ଗଲି । କେଉଁଠାରେ କିଛି ଦେଖିପାରିଲି ନାହିଁ । ଭାବିଲି—କାହିଁକି ବା ଏଠାକୁ ଆସିଲି ! ତା'ପରେ ଫେରି ଆସିବା ଲାଗି ନୌକାରେ ଉଠୁଛି ଏହି ସମୟରେ ଅଦ୍‌ଭୁତ ଦର୍ଶନ ହେଲା । ଦୁଇଟି ସୁନ୍ଦର ବାଳକ—ଏପରି ରୂପ କେବେ ହେଲେ ଦେଖି ନାହିଁ-- ତପ୍ତ କାଞ୍ଚନଭଳି ରଙ୍ଗ, କିଶୋର ବୟସ, ମୁଣ୍ଡ ଉପରେ ଜ୍ୟୋତିର୍ମଣ୍ଡଳ—ହାତ ଟେକି ମୋ ଆଡ଼କୁ ଚାହିଁ ହସିହସି ଆକାଶରେ ଛୁଟି ଆସୁଛନ୍ତି । ମୁଁ ହଠାତ୍ ଚିତ୍କାର କରି ଉଠିଲି—'ଏଇ ଆସି-ଲେରେ, ଆସିଲେରେ ।' ଏହା କହୁ କହୁ ସେମାନେ ନିକଟକୁ ଆସିଗଲେ ଏବଂ (ନିଜର ଶରୀର ଦେଖାଇ) ଏହାରି ଭିତରେ ପଶିଗଲେ । ମୁଁ ବାହ୍ୟ-ଜ୍ଞାନ ହରାଇ ପଡ଼ିଗଲି । ପାଣି ଭିତରେ ପଡ଼ି ଯାଇଥାଆନ୍ତି, ହୃଦୟ ପାଖରେ ଥିଲା, ଧରି ପକାଇଲା । ଏପରି ଅନେକ କଥା ସବୁ ଦେଖାଇଦେଲେ, ବୁଝାଇ ଦେଲେ—ବାସ୍ତବିକ୍ ଅବତାର, ଐଶ୍ୱରିକ ଶକ୍ତିର ବିକାଶ ।"

ଏହି ସମୟରେ ଥରେ କଲିକତାର କଲୁଟୋଲା ନାମକ ପଲ୍ଲୀରେ ପ୍ରତିଷ୍ଠିତ ଗୋଟିଏ ହରିସଭାକୁ ଠାକୁର ଶ୍ରୀରାମକୃଷ୍ଣ ନିମନ୍ତ୍ରିତ ହୋଇଥିଲେ । ସେଠାରେ ଭାଗବତର ଅମୃତୋପମ କଥା ଶୁଣୁଶୁଣୁ ଆତ୍ମହରା ହୋଇ-ପଡ଼ିଲେ ଏବଂ 'ଶ୍ରୀଚୈତନ୍ୟାସନ'ର ସମ୍ମୁଖକୁ ସହସା ଦୌଡ଼ି ଯାଇ ତା' ଉପରେ ଠିଆ ହୋଇ,ଏପରି ସମାଧିମଗ୍ନ ହୋଇଗଲେ ଯେ, ତାଙ୍କ ଶରୀରରେ କିଛିମାତ୍ର ପ୍ରାଣସଞ୍ଚାର ଲକ୍ଷିତ ହେଲା ନାହିଁ । ତାଙ୍କର ଜ୍ୟୋତିର୍ମୟ ମୁଖରେ ସେହି ଅଦୃଷ୍ଟପୂର୍ବ ପ୍ରେମପୂର୍ଣ୍ଣ ହସ ଏବଂ ଊର୍ଦ୍ଧ୍ୱୋତ୍ତୋଳିତ ହସ୍ତରେ ଅଙ୍ଗୁଳି ନିର୍ଦ୍ଦେଶ ଦେଖି ବିଶିଷ୍ଟ ଭକ୍ତମାନେ ପ୍ରାଣେ ପ୍ରାଣେ ଅନୁଭବ କଲେ ଯେ ଠାକୁର ଭାବମୁଖରେ ଶ୍ରୀଶ୍ରୀମହାପ୍ରଭୁଙ୍କ ସହିତ ସମ୍ପୂର୍ଣ୍ଣ ତନ୍ମୟ ହୋଇ ଯାଇଛନ୍ତି । ଠାକୁରଙ୍କ ପ୍ରବଳ ଭାବପ୍ରବାହରେ ଏକ ଅନିର୍ବଚନୀୟ ଆନନ୍ଦର ଉପଲବ୍‌ଧି କରି ସମସ୍ତେ ସମ୍ମିଳିତ କଣ୍ଠରେ ଉଚ୍ଚ ସ୍ୱରରେ ହରିଧ୍ୱନି ଦେଇ ନାମ-ସଙ୍କୀର୍ତ୍ତନ ଆରମ୍ଭ କରି ଦେଲେ । ଏହିଭଳି ଉଦ୍ଦାମ ତାଣ୍ଡବରେ

ବହୁସମୟ ଶ୍ରୀହରି ଓ ଶ୍ରୀମହାପ୍ରଭୁଙ୍କ ଗୁଣାବଳୀ ସଂକୀର୍ତ୍ତନ କରିସାରି ସମସ୍ତେ ଜୟଧ୍ୱନି ଉଚ୍ଚାରଣପୂର୍ବକ ସେହି ଦିନର ଦିବ୍ୟ ଅଭିନୟ ସମାପନା କଲେ ଏବଂ ଠାକୁର ମଧ୍ୟ ଅଳ୍ପ ସମୟ ପରେ ସେଠାରୁ ଦକ୍ଷିଣେଶ୍ୱରକୁ ଫେରି ଗଲେ । ଠାକୁରଙ୍କ ପ୍ରସ୍ଥାନ ପରେ କେତେକ ବ୍ୟକ୍ତି ଠାକୁରଙ୍କର ଶ୍ରୀବମୁଖରେ ଶ୍ରୀଚୈତନ୍ୟାସନ ଗ୍ରହଣ କରିବା କାର୍ଯ୍ୟର ତୀବ୍ର ପ୍ରତିବାଦ ଆରମ୍ଭ କରି-ଦେଲେ ଏବଂ ଅନ୍ୟ କେତେଜଣ ଏହି କାର୍ଯ୍ୟର ସମର୍ଥନ ମଧ୍ୟ କଲେ; କିନ୍ତୁ ଏହାର ମୀମାଂସା ହୋଇପାରିଲା ନାହିଁ । କ୍ରମେ ଏକଥା ଲୋକମୁଖରେ କାଲ୍‌ନାର ଶ୍ରୀଚୈତନ୍ୟ-ପଦାଶ୍ରିତ ସିଦ୍ଧ ବାବାଜୀ ଭଗବାନ ଦାସଙ୍କର ମଧ୍ୟ କର୍ଣ୍ଣଗୋଚର ହେଲା । ଏହା ଶୁଣିବା ମାତ୍ରେ କ୍ରୋଧାନ୍ଧ ହୋଇ ସେ ଠାକୁରଙ୍କ ଉଦ୍ଦେଶ୍ୟରେ କଟୁ ବାକ୍ୟ ବର୍ଷଣ କରିବାକୁ ଲାଗିଲେ ଏବଂ ତାଙ୍କୁ ଜଣେ ଭଣ୍ଡ ବୋଲି ରଟନା କରିଦେଲେ ।

ଏହି ଘଟନାର କେତେକ ଦିନ ପରେ ଶ୍ରୀରାମକୃଷ୍ଣଦେବ ସ୍ୱତଃ-ପ୍ରଣୋଦିତ ହୋଇ ଭଣଜା ହୃଦୟ ଓ ମଥୁରବାବୁଙ୍କ ସଙ୍ଗରେ ଧରି କାଲ୍‌-ନାରେ ଉପସ୍ଥିତ ହେଲେ । ଭଗବାନ ଦାସଙ୍କ ନିକଟରେ ପହଞ୍ଚି ଠାକୁର ପ୍ରଥମେ ଶୁଣିଲେ ଯେ ସେ କଣ୍ଠି (ତୁଳସୀମାଳା) ଛଡ଼ାଇ ନେଇ ଜଣକୁ ତଡ଼ିଦେବେ ବୋଲି କହୁଛନ୍ତି । ପୁଣି ଅଳ୍ପ ସମୟ ପରେ ଶୁଣିଲେ ଯେ ସେ ଲୋକଶିକ୍ଷା ଦେବା ଲାଗି ବର୍ତ୍ତମାନ ମଧ୍ୟ ମାଳା ତିଳକାଦି ବ୍ୟବହାର ଛାଡ଼ିନାହାନ୍ତି । ବାବାଜୀ ବାରମ୍ବାର କହିଚାଲିଥାଆନ୍ତି—"ମୁଁ ତଡ଼ିଦେବି, ମୁଁ ଲୋକଶିକ୍ଷା ଦେବି, ମୁଁ ମାଳାତିଳକାଦି ତ୍ୟାଗ କରିନାହିଁ ।" ଏହା ଶୁଣି ସରଳସ୍ୱଭାବ ଠାକୁର ଆଉ ମନର ବିରକ୍ତି ଗୁପ୍ତ ରଖିପାରିଲେ ନାହିଁ କି ସଭ୍ୟଭବ୍ୟ ହୋଇ ବସି ରହିପାରିଲେ ନାହିଁ । ସଙ୍ଗେ ସଙ୍ଗେ ଠିଆ ହୋଇ-ଯାଇ ବାବାଜୀଙ୍କୁ ଲକ୍ଷ୍ୟ କରି କହିଲେ—"ଏ କଅଣ ? ତୁମେ ଏବେ ବି ଏତେ ଅହଙ୍କାର ରଖିଛ ? ତୁମେ ପୁଣି ଲୋକଶିକ୍ଷା ଦେବ ? ତୁମେ ପୁଣି ତଡ଼ିଦେବ ? ତୁମେ ପୁଣି ତ୍ୟାଗ କରିବ ଓ ଗ୍ରହଣ କରିବ ? ତୁମେ ଲୋକଶିକ୍ଷା ଦେବା ଲାଗି କିଏ ? ଯାହାର ଜଗତ ସେ ନ ଶିଖାଇଲେ ତୁମେ ଶିଖାଇବ ?"—ଏପରି କହିଲାବେଳେ ଠାକୁରଙ୍କର ଅଙ୍ଗାବରଣ

ଖସି ପଡ଼ୁଥିଲା, କଟିଦେଶରୁ ବସ୍ତ୍ର ମଧ୍ୟ ଶିଥିଳ ହୋଇ ଖସି ପଡ଼ୁଥିଲା ଏବଂ ମୁଖମଣ୍ଡଳ ଏକ ଅପୂର୍ବ ଦିବ୍ୟ ତେଜରେ ଉଦ୍‌ଭାସିତ ହୋଇ ଉଠି-ଥିଲା । ଠାକୁରଙ୍କର ଏଭଳି ଅବସ୍ଥା ଦେଖି ବାବାଜୀ ପ୍ରଥମେ ବିସ୍ମିତ ହୋଇଗଲେ । ପରେ ବୁଝିଲେ ଯେ ପ୍ରକୃତରେ ଏହି ଜଗତରେ ଈଶ୍ୱରଙ୍କ ବ୍ୟତୀତ ଆଉ ଦ୍ୱିତୀୟ କର୍ତ୍ତା ନାହାନ୍ତି । ଏହିଭାବରେ ଠାକୁରଙ୍କ ଶକ୍ତିପୂର୍ଣ୍ଣ କଥାଗୁଡ଼ିକ ଶୁଣି ବାବାଜୀଙ୍କର ଅନ୍ତର୍ଦୃଷ୍ଟି ଅଧିକତର ପ୍ରସ୍ଫୁଟିତ ହୋଇଗଲା ଏବଂ ସେ ନିଜର ଦୋଷତ୍ରୁଟି ନିଜେ ବୁଝିପାରି ବିନୀତ ଓ ନମ୍ର ହୋଇ-ଉଠିଲେ । ବାବାଜୀ ପରେ ଯେତେବେଳେ ଶୁଣିଲେ ଯେ ଏହି ବ୍ୟକ୍ତି ହେଉଛନ୍ତି ଦକ୍ଷିଣେଶ୍ୱରର ସେହି ପରମହଂସ, ଯେ କି କଲୁଟୋଲାର ହରିସଭାରେ ଭାବାବେଶରେ ଆତ୍ମହରା ହୋଇ 'ଶ୍ରୀଚୈତନ୍ୟାସନ' ଅଧିକାର କରିଥିଲେ ଏବଂ ସେଥିଯୋଗୁଁ ସେ ତାଙ୍କୁ ଅଯଥା କଟୁ ବାକ୍ୟ ପ୍ରୟୋଗ କରିଥିଲେ--ଏହା ଭାବିବାମାତ୍ରେ ତାଙ୍କ ମନରେ କ୍ଷୋଭ ଓ ପରିତାପର ଅବଧି ରହିଲା ନାହିଁ । ବିନୀତ ଭାବରେ ରାମକୃଷ୍ଣଙ୍କୁ ପ୍ରଣାମ କରି ସେଥିଲାଗି ସେ ତାଙ୍କ ପାଖରେ କ୍ଷମାଭିକ୍ଷା କଲେ । ଏହିଭାବରେ ଠାକୁର ଏବଂ ବାବାଜୀଙ୍କର ସେଦିନର ପ୍ରେମାଭିନୟ ସମାପ୍ତ ହେଲା ଏବଂ ଶ୍ରୀରାମ-କୃଷ୍ଣଦେବ ମଧ୍ୟ ହୃଦୟଙ୍କୁ ସାଙ୍ଗରେ ଧରି କିଛି ସମୟ ପରେ ମଥୁରବାବୁଙ୍କ ପାଖକୁ ଆସି ଏହି ଘଟଣାର ଆଦ୍ୟୋପାନ୍ତ ତାଙ୍କୁ ଶୁଣାଇ ବାବାଜୀଙ୍କର ଉଚ୍ଚ ଆଧ୍ୟାତ୍ମିକ ଅବସ୍ଥାର ଅନେକ ପ୍ରଶଂସାବାଦ କଲେ । ମଥୁରବାବୁ ଏହା ଶୁଣି ବାବାଜୀଙ୍କୁ ଦର୍ଶନ କରିବାକୁ ଗଲେ ଏବଂ ଆଶ୍ରମର ଦେବବିଗ୍ରହର ସେବା ଓ ଦିନକର ମହୋତ୍ସବ ପାଳନ ଲାଗି ବିଶେଷ ବନ୍ଦୋବସ୍ତ କରିଦେଲେ ।

ତୀର୍ଥରୁ ଫେରିବାର ଅଳ୍ପକାଳ ପରେ ହୃଦୟଙ୍କ ସ୍ତ୍ରୀର ମୃତ୍ୟୁ ହେଲା । ଏହି ଘଟଣାରେ ତାଙ୍କର ମନ ସଂସାରପ୍ରତି କିଛିକାଳ ଲାଗି ବୈରାଗ୍ୟସମ୍ପନ୍ନ ହୋଇପଡ଼ିଲା । ପତ୍ନୀ-ବିୟୋଗ-ବିଧୁର ହୃଦୟ ଠାକୁରଙ୍କୁ କହିଲେ, "ତୁମର ଯେପରି ଆଧ୍ୟାତ୍ମିକ ଉପଲବ୍ଧିମାନ ହୋଇଛି—ସେହିଭଳି ଉପଲବ୍ଧି ସବୁ ମୋର ଯେପରି ହେବ, ତା'ର ଉପାୟ କର ।" ବାରମ୍ବାର ଏପରି ଅନୁରୋଧ କରିବାରୁ ଠାକୁର ଅଗତ୍ୟା କହିଲେ, "ମା'ଙ୍କର ଯାହା ଇଚ୍ଛା, ତାହା

ହେବ । ମା'ଙ୍କର ଯଦି ଇଚ୍ଛା ହୁଏ, ତୋର ମଧ୍ୟ ହେବ ।" ଏହିଭଳି କଥାବାର୍ତ୍ତାର କିଛିଦିନ ପରେ ହୃଦୟଙ୍କର ଗୋଟିଏ ଅପୂର୍ବ ଦିବ୍ୟଦର୍ଶନ ହେଲା । ତାଙ୍କର ମନେ ହେଲା—ସେ ଦିବ୍ୟଦେହଧାରୀ ଜ୍ୟୋତିର୍ମୟ ଦେବାନୁଚର, ସାକ୍ଷାତ୍ ଦେବତାଙ୍କ ସଙ୍ଗରେ ରହି ଚିରକାଳ ତାଙ୍କର ସେବା କରୁଛନ୍ତି । ଅର୍ଦ୍ଧବାହ୍ୟ ଭାବାବେଶରେ ଉନ୍ମତ୍ତବତ୍ ଚିତ୍କାର କରି ବାରମ୍ବାର ସେ କହି ଗଲେ—"ହେ ରାମକୃଷ୍ଣ ! ହେ ରାମକୃଷ୍ଣ ! ଆମେ ତ ମଣିଷ ନୋହୁଁ—ତେବେ ଆମେ ଏଠାରେ ଆଉ କାହିଁକି ରହିବା ? ଚାଲ ଦେଶରୁ ଦେଶକୁ ଘୂରି ବୁଲିବା ଆଉ ଜୀବୋଦ୍ଧାର କରିବା । ତୁମେ ଯାହା ମୁଁ ମଧ୍ୟ ତାହା ।"

ମଥୁରବାବୁ ଦିନେ ହୃଦୟଙ୍କୁ ଭାବାବିଷ୍ଟ ଦେଖି ଠାକୁରଙ୍କୁ ପଚାରିଥିଲେ—"ଆମ ହୃଦୁର ପୁଣି ଏ କ'ଣ ଅବସ୍ଥା ହେଲା, ବାବା ?" ଠାକୁର ଏହାର ଉତ୍ତରସ୍ୱରୂପ କହିଥିଲେ, "ହୃଦୟ ଛଳନାରେ ଏପରି କରୁନାହିଁ । ଟିକିଏ ଦର୍ଶନ ଲାଗି ସେ ମା'ଙ୍କୁ ବ୍ୟାକୁଳ ହୋଇ ଧରିଥିଲା, ତେଣୁ ଏଭଳି ହେଉଛି । ଏପରି ଦେଖାଇ ବୁଝାଇ ମା' ପୁଣି ତାକୁ ଥଣ୍ଡା କରି ଦେବେ ଯେ ।"

୧୮୬୮ ଖ୍ରୀଷ୍ଟାବ୍ଦର ଆଶ୍ୱିନ ମାସ । ହୃଦୟ ସ୍ଥିର କଲେ ଯେ ସେ ନିଜ ଘରେ ଶାରଦୀୟା ପୂଜା ଆରମ୍ଭ କରିବେ । ହୃଦୟ ଥିଲେ କର୍ମପ୍ରବଣ ବ୍ୟକ୍ତି । ଏହି ପ୍ରକାର କର୍ମ ଦ୍ୱାରା ସେ ଶାନ୍ତିଲାଭ କରିବେ ବୋଲି ଭାବି ଠାକୁର ସେଥିରେ ସମ୍ମତ ହେଲେ । ମଥୁରବାବୁ ମଧ୍ୟ ହୃଦୟଙ୍କର ଏହି ଅଭିପ୍ରାୟ ଜାଣି ଏଥିଲାଗି ତାଙ୍କୁ ଆର୍ଥିକ ସାହାଯ୍ୟ କଲେ । ମଥୁରବାବୁ ଏଥିଲାଗି ଅର୍ଥ ସାହାଯ୍ୟ କଲେ ସତ, କିନ୍ତୁ ପୂଜା ସମୟରେ ଠାକୁରଙ୍କୁ ନିଜ ଘରେ ରଖିବା ପାଇଁ ବିଶେଷ ଆଗ୍ରହ ପ୍ରକାଶ କଲେ । ଏଥିରେ ହୃଦୟ ବିଶେଷ କ୍ଷୁଣ୍ଣ ହେବା ଦେଖି ଠାକୁର କହିଲେ, "ତୁ ଦୁଃଖ କରୁଛୁ କାହିଁକି ? ମୁଁ ପ୍ରତିଦିନ ସୂକ୍ଷ୍ମ ଶରୀରରେ ତୋର ପୂଜା ଦେଖିବାକୁ ଆସିବି । ମତେ ଆଉ କେହି ଦେଖିପାରିବେ ନାହିଁ, କିନ୍ତୁ ତୁ ଦେଖିପାରିବୁ ।"

ଠାକୁରଙ୍କ କଥାରେ ଆଶ୍ୱସ୍ତ ହୋଇ ସେ ମହାନନ୍ଦରେ ପୂଜା କରିବାକୁ ସ୍ଥିର କଲେ । ଘରକୁ ଫେରି ହୃଦୟ ଠାକୁରଙ୍କ କଥାନୁସାରେ

ସବୁ କାର୍ଯ୍ୟର ଅନୁଷ୍ଠାନ କଲେ । ସପ୍ତମୀ-ବିହିତ ପୂଜା ଶେଷ କରି ରାତିରେ ଆଳତି କରିବା ବେଳେ ହୃଦୟ ଦେଖିବାକୁ ପାଇଲେ ଯେ ଠାକୁର ଜ୍ୟୋତିର୍ମୟ ଶରୀରରେ ପ୍ରତିମା ପାର୍ଶ୍ୱରେ ଭାବାବସ୍ଥ ହୋଇ ଦଣ୍ଡାୟମାନ ରହିଛନ୍ତି । ଏହିପରି ପ୍ରତିଦିନ ଏହି ସମୟରେ ଏବଂ ସନ୍ଧିପୂଜା ବେଳେ ଦେବୀପ୍ରତିମା ପାର୍ଶ୍ୱରେ ଠାକୁରଙ୍କର ସୂକ୍ଷ୍ମ ଜ୍ୟୋତିର୍ମୟ ରୂପ ଦେଖି ତାଙ୍କର ଅନ୍ତର ଅତ୍ୟନ୍ତ ଉତ୍ସାହ ଓ ଆନନ୍ଦରେ ପରିପୂର୍ଣ୍ଣ ହୋଇଗଲା । ଶାରଦୀୟା ପୂଜା ସମାପ୍ତ ହେଲା । ହୃଦୟ ଫେରି ଆସିଲେ ଦକ୍ଷିଣେଶ୍ୱର । ଠାକୁରଙ୍କୁ ସବୁକଥା ଯାହା ଯେପରି ଘଟିଥିଲା କହିଲେ । ଠାକୁର ତାହା ଶୁଣି କହିଲେ "ପ୍ରକୃତରେ ଆଳତି ଓ ସନ୍ଧିପୂଜା ବେଳେ ତୋର ପୂଜା ଦେଖିବା ପାଇଁ ମୋର ପ୍ରାଣ ବ୍ୟାକୁଳ ହୋଇ ଉଠୁଥିଲା ଏବଂ ମୋର ଭାବ ହୋଇ ଯାଉ-ଥିଲା । ସେତେବେଳେ ମୋର ଅନୁଭବ ହେଉଥିଲା ଯେ ସତେ ଯେପରି ମୁଁ ଜ୍ୟୋତିର୍ମୟ ଶରୀରରେ ଜ୍ୟୋତିର୍ମୟ ପଥ ଦେଇ ତୋର ଚଣ୍ଡୀ-ମଣ୍ଡପରେ ଉପସ୍ଥିତ ରହିଛୁ ।"

କିନ୍ତୁ ଠାକୁରଙ୍କର ପବିତ୍ର ସଙ୍ଗ ଲାଭ କରି ତାଙ୍କ ସଙ୍ଗେ ଦୀର୍ଘ ଦିନ ରହିବା ସତ୍ତ୍ୱେ ହୃଦୟଙ୍କର ଅହଙ୍କାର ଓ ଦାମ୍ଭିକତା ଦିନକୁ ଦିନ ବଢୁଥିଲା ସିନା କମୁ ନ ଥିଲା । ଏସବୁ ଦେଖି ଠାକୁର ଭାବିଲେ ହୃଦୟ ଯଦି ଏସ୍ଥାନ ଛାଡ଼ି ଅନ୍ୟତ୍ର ଚାଲିଯିବାକୁ ଚାହେଁ, ତେବେ ଯାଉ । ସିଦ୍ଧ-ସଂକଳ୍ପ ଠାକୁରଙ୍କ ଇଚ୍ଛା ତ ବ୍ୟର୍ଥ ହେବାର ନୁହେଁ ! ୧୮୮୧ ଖ୍ରୀଷ୍ଟାବ୍ଦରେ କୌଣସି ଏକ ଉତ୍ସବ ଉପଲକ୍ଷେ ମଥୁରାମୋହନଙ୍କ ପୁତ୍ର ତ୍ରୈଲୋକନାଥ ବିଶ୍ୱାସ ସାଙ୍ଗୋ-ପାଙ୍ଗ ଧରି ଦକ୍ଷିଣେଶ୍ୱର ଆସିଥିଲେ । ସେଦିନ ହୃଦୟ ସକାଳେ ଦେବୀପୂଜା କରିବା ଉଦ୍ଦେଶ୍ୟରେ କାଳୀମନ୍ଦିରରେ ପ୍ରବେଶ କରି ମନ୍ଦିର ଭିତରେ ତ୍ରୈଲୋକ୍ୟନାଥଙ୍କର ଦଶବର୍ଷର ସୁନ୍ଦରୀ ଝିଅକୁ ଠିଆ ହୋଇ ଥିବାର ଦେଖିଲେ । ଦେଖିବା ମାତ୍ରେ ସେ ତା'ର ଚରଣରେ ଫୁଲ ଚନ୍ଦନ ଦେଇ ପୂଜା ଆରମ୍ଭ କରିଦେଲେ । ତ୍ରୈଲୋକ୍ୟନାଥ ଏ ସମ୍ବାଦ ଶୁଣିବା ମାତ୍ରେ ନିଜ ଝିଅର ଓ ସମଗ୍ର ପରିବାରର ଅମଙ୍ଗଳ ଆଶଙ୍କା କରି ଅତ୍ୟନ୍ତ ବିରକ୍ତ ଓ କ୍ରୁଦ୍ଧ ହୋଇ ଉଠିଲେ । ସେ ତତ୍‌କ୍ଷଣାତ୍ ନିଜ ଭୃତ୍ୟ ଦ୍ୱାରା ହୃଦୟଙ୍କୁ

ମନ୍ଦିର ଭିତରୁ ବାହାର କରିଦେଲେ ଏବଂ ସେ ଯେପରି ଭବିଷ୍ୟତରେ ଆଉ କାଳୀବାଡ଼ି ନ ମାଡ଼ନ୍ତି ତାହା ମଧ୍ୟ ଆଦେଶ କରିଦେଲେ । ସେହିଦିନ ହୃଦୟ ଅତ୍ୟନ୍ତ କ୍ଷୁଣ୍ଣ ମନରେ କାଳୀବାଡ଼ିରୁ ଚିରଦିନ ଲାଗି ବିଦାୟ ନେଇଗଲେ । ଠାକୁରଙ୍କ ଜୀବଦ୍ଦଶାରେ ସେ ହୃଦୟଙ୍କୁ ନାନା ଭାବରେ ସାହାଯ୍ୟ କରିଥିଲେ । ଠାକୁରଙ୍କ ଦେହାବସାନ ପରେ ହୃଦୟ ବସ୍ତ୍ର ବିକ୍ରି କରି ନିଜ ପରିବାରର ଭରଣ ପୋଷଣ କରୁଥିଲେ । ଠାକୁରଙ୍କ ମହାସମାଧି-ଲାଭର ତେରବର୍ଷ ପରେ ପ୍ରାୟ ୬୩ ବର୍ଷ ବୟସରେ ୧୮୯୯ ମସିହାରେ ହୃଦୟ ନିଜ ଜନ୍ମଭୂମି ସିଓଡ଼ ଗ୍ରାମରେ ଦେହରକ୍ଷା କରି ଶ୍ରୀରାମକୃଷ୍ଣ ପାଦ-ପଦ୍ମରେ ବିଲୀନ ହୋଇଗଲେ ।

ଠାକୁରଙ୍କର ବଡ଼ ଭାଇ ରାମକୁମାରଙ୍କ ପୁଅ ଅକ୍ଷୟଙ୍କ ସମ୍ବନ୍ଧରେ ପାଠକମାନେ ପୂର୍ବରୁ ସାମାନ୍ୟ କିଛି ଜାଣିଥିବେ । ପିଲାଦିନୁ ଅକ୍ଷୟଙ୍କ ମନ ଶ୍ରୀରାମଚନ୍ଦ୍ରଙ୍କ ପ୍ରତି ଅତ୍ୟନ୍ତ ଅନୁରକ୍ତ ଥିଲା । କୁଳଦେବତା ଶ୍ରୀରଘୁବୀରଙ୍କ ସେବାରେ ସେ ପ୍ରତିଦିନ ଅନେକ ସମୟ ବିତାଉଥିଲେ । ଅକ୍ଷୟଙ୍କର ଏହି ପ୍ରକାର ଭକ୍ତି ଓ ଈଶ୍ୱରାନୁରାଗ ଦେଖି ଠାକୁର ତାଙ୍କୁ ଖୁବ୍ ସ୍ନେହ କରୁଥିଲେ । ୧୮୬୯ ଖ୍ରୀଷ୍ଟାବ୍ଦରେ କାମାରପୁକୁରଠାରୁ ଅଳ୍ପ ଦୂରରେ କୁଚେକୋଲ ନାମକ ଗ୍ରାମରେ ଅକ୍ଷୟଙ୍କର ବିବାହ ହୋଇଥିଲା । ମାତ୍ର ବିବାହର ଅଳ୍ପ ଦିନ ପରେ ସେ ଶ୍ୱଶୁର-ଘରକୁ ଯାଇ ସେଠାରେ ହଠାତ୍ ଖୁବ୍ ଅସୁସ୍ଥ ହୋଇପଡ଼ିଲେ । ରାମେଶ୍ୱର ଏ ସମ୍ବାଦ ପାଇ ତାଙ୍କୁ କାମାରପୁକୁରକୁ ନେଇଆସିଲେ ଏବଂ ଚିକିତ୍ସା ଦ୍ୱାରା ଆରୋଗ୍ୟ କରାଇ ପୁନଶ୍ଚ ଦକ୍ଷିଣେଶ୍ୱରକୁ ପଠାଇଦେଲେ । ଏଠାକୁ ଆସି ତାଙ୍କ ସ୍ୱାସ୍ଥ୍ୟର ସାମାନ୍ୟ ଉନ୍ନତି ମଧ୍ୟ ପରିଲକ୍ଷିତ ହେଲା । କିନ୍ତୁ ହଠାତ୍ ଦିନେ ତାଙ୍କୁ ଭୀଷଣ ଜ୍ୱର ହେଲା । ତିନି ଚାରିଦିନ ବିତିଗଲା—ତଥାପି ଜ୍ୱର ଛାଡ଼ିଲା ନାହିଁ । ଠାକୁର ହୃଦୟଙ୍କୁ ଡାକି କହିଲେ, "ହୃଦୁ ! ଡାକ୍ତରମାନେ ବୁଝିପାରୁନାହାନ୍ତି—ଅକ୍ଷୟର ବିକାର ହୋଇଛି । ଭଲ ଚିକିତ୍ସକ ଡାକି ମନପ୍ରାଣ ଦେଇ ଚିକିତ୍ସା କର ! ଟୋକାଟା କିନ୍ତୁ ବଞ୍ଚିବ ନାହିଁ ।" ଠାକୁରଙ୍କ ମୁହଁରୁ ଏ କଥା ଶୁଣି ହୃଦୟ ଉଦ୍‌ବିଗ୍ନ ହୋଇ ପଡ଼ିଲେ ଏବଂ ଭଲ ଚିକିତ୍ସକ ଡାକି ଅକ୍ଷୟର ଆରୋଗ୍ୟ ପାଇଁ ବହୁ

ଚେଷ୍ଟା କଲେ । ପ୍ରାୟ ମାସେ କାଳ ଅକ୍ଷୟ ଏହି ରୋଗ ଭୋଗି କ୍ରମେ ମୃତ୍ୟୁ ଆଡ଼କୁ ଅଗ୍ରସର ହେଲେ । ଏହି ସମୟରେ ଥରେ ଠାକୁର ତାଙ୍କର ଶଯ୍ୟା ପାଖକୁ ଯାଇ କହିଲେ—"ଅକ୍ଷୟ ! କହ, ଗଙ୍ଗା-ନାରାୟଣ ଓଁ ରାମ ।" ଅକ୍ଷୟ ଥରଥର କରି ତିନଥର ଏହି ମନ୍ତ୍ର ଉଚ୍ଚାରଣ କଲେ ଏବଂ ସଙ୍ଗେ ସଙ୍ଗେ ତାଙ୍କର ପ୍ରାଣବାୟୁ ଉଡ଼ିଗଲା ।

ସାତକ୍ଷୀରା ନିକଟରେ ସୋନାବେଡ଼େ ନାମକ ଗ୍ରାମରେ ମଥୁର-ବାବୁଙ୍କର ପୈତୃକ ଭିଟା ଥିଲା । ଏହାର ସନ୍ନିକଟ ଗ୍ରାମଗୁଡ଼ିକ ସେତେ-ବେଳେ ମଥୁରଙ୍କର ଜମିଦାରୀଭୁକ୍ତ । ଅକ୍ଷୟଙ୍କ ମୃତ୍ୟୁର ଅଳ୍ପକାଳ ପରେ ମଥୁର ଥରେ ଠାକୁରଙ୍କୁ ସଙ୍ଗରେ ଧରି ନିଜ ଜମିଦାରୀ ଓ ଗୁରୁଙ୍କ ପାଖକୁ ଯାଇଥିଲେ । ମଥୁରଙ୍କ ଜମିଦାରୀ ମହଲ ଦେଖିବାକୁ ଯାଇ ଠାକୁର ଗୋଟିଏ ସ୍ଥାନରେ ପଲ୍ଲୀବାସୀ ସ୍ତ୍ରୀପୁରୁଷମାନଙ୍କର ଦୁର୍ଦ୍ଦଶା ଓ ଅଭାବ ଦେଖି ସମବେଦନାରେ କାତର ହୋଇ ପଡ଼ିଲେ । ତା'ପରେ ସେ ମଥୁରବାବୁଙ୍କୁ କହି ସମସ୍ତଙ୍କୁ ତେଲ, ଖଣ୍ଡିଏ ଲେଖାଏଁ ନୂଆ ଲୁଗା ଏବଂ ପେଟପୂରା ଗୋଟିଏ ଦିନର ଭୋଜନ ଦାନ କଲେ ।

ସମ୍ପଦ, ବିପଦ, ସୁଖ, ଦୁଃଖ, ମିଳନ, ବିଯୋଗ, ଜୀବନ ଓ ମୃତ୍ୟୁରୂପକ ତରଙ୍ଗ-ସମାକୁଳ କାଳର ଅନନ୍ତ ପ୍ରବାହ କ୍ରମେ ୧୮୭୧ ଖ୍ରୀଷ୍ଟାବ୍ଦରେ ଆସି ପହଞ୍ଚିଲା । ଠାକୁରଙ୍କ ସହିତ ମଥୁରବାବୁଙ୍କର ପନ୍ଦରବର୍ଷର ସମ୍ବନ୍ଧ ଖୁବ୍ ଘନିଷ୍ଠ ହୋଇ ଉଠିଛି । ବୈଶାଖ ଗଲା, ଜ୍ୟେଷ୍ଠ ଗଲା, ଆଷାଢ଼ ମାସର ଅର୍ଦ୍ଧେକ ଅତୀତ-ଗର୍ଭରେ ଲୀନ ହେବାକୁ ବସିଲା । ଏହି ସମୟରେ ମଥୁର-ବାବୁ ଜ୍ୱର ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟୀ ହେଲେ । କ୍ରମେ ଏହି ଜ୍ୱର ଦିନକୁ ଦିନ ବୃଦ୍ଧି ପାଇଲା ଓ ସାତ ଆଠଦିନ ପରେ ବିକାରରେ ପରିଣତ ହେଲା । ସେ ଆଉ କଥା କହିପାରିଲେ ନାହିଁ । ଠାକୁର ପୂର୍ବରୁ ବୁଝିଥିଲେ ଯେ ମା' ତାଙ୍କର ଭକ୍ତକୁ ନିଜର ସ୍ନେହମୟ ଅଙ୍କରେ ଗ୍ରହଣ କରୁଛନ୍ତି—ମଥୁରାନାଥଙ୍କର ଭକ୍ତବ୍ରତର ଉଦ୍‌ଯାପନ ମୁହୂର୍ତ୍ତ ଉପସ୍ଥିତ । ସେଥିପାଇଁ ଠାକୁର ପ୍ରତିଦିନ ହୃଦୟଙ୍କୁ ମଥୁରବାବୁଙ୍କ ପାଖକୁ ପଠାଉଥିଲେ ତାଙ୍କୁ ଦେଖି ଆସିବା ଲାଗି, କିନ୍ତୁ ଦିନେ ହେଲେ ସେନି ଜେ ତାଙ୍କୁ ରୋଗ-

ଶଯ୍ୟାରେ ଦେଖିବାକୁ ଯାଉନଥିଲେ । କ୍ରମେ, ଶେଷ ଦିନ ଆସି ଉପସ୍ଥିତ ହେଲା । ଅନ୍ତିମ କାଳ ଆଗତ ଦେଖି ମଥୁରଙ୍କୁ କାଳୀଘାଟକୁ ନିଆଗଲା । ସେଦିନ ଠାକୁର ହୃଦୟଙ୍କୁ ମଧ୍ୟ ଦେଖିବାକୁ ପଠାଇଲେ ନାହିଁ । ଅପରାହ୍ଣରେ ଠାକୁର ଦୁଇତିନି ଘଣ୍ଟା କାଳ ଗଭୀର ସମାଧିରେ ନିମଗ୍ନ ରହିଲେ ଏବଂ ଜ୍ୟୋତିର୍ମୟ ବର୍ତ୍ମରେ ଦିବ୍ୟ ଶରୀରରେ ଭକ୍ତଙ୍କ ପାର୍ଶ୍ୱରେ ଉପସ୍ଥିତ ହୋଇ ତାଙ୍କୁ କୃତାର୍ଥ କଲେ ଓ ବହୁପୁଣ୍ୟାର୍ଜିତ ଲୋକରେ ତାଙ୍କୁ ସ୍ୱୟଂ ଆରୂଢ଼ କରାଇଲେ ।

# ଷୋଡ଼ଶ ଅଧ୍ୟାୟ

## ଷୋଡ଼ଶୀ ପୂଜା

ମଥୁରାନାଥ ଦିବ୍ୟଧାମକୁ ପ୍ରତ୍ୟାହୃତ ହୋଇଅଛନ୍ତି; ମାତ୍ର ଦକ୍ଷିଣେଶ୍ୱର କାଳୀବାଡ଼ିରେ ମନୁଷ୍ୟର ଜୀବନପ୍ରବାହ ଯେପରି ବହି ଚାଲିଥିଲା ସେହିପରି ବହିଚାଲିଛି । କ୍ରମେ ଛଅମାସ ଅତିବାହିତ ହେବାକୁ ବସିଲା । ଏହି ସମୟରେ ଠାକୁରଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା ଉପସ୍ଥିତ ହେଲା । ଶ୍ରୀମତୀ ସାରଦାମଣି ଯେତେବେଳେ ପ୍ରଥମ ଥର ପାଇଁ ସ୍ୱାମୀଙ୍କ ସଂସ୍ପର୍ଶରେ ଆସିଥିଲେ, ସେତେବେଳେ ତାଙ୍କୁ ମାତ୍ର ଚଉଦବର୍ଷ ବୟସ ହୋଇଥିଲା । ସେତେବେଳେ ସେ ଥିଲେ ନିତାନ୍ତ ବାଳିକା-ସ୍ୱଭାବ-ସମ୍ପନ୍ନା । ଦାମ୍ପତ୍ୟ-ଜୀବନର ଗମ୍ଭୀର ଉଦ୍ଦେଶ୍ୟ ଓ ଦାୟିତ୍ୱ ଉପଲବ୍ଧି କରିବାର ଶକ୍ତି ସେତେବେଳେ ବିକାଶୋନ୍ମୁଖ ହୋଇ ଆସୁଥିଲା ମାତ୍ର । ତଥାପି ବାଳିକା ଦେହ-ବୁଦ୍ଧିବିରହିତ ଠାକୁରଙ୍କ ଦିବ୍ୟସଙ୍ଗ ଓ ନିଃସ୍ୱାର୍ଥ ଆଦରଯତ୍ନ ଲାଭ କରି ସେତେବେଳେ ଅନିର୍ବଚନୀୟ ଆନନ୍ଦରେ ଉଲ୍ଲସିତା ହୋଇ ଉଠିଥିଲେ । ପରବର୍ତ୍ତୀ କାଳରେ ଠାକୁରଙ୍କ ସ୍ତ୍ରୀଭକ୍ତମାନଙ୍କ ଆଗରେ ସାରଦାମଣି ସେହିସବୁ ଦିନର ନିଜସ୍ୱ ଅନୁଭୂତି ନିଜ ଭାଷାରେ କହିଛନ୍ତି, "ହୃଦୟ ମଧ୍ୟରେ ଆନନ୍ଦର ପୂର୍ଣ୍ଣଘଟ ଯେପରି ସ୍ଥାପିତ ହୋଇଥିଲା, ସେହିଭଳି ଅନୁଭବ ହେଉଥିଲା । ସେହି ଧୀରସ୍ଥିର ଦିବ୍ୟ ଉଲ୍ଲାସରେ ଅନ୍ତର କେତେ ଦୂର କେଉଁ ଭାବରେ ପୂର୍ଣ୍ଣ ରହିଥିଲା, ତାହା ମୁହଁରେ କହି ବୁଝାଇ ହେବ ନାହିଁ ।" ଏହି ସମୟଠାରୁ ଠାକୁରଙ୍କୁ ଦେଖିବାର ଏବଂ ତାଙ୍କ ନିକଟରେ ଉପସ୍ଥିତ ରହିବାର ପ୍ରବଳ ବାସନା ସାରଦାମଣିଙ୍କ ମନକୁ ସର୍ବଦା ଠାକୁରଙ୍କ ଚିନ୍ତାରେ ବିଭୋର କରି ରଖିଥିଲା । ଦିନ ପରେ ଦିନ ଅତିବାହିତ ହେଉଥାଏ ଏବଂ ହୃଦୟରେ ବିଶ୍ୱାସ ସ୍ଥିର ରଖି ସେ ଏହି ଶୁଭ ଦିନର ପ୍ରତୀକ୍ଷାରେ ରହିଥାଆନ୍ତି ।

ଏହିଭାବରେ ଦୀର୍ଘ ଚାରୋଟି ବର୍ଷ କଟିଗଲା । ଆଶା ଓ ପ୍ରତୀକ୍ଷାର ପ୍ରବଳ ପ୍ରବାହ ବାଳିକାମନରେ ସମାନଭାବେ ପ୍ରବାହିତ ହେଉଥାଏ । ତାଙ୍କର

ଶରୀର କିନ୍ତୁ ମନଂଭଳି ସମଭାବରେ ରହିପାରିଲା ନାହିଁ । କ୍ରମେ ସେ ଅଷ୍ଟାଦଶ ବର୍ଷରେ ପଦାର୍ପଣ କଲେ । ଦେବତୁଲ୍ୟ ସ୍ୱାମୀଙ୍କର ପ୍ରଥମ ସନ୍ଦର୍ଶନ-ଜନିତ ଆନନ୍ଦ ତାଙ୍କ ଜୀବନର ଦୈନନ୍ଦିନ ସୁଖଦୁଃଖରୁ ଊର୍ଦ୍ଧ୍ୱକୁ ଉତ୍ତୋଳିତ କରି ରଖିଥିଲେ ମଧ୍ୟ ସଂସାରରେ ଅନାବିଳ ଆନନ୍ଦର ଅବସର କାହିଁ ? ଗ୍ରାମବାସୀମାନେ ନାନା ପ୍ରକାର କଳ୍ପନା-ଜଳ୍ପନା କରି କଥା କହୁଥାଆନ୍ତି । କେହି କେହି କହନ୍ତି—ଗଦାଧର (ରାମକୃଷ୍ଣ) ଏଭଳି ଉନ୍ମତ୍ତ ହୋଇ ପଡ଼ିଲଣି ଯେ ପିନ୍ଧିଲା ଲୁଗା ପର୍ଯ୍ୟନ୍ତ ତା' ଦେହରେ ରହୁନାହିଁ, ସବୁବେଳେ ହରି ହରି ହୋଇ ଘୂରି ବୁଲୁଛି । ଦେବତୁଲ୍ୟ ସ୍ୱାମୀଙ୍କ ସମ୍ବନ୍ଧରେ ଏହିପରି ନାନା କପୋଳକଳ୍ପିତ ଅପବାଦ ଲୋକମୁଖରୁ ବେଳେବେଳେ କାନରେ ପଡ଼େ । ପୁଣି କେବେକେବେ ସମବୟସ୍କା ସାଙ୍ଗସାଥୀମାନେ ତାଙ୍କୁ ପାଗଳର ସ୍ତ୍ରୀ ବୋଲି ଉପହାସ କରନ୍ତି, କରୁଣା କରନ୍ତି, ଉପେକ୍ଷା ମଧ୍ୟ କରନ୍ତି । ଏସବୁ ଶୁଣି ସରଳା ସାରଦାମଣି ମୁହଁରେ କିଛି କହିପାରନ୍ତି ନାହିଁ ସତ, କିନ୍ତୁ ଅନ୍ତରରେ ଘୋର ବେଦନା ଅନୁଭବ କରନ୍ତି । ବେଳେବେଳେ ଉନ୍ମନା ହୋଇ ଭାବନ୍ତି— ତା'ହେଲେ କ'ଣ ପୂର୍ବେ ତାଙ୍କୁ ଯେପରି ଦେଖିଥିଲି ବର୍ତ୍ତମାନ ସେ ଆଉ ସେପରି ନାହାନ୍ତି ? ଲୋକେ ଯାହା କହୁଛନ୍ତି, ତାହା କ'ଣ ସତ ? ବାସ୍ତବିକ୍ ସେ କ'ଣ ପାଗଳ ହୋଇଗଲେଣି ? ଏହିପରି ବହୁ ଚିନ୍ତା ମୁଣ୍ଡରେ ପଶେ । ଶେଷରେ ସେ ମନେମନେ ସ୍ଥିର କଲେ ଯେ ସେ ନିଜେ ଦକ୍ଷିଣେଶ୍ୱର ଯିବେ ଏବଂ ଆଖି ଓ କାନର ବିବାଦ ଭଞ୍ଜନ କରିବେ ।

ଫଗୁଣମାସର ଦୋଳପୂର୍ଣ୍ଣିମା ଆଗରେ । ସାରଦାମଣି ଶୁଣିଲେ ଯେ ତାଙ୍କର କେତେଜଣ ଗ୍ରାମବାସିନୀ ଆତ୍ମୀୟା ସେଦିନ ପୁଣ୍ୟତୋୟା ଗଙ୍ଗା-ନଦୀରେ ବୁଡ଼ ପକାଇବାକୁ ଯିବେ । ସ୍ଥିର କଲେ—ସେ ସେମାନଙ୍କ ସହିତ ଗଙ୍ଗାସ୍ନାନ କରିବାକୁ ଯିବେ । ତାଙ୍କର ବୁଦ୍ଧିମାନ ବାପା ଝିଅର ଏହି ଅଭିଳାଷ ଶୁଣି ବୁଝିପାରିଲେ ଝିଅର ମର୍ମକଥା କି'ଣ, କାହିଁକି ସେ କଲିକତା ଯିବାକୁ ବସିଛି । ତେଣୁ ସେ ମଧ୍ୟ ସ୍ଥିର କଲେ ଯେ କନ୍ୟାକୁ ସାଙ୍ଗରେ ଧରି ନିଜେ ଯିବେ । ସେତେବେଳେ ବିଷ୍ଣୁପୁର ବା ତାରକେଶ୍ୱର କେଉଁଠାରେ ହେଲେ ରେଳପଥ ନ ଥିଲା । ତେଣୁ କନ୍ୟାକୁ ସାଥିରେ ଧରି

ଅନ୍ୟାନ୍ୟ ସଙ୍ଗୀମାନଙ୍କ ସହିତ ସାରଦାମଣିଙ୍କ ପିତା ରାମଚନ୍ଦ୍ର ସେହି ସୁଦୂର ପଥ ପଦବ୍ରଜରେ ହିଁ ଅତିକ୍ରମ କରିବାକୁ ବାହାରିଲେ । କିଛିବାଟ ବିନା କଷ୍ଟରେ ଚାଲିଆସିଲେ; ମାତ୍ର ଏତେ ଦୂର ପଥ ପାଦରେ ଚାଲିବାର ଅଭ୍ୟାସ ନ ଥିବାରୁ ମଝି ରାସ୍ତାରେ ସାରଦାମଣି କ୍ଲାନ୍ତ ହୋଇ ପଡ଼ିଲେ । ତାଙ୍କୁ ଜ୍ୱର ହୋଇଗଲା । ଏତେ ଜ୍ୱର ହେଲା ଯେ ରାମଚନ୍ଦ୍ର ବିଶେଷ ଚିନ୍ତାରେ ପଡ଼ିଲେ । ଏପରି ଅବସ୍ଥାରେ ତ ଆଉ ଅଗ୍ରସର ହୋଇପାରିବେ ନାହିଁ । ତେଣୁ ଗୋଟିଏ ଚଟିଘର ଦେଖି ସେଠାରେ ବିଶ୍ରାମ ନେଲେ । ଅଧା ବାଟରେ ହଠାତ୍ ଏପରି ଅସୁସ୍ଥ ହୋଇ ପଡ଼ିବା ଯୋଗୁଁ ସାରଦାମଣିଙ୍କ ମନ ମଧ୍ୟ ବଡ଼ ବିକଳ ହେଲା । କିନ୍ତୁ ଏହି ସମୟରେ ଗୋଟିଏ ଅଦ୍ଭୁତ ଘଟଣା ଘଟିଲା । ଏହି ଘଟଣାଟି ସେ ପରବର୍ତ୍ତୀ କାଳରେ ସ୍ତ୍ରୀଭକ୍ତମାନଙ୍କ ଆଗରେ ନିଜ ମୁହଁରେ ପ୍ରକାଶ କରିଛନ୍ତି—"ପ୍ରବଳ ଜ୍ୱରରେ ମୋର ଚେତା ହଜିଯାଇଥାଏ, ଜ୍ଞାନ ହରାଇ ମୁଁ ଗୁଡ଼ିକାଡ ମେଲାଇ ପଡ଼ିଥାଏ । ହଠାତ୍ ଦେଖିଲି, ମୋ ପାଖରେ ଜଣେ ସ୍ତ୍ରୀ-ଲୋକ ଆସି ବସିଲେ । ତାଙ୍କର ରଙ୍ଗ ଗାଢ଼ ଶ୍ୟାମଳବର୍ଣ୍ଣ; କିନ୍ତୁ ଏଭଳି ସୁନ୍ଦର ରୂପ ମୁଁ ଆଗରୁ କେବେ ଦେଖି ନାହିଁ । ମୋ ପାଖରେ ବସି ସେ ମୋର ଦେହ ଓ ମୁଣ୍ଡ ନିଜ ହାତରେ ଆଉଁଷି ଥାଆନ୍ତି । ଏତେ ସୁନ୍ଦର ନରମ ଆଉ ଥଣ୍ଡା ହାତ ! ଦେହର ଜ୍ୱରଜ୍ୱାଳା ଶୀତଳ ହୋଇ ଯାଉଥାଏ । ପଚାରିଲି—'ତମେ କିଏ ? କେଉଁଠାରୁ ଆସିଲ ଗୋ !' ସେ କହିଲେ, 'ମୁଁ ଦକ୍ଷିଣେଶ୍ୱରରୁ ଆସିଛି ।' ଶୁଣିବା ମାତ୍ରେ ଚମକିପଡ଼ିଲି । 'ଦକ୍ଷିଣେଶ୍ୱରରୁ ? ମୁଁ ଭାବିଥିଲି ଦକ୍ଷିଣେ-ଶ୍ୱର ଯିବି, ତାଙ୍କୁ (ଠାକୁରଙ୍କୁ) ଦେଖିବି, ତାଙ୍କର ସେବା କରିବି । କିନ୍ତୁ ମଝିବାଟରେ ତ ଏପରି ଜ୍ୱରରେ ପଡ଼ିଗଲି । ମୋର ଭାଗ୍ୟରେ ନାହିଁ ଯେ ମୁଁ ତାଙ୍କୁ ଦେଖିବି ।' ସ୍ତ୍ରୀଲୋକ ଜଣକ କହିଲେ, 'ସେ କି କଥା ଗୋ ! ତୁମେ ଦକ୍ଷିଣେଶ୍ୱରକୁ ନିଶ୍ଚୟ ଯିବ । ଆଗ ତୁମର ଜ୍ୱର ଭଲ ହୋଇଯାଉ—ସେଠାକୁ ଯିବ । ତାଙ୍କୁ ଦେଖିବ । ତୁମ ପାଇଁ ତ ତାଙ୍କୁ ସେଠାରେ ଅଟକାଇ ରଖିଛି ।' ମୁଁ କହିଲି, 'ସତେ ନା କ'ଣ ! ତୁମେ ଆମର କ'ଣ ହେବ କି ?' ସ୍ତ୍ରୀଲୋକ ଜଣକ କହିଲେ, 'ମୁଁ ତୁମର ଭଉଣୀ ହେବି !' ମୁଁ

କହିଲି, 'ସତେ ? ସେଥିପାଇଁ କ'ଣ ତୁମେ ଆସିଛ ?' ଏହିପରି କଥାବାର୍ତ୍ତା ପରେ କେତେବେଳେ କେଜାଣି ପୁଣି ମୋତେ ଗାଢ଼ ନିଦ ଘୋଟି ଆସିଲା । ମୁଁ ଶୋଇପଡ଼ିଲି ।''

ଶ୍ରୀରାମଚନ୍ଦ୍ର ସକାଳେ ଉଠି ଦେଖିଲେ ଯେ କନ୍ୟାର ଜ୍ୱର ଛାଡ଼ି ଯାଇଛି । ପଥ ମଧ୍ୟରେ ନିରୁପାୟ ହୋଇ ବସି ରହିବା ଅପେକ୍ଷା ଧୀରେ ଧୀରେ ପଥ ଅତିକ୍ରମ କରିବାକୁ ସେ ଶ୍ରେୟଃ ବିବେଚନା କଲେ । କିଛିଦୂର ଯାଉଁ ନ ଯାଉଣୁ ଖଣ୍ଡିଏ ସବାରି ମଧ୍ୟ ଜୁଟିଗଲା । କ୍ରମେ ପଥ ମଧ୍ୟ ଶେଷ ହୋଇ ଆସିଲା ଏବଂ ରାତି ନଅଟା ସମୟରେ ଶ୍ରୀଶ୍ରୀମା ସାରଦାମଣି ଦକ୍ଷିଣେ-ଶ୍ୱରରେ ଠାକୁରଙ୍କ ସମୀପରେ ଉପସ୍ଥିତ ହେଲେ । ଠାକୁର ଏପରି ରୋଗାକ୍ରାନ୍ତ ଅବସ୍ଥାରେ ପତ୍ନୀଙ୍କୁ ହଠାତ୍ ପହଞ୍ଚିବାର ଦେଖି ବିଶେଷ ଉଦ୍‌ବିଗ୍ନ ହୋଇପଡ଼ିଲେ । ଥଣ୍ଡା ଲାଗି କାଲେ ଜ୍ୱର ପୁଣି ଲେଉଟିବ ଏହି ଆଶଙ୍କାରେ ନିଜ ଘରେ ତାଙ୍କ ପାଇଁ ଭିନ୍ନ ଶଯ୍ୟାରେ ଶୟନର ବନ୍ଦୋବସ୍ତ କରିଦେଲେ ଏବଂ ବାରମ୍ବାର ଦୁଃଖ କରି କହିଲେ, "ତୁମେ ଏତେଦିନକେ ଆସିଲ ? ଆଉ କ'ଣ ମୋର ବଡ଼ବାବୁ (ମଥୁରବାବୁ) ଅଛି ଯେ ଆଦର ଯତ୍ନ କରିବ ?'' ଔଷଧ ପଥ୍ୟାଦିର ବିଶେଷ ବନ୍ଦୋବସ୍ତ କରିବା ଫଳରେ ଶ୍ରୀମାତାଠାକୁରାଣୀ ତିନିଚାରିଦିନ ଭିତରେ ସମ୍ପୂର୍ଣ୍ଣ ଆରୋଗ୍ୟଲାଭ କଲେ । ଏହି ତିନି ଚାରି ଦିନ ଠାକୁର ତାଙ୍କୁ ନିଜ ଘରେ ରଖି ଔଷଧ ପଥ୍ୟାଦିର ଏବଂ ଅନ୍ୟାନ୍ୟ ବିଷୟର ତତ୍ତ୍ୱାବଧାନ ସ୍ୱୟଂ କରିଥିଲେ । ପରେ ନହବତ୍ ଘରେ ନିଜ ଜନନୀଙ୍କ ପାଖରେ ତାଙ୍କର ରହିବାର ବନ୍ଦୋବସ୍ତ କରିଦେଲେ ।

ଏତେ ଦିନ ପରେ ଚକ୍ଷୁକର୍ଣ୍ଣର ବିବାଦ ଭଞ୍ଜନ ହେଲା । ଶ୍ରୀଶ୍ରୀମାତା-ଠାକୁରାଣୀ ପ୍ରାଣେପ୍ରାଣେ ବୁଝିପାରିଲେ ଯେ ଠାକୁର ପୂର୍ବେ ଯେଉଁପରି ଥିଲେ, ବର୍ତ୍ତମାନ ମଧ୍ୟ ସେହିପରି ଅଛନ୍ତି । ସଂସାରୀ ମନୁଷ୍ୟ କିଛି ନ ବୁଝି ତାଙ୍କ ସମ୍ବନ୍ଧରେ ନାନା କଥା ରଚନା କରୁଛନ୍ତି । ପ୍ରାଣର ଗଭୀର ଉଲ୍ଲାସରେ ସେ ନହବତ୍ ଘରେ ନିଜର ଜୀବନଦେବତା ଓ ଦେବଜନନୀଙ୍କ ସେବାରେ ନିଜକୁ ନିୟୋଜିତ କରି ରଖିଲେ ।

କାମାରପୁକୁରରେ ଅବସ୍ଥାନ କଲାବେଳେ ଶ୍ରୀମାତାଠାକୁରାଣୀଙ୍କ ଆଗମନରେ ଠାକୁରଙ୍କ ମନରେ ଯେଉଁ ଚନ୍ତାଧାରମାନଙ୍କର ଉଦୟ ହୋଇଥିଲା, ତାହା ପାଠକେ ପୂର୍ବରୁ ଜାଣିଛନ୍ତି । ଠାକୁର ସେତେବେଳେ ଆଚାର୍ଯ୍ୟ ତୋତାପୁରୀଙ୍କଠାରୁ ବ୍ରହ୍ମବିଜ୍ଞାନରେ ଦୃଢ଼ ପ୍ରତିଷ୍ଠା ଲାଭ କରିବାର ଯେଉଁ ସିଦ୍ଧି ଅର୍ଜନ କରିଥିଲେ, ସେହି ସାଧନାଲବ୍ଧ ବିଜ୍ଞାନର ପରୀକ୍ଷା ଓ ପତ୍ନୀଙ୍କ ପ୍ରତି ନିଜର କର୍ତ୍ତବ୍ୟ-ପାଳନର ସମୀକ୍ଷା କରିବାକୁ ଆରମ୍ଭ କରିଥିଲେ । କିନ୍ତୁ ସେତେବେଳେ ସେ ତାହା ସମ୍ପୂର୍ଣ୍ଣ କରିବା ପୂର୍ବରୁ କଲିକତା ଫେରି ଆସିଥିଲେ । ବର୍ତ୍ତମାନ ଶ୍ରୀମାତାଠାକୁରାଣୀଙ୍କୁ ନିକଟରେ ପାଇ ସେ ପୁନର୍ବାର ଏହି ଦୁଇଟି ବିଷୟରେ ମନୋନିବେଶ କଲେ ଏବଂ ଅବସର ପାଇଲାମାତ୍ରେ ମାତାଠାକୁରାଣୀଙ୍କୁ ମାନବଜୀବନର ଉଦ୍ଦେଶ୍ୟ ଓ କର୍ତ୍ତବ୍ୟ ସମ୍ବନ୍ଧରେ ସବୁ ପ୍ରକାର ଶିକ୍ଷା ଦେବାକୁ ଆରମ୍ଭ କଲେ । ଶ୍ରୀମାତାଠାକୁରାଣୀ ଦିନେ ଏହି ସମୟରେ ଠାକୁରଙ୍କର ପାଦସେବା କରିବାବେଳେ ପଚାରିଲେ, "ମୋତେ ତୁମେ କେଉଁ ଭାବରେ ଦେଖ ?" ଠାକୁର ଏହାର ଉତ୍ତରରେ କହିଥିଲେ, "ଯେଉଁ ମା'ଆ ମନ୍ଦିରରେ ଅଛନ୍ତି, ସେ ହିଁ ଏ ଶରୀରର ଜନ୍ମ ଦେଇଛନ୍ତି, ଏବଂ ସମ୍ପ୍ରତି ନହବତ୍‌ଖାନା ଘରେ ବାସ କରୁଛନ୍ତି, ପୁଣି ସେ ହିଁ ବର୍ତ୍ତମାନ ମୋର ପାଦସେବା କରୁଛନ୍ତି । ସତକୁ ସତ ମୁଁ ତୁମକୁ ସାକ୍ଷାତ୍ ଆନନ୍ଦମୟୀ ରୂପରେ ଦେଖୁଅଛି ।"

ଏହାପରେ ଶ୍ରୀଶ୍ରୀଜଗନ୍ମାତାଙ୍କ କୃପାରେ ଓ ଇଚ୍ଛାରେ ଠାକୁରଙ୍କର ପ୍ରାଣରେ ଦିନେ ଏକ ଅଦ୍ଭୁତ ବାସନାର ଉଦୟ ହେଲା ଏବଂ କିଛି ମାତ୍ର ଦ୍ୱିଧା ନ କରି ସେ ତାହାକୁ କାର୍ଯ୍ୟରେ ପରିଣତ କଲେ ।

ଇଂରାଜୀ ୧୮୭୨ ଖ୍ରୀଷ୍ଟାବ୍ଦ । ଜ୍ୟେଷ୍ଠମାସର ଅଧାଅଧି ଗଲାଣି । ଆଜି ଅମାବସ୍ୟା, ଫଳହାରିଣୀ କାଳିକା-ପୂଜାର ପୁଣ୍ୟ ଦିବସ । ଠାକୁର ଶ୍ରୀଶ୍ରୀ-ଜଗଦମ୍ବାଙ୍କୁ ପୂଜା କରିବା ମାନସରେ ଆଜି ବିଶେଷ ଆୟୋଜନ କରିଛନ୍ତି । ଏହି ଆୟୋଜନ କିନ୍ତୁ ମନ୍ଦିରରେ ନ ହୋଇ ତାଙ୍କର ଇଚ୍ଛାନୁସାରେ ଗୁପ୍ତ-ଭାବରେ ତାଙ୍କର ନିଜ ରହିବା ଘରେ ହୋଇଅଛି । ପୂଜାକାଳରେ ଦେବୀଙ୍କର ଉପବେଶନ ଲାଗି ଗୋଟିଏ ଆସ୍ଥାନ ପୂଜକର ଦକ୍ଷିଣ ପାର୍ଶ୍ୱରେ

ସ୍ଥାପିତ ହୋଇଛି । ସେହି ଆସ୍ଥାନ ଉପରେ ନାନା ପ୍ରକାର ଝୋଟି ପକା-ଯାଇଛି । ଦେବୀଙ୍କ ରହସ୍ୟ-ପୂଜାର ସମସ୍ତ ଆୟୋଜନ ସମ୍ପୂର୍ଣ୍ଣ ହେବାକୁ ରାତି ନଅଟା ବାଜିଗଲା । ଠାକୁର ଏହା ପୂର୍ବରୁ ଶ୍ରୀମାତାଠାକୁରାଣୀଙ୍କୁ ପୂଜାବେଳେ ଉପସ୍ଥିତ ରହିବାକୁ କହି ପଠାଇଥାଆନ୍ତି । ସେ ମଧ୍ୟ ସେହି ପୂଜା ଘରେ ଆସି ପହଞ୍ଚିଗଲେ ।

ଠାକୁର ପୂଜାରେ ବସିଲେ । ତା'ପରେ ଶ୍ରୀମାତାଠାକୁରାଣୀଙ୍କୁ ସେହି ଝୋଟିପକା ଦେବୀ-ଆସ୍ଥାନ ଉପରେ ଉପବେଶନ କରିବାକୁ ଠାକୁର ଇଙ୍ଗିତ ଦେଲେ । ସେହି ଇଙ୍ଗିତରେ ମନ୍ତ୍ରମୁଗ୍ଧା ଭଳି ସେ ବର୍ତ୍ତମାନ ପୂର୍ବମୁଖ ହୋଇ ବସିଥିବା ଠାକୁରଙ୍କର ଦକ୍ଷିଣଭାଗରେ ଉତ୍ତରମୁଖୀ ହୋଇ ବସିଲେ । ସମ୍ମୁଖସ୍ଥ କଳସୀରୁ ମନ୍ତ୍ରପୂତ ଜଳଦ୍ୱାରା ଠାକୁର ବାରମ୍ବାର ଶ୍ରୀଶ୍ରୀମାଙ୍କୁ ଯଥାବିଧାନ ଅଭିଷିକ୍ତା କଲେ । ତା'ପରେ କେତେକ ମନ୍ତ୍ରପାଠ କରିସାରି ସେ ପ୍ରାର୍ଥନାମନ୍ତ୍ର ଉଚ୍ଚାରଣ କଲେ—"ହେ ବାଲେ ! ହେ ସର୍ବଶକ୍ତିର ଅଧିଶ୍ୱରୀ ମାତଃ ତ୍ରିପୁରାସୁନ୍ଦରୀ ! ସିଦ୍ଧିଦ୍ୱାର ଉନ୍ମୁକ୍ତ କର । ଏହାଙ୍କର ଶରୀର ମନକୁ ପବିତ୍ର କରି ଏହାଙ୍କଠାରେ ଆବିର୍ଭୂତା ହୋଇ ସର୍ବକଲ୍ୟାଣ ସାଧନ କର ।" ଅତଃପର ଶ୍ରୀଶ୍ରୀମା'ଙ୍କ ଅଙ୍ଗରେ ଯଥାବିଧାନ ମନ୍ତ୍ରଗୁଡ଼ିକର ନ୍ୟାସ-ପୂର୍ବକ ଠାକୁର ସାକ୍ଷାତ୍ ଦେବୀଜ୍ଞାନରେ ତାଙ୍କୁ ଷୋଡ଼ଶୋପଚାରରେ ପୂଜା କଲେ ଏବଂ ଭୋଗ ନିବେଦନ କରି ନିବେଦିତ ବସ୍ତୁସକଳର କିୟଦଂଶ ନିଜ ହସ୍ତରେ ତାଙ୍କ ମୁଖରେ ପ୍ରଦାନ କଲେ । ଶ୍ରୀଶ୍ରୀମା ବାହ୍ୟଜ୍ଞାନ-ତିରୋହିତ ହୋଇ ସମାଧିସ୍ଥା ହୋଇଗଲେ । ଠାକୁର ମଧ୍ୟ ଅର୍ଦ୍ଧବାହ୍ୟ-ଦଶାରେ ମନ୍ତ୍ରୋଚ୍ଚାରଣ କରୁ କରୁ ସମ୍ପୂର୍ଣ୍ଣ ସମାଧିମଗ୍ନ ହୋଇଗଲେ । ସମାଧିସ୍ଥ ପୂଜକ ସମାଧିସ୍ଥା ଦେବୀଙ୍କ ସହିତ ଆତ୍ମସ୍ୱରୂପରେ ପୂର୍ଣ୍ଣଭାବେ ମିଳିତ ଓ ଏକୀଭୂତ ହୋଇଗଲେ । ନିଶାର ଦ୍ୱିତୀୟ ପ୍ରହର କ୍ରମେ ଅତୀତ ହୋଇଗଲା । ଆତ୍ମାରାମ ଠାକୁରଙ୍କର କ୍ରମେକ୍ରମେ ବାହ୍ୟଜ୍ଞାନ ଫେରି ଆସିଲା । ପୂର୍ବଭଳି ଅର୍ଦ୍ଧବାହ୍ୟଦଶା ପ୍ରାପ୍ତ ହୋଇ ସେ ବର୍ତ୍ତମାନ ଦେବୀଙ୍କ ଉଦ୍ଦେଶ୍ୟରେ ଆତ୍ମନିବେଦନ କଲେ । ଅନନ୍ତର ନିଜ ସହିତ ସାଧନାର ଫଳ

ଏବଂ ନିଜର ଜପମାଳା ପ୍ରଭୃତି ସର୍ବସ୍ୱ ଶ୍ରୀଶ୍ରୀଦେବୀଙ୍କ ପାଦପଦ୍ମରେ ଚିରକାଳ ଲାଗି ବିସର୍ଜନ କରି ମନ୍ତ୍ରୋଚ୍ଚାରଣ କରି କରି ତାଙ୍କୁ ପ୍ରଣାମ କଲେ—

"ହେ ସର୍ବମଙ୍ଗଳର ମଙ୍ଗଳସ୍ୱରୂପିଣୀ ! ହେ ସର୍ବକର୍ମ ନିଷ୍ପନ୍ନକାରିଣୀ ! ହେ ଶରଣଦାୟିନୀ ! ତ୍ରିନୟନୀ ଶିବଗେହିନୀ ଗୌରୀ ! ହେ ନାରାୟଣୀ ! ତୁମଙ୍କୁ ପ୍ରଣାମ ! ତୁମକୁ ପ୍ରଣାମ କରୁଅଛୁ !!"

ପୂଜା ଶେଷ ହେଲା । ମୂର୍ତ୍ତିମତୀ ବିଦ୍ୟାରୂପିଣୀ ମାନବୀର ଦେହା-ବଲମ୍ବନରେ ଈଶ୍ୱରୀଙ୍କର ଉପାସନାପୂର୍ବକ ଠାକୁରଙ୍କର ସାଧନାର ପରି-ସମାପ୍ତି ହେଲା । ତାଙ୍କର ଦେବ-ମାନବତ୍ୱ ସର୍ବତୋଭାବରେ ସମ୍ପୂର୍ଣ୍ଣତା ଲାଭ କଲା । ଏହିଭାବରେ ଏକବର୍ଷ ଚାରିମାସ କାଳ ଶ୍ରୀଶ୍ରୀଠାକୁରଙ୍କ ନିକଟରେ ଦକ୍ଷିଣେଶ୍ୱରରେ ଅତିବାହିତ କରି ଶ୍ରୀଶ୍ରୀମାତାଠାକୁରାଣୀ କାମାରପୁକୁରକୁ ପ୍ରତ୍ୟାବର୍ତ୍ତନ କଲେ ।

## ସପ୍ତଦଶ ଅଧ୍ୟାୟ

# ଖ୍ରୀଷ୍ଟଧର୍ମସାଧନ ଓ ଡକାଏତବାବା କାହାଣୀ

ଏହିପରି ଭାବରେ ଆଉ ଏକ ବର୍ଷ କଟିଗଲା । ଶ୍ରୀରାମକୃଷ୍ଣଙ୍କ ମନରେ ଆଉ ଗୋଟିଏ ସାଧନ-ପଥ ଅବଲମ୍ବନ କରି ଶ୍ରୀଶ୍ରୀଜଗଦମ୍ବାଙ୍କୁ ଦର୍ଶନ କରିବା ଲାଗି ସ୍ପୃହା ଜାଗ୍ରତ ହେଲା । କଲିକତାର ସିନ୍ଦୁରିଆପଟି ପଲ୍ଲୀରେ ଶମ୍ଭୁଚରଣ ମଲ୍ଲିକ ନାମକ ଜଣେ ଦାନଶୀଳ ବ୍ରାହ୍ମଧର୍ମ-ଅନୁରାଗୀ ବ୍ୟକ୍ତି ବାସ କରୁଥିଲେ । ଠାକୁର ତାଙ୍କ ସହିତ ସମ୍ବନ୍ଧ ସ୍ଥାପନ କରି ତାଙ୍କଠାରୁ ପବିତ୍ର ବାଇବେଲ ଧର୍ମଗ୍ରନ୍ଥ ଶ୍ରବଣ କରୁ କରୁ ହଠାତ୍ ତାଙ୍କର ଚିତ୍ତ ଈଶ୍ୱର-ପୁତ୍ର ଯୀଶୁଖ୍ରୀଷ୍ଟଙ୍କ ପବିତ୍ର କାହାଣୀର ଚରିତ୍ର ପ୍ରତି ଗଭୀର ଭାବରେ ଆକୃଷ୍ଟ ହୋଇ ପଡ଼ିଲା । ସେ ଯୀଶୁଖ୍ରୀଷ୍ଟଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ଓ ସାଧନାପନ୍ଥା ସମ୍ବନ୍ଧରେ ଅବହିତ ହେଲେ । ଏହା ଫଳରେ ଖ୍ରୀଷ୍ଟୀୟ ଧର୍ମତତ୍ତ୍ୱ ପ୍ରତ୍ୟକ୍ଷ କରିବା ପାଇଁ ତାଙ୍କ ଭିତରେ ବାସନା ଜାଗ୍ରତ ହେଲା ଏବଂ ଅଳ୍ପକାଳ ଭିତରେ ଶ୍ରୀଶ୍ରୀଜଗଦମ୍ବା ଏକ ଅଦ୍‌ଭୁତ ଉପାୟରେ ଠାକୁରଙ୍କର ସେହି ବାସନା ପୂର୍ଣ୍ଣ କରିଦେଲେ । ଘଟଣାଟି ଏହିପରି ଭାବରେ ଘଟିଥିଲା ।

ଦକ୍ଷିଣେଶ୍ୱର କାଳୀବାଡ଼ିର ଦକ୍ଷିଣ ପାର୍ଶ୍ୱରେ ଯଦୁଲାଲ ମଲ୍ଲିକଙ୍କର ଉଦ୍ୟାନ-ଗୃହ । ଠାକୁର ମଝିରେ ମଝିରେ ସେଠାକୁ ବୁଲିଯାଆନ୍ତି । ଯଦୁଲାଲ ଓ ତାଙ୍କର ମାଆ ଠାକୁରଙ୍କୁ ବିଶେଷ ଭକ୍ତି ଓ ଶ୍ରଦ୍ଧା କରୁଥିଲେ । ସୁତରାଂ ଉଦ୍ୟାନରେ ସେମାନେ ଉପସ୍ଥିତ ନ ରହିଲେ ମଧ୍ୟ ଠାକୁର ସେଠାକୁ ବୁଲିଗଲେ କର୍ମଚାରୀମାନେ ବାବୁଙ୍କର ବୈଠକଖାନା ଖୋଲିଦେଇ ତାଙ୍କୁ ସେଠାରେ କିଛି ସମୟ ବସିବା ଓ ବିଶ୍ରାମ କରିବା ପାଇଁ ଅନୁରୋଧ କରନ୍ତି । ସେହି ପ୍ରକୋଷ୍ଠର କାନ୍ଥରେ ଉଚ୍ଚକୋଟିର ବହୁ ସୁନ୍ଦର ଛବି ରହିଥିଲା । ତନ୍ମଧ୍ୟରେ ମାତୃକୋଡ଼ରେ ଅବସ୍ଥିତ ଈଶ୍ୱରପୁତ୍ର ଯୀଶୁଙ୍କର ବାଲ୍ୟକାଳର ଛବିଟିଏ ଥିଲା । ଠାକୁରଙ୍କ ନିଜ ମୁଖରୁ ଶୁଣାଯାଇଛି ଯେ ଦିନେ

ସେହି ବୈଠକଖାନା ଘରେ ବସି ସେ ଏହି ଛବିଟି ତନ୍ମୟ ହୋଇ ଦେଖୁଥିଲେ ଏବଂ ଶ୍ରୀଶ୍ରୀଯୀଶୁଙ୍କର ଜୀବନ-କଥା ମନେ ମନେ ଭାବୁଥିଲେ । ହଠାତ୍ ସେ ଦେଖିଲେ ଯେ ଛବିଟି ଜୀବନ୍ତ ଓ ଜ୍ୟୋତିର୍ମୟ ହୋଇ ଉଠିଲା ଏବଂ ସେହି ଅଦ୍ଭୁତ ଦେବଜନନୀ ଓ ଦେବଶିଶୁଙ୍କର ଅଙ୍ଗଭିତରୁ ଜ୍ୟୋତିରଶ୍ମି ସମୂହ ତାଙ୍କ ଅନ୍ତରରେ ପ୍ରବିଷ୍ଟ ହୋଇ ତାଙ୍କର ମାନସିକ ଭାବସମୂହକୁ ଆମୂଳ ପରିବର୍ତ୍ତିତ କରିଦେଲା । ତାଙ୍କର ଜନ୍ମଗତ ହିନ୍ଦୁ ସଂସ୍କାରଗୁଡ଼ିକ ଅନ୍ତରର ନିଭୃତ କୋଣରେ ବିଲୀନ ହୋଇଗଲା ଏବଂ ତତ୍ପରିବର୍ତ୍ତେ ଭିନ୍ନ ସଂସ୍କାରମାନ ଉଦିତ ହେବାକୁ ଲାଗିଲା । ଏହି ଆଲୋଡ଼ନ ଦେଖି ଠାକୁର ନାନା ଭାବରେ ଆପଣାକୁ ସମ୍ଭାଳି ରଖିବାକୁ ଉଦ୍ୟମ କଲେ—ଶ୍ରୀଶ୍ରୀଜଗଦମ୍ବାଙ୍କୁ କାତର କଣ୍ଠରେ କହିବାକୁ ଲାଗିଲେ—"ମା ! ମୋତେ ଏ କ'ଣ କରୁଛୁ ?" କିନ୍ତୁ କୌଣସିଥିରେ କିଛି ହେଲା ନାହିଁ । ଏହି ନବାନୁଭୂତ ଖ୍ରୀଷ୍ଟିୟାନ ସଂସ୍କାରଗୁଡ଼ିକ ଉନ୍ନତ ତରଙ୍ଗ ଭଳି ପ୍ରବଳ ବେଗରେ ଉତ୍ଥିତ ହୋଇ ତାଙ୍କ ମନ ଭିତରୁ ହିନ୍ଦୁ ସଂସ୍କାରସମୂହକୁ ସମ୍ପୂର୍ଣ୍ଣ ରୂପେ ଭସାଇ ନେଇଗଲା । ସେତେବେଳେ ହିନ୍ଦୁ ଦେବଦେବୀଙ୍କ ପ୍ରତି ଠାକୁରଙ୍କର ଅନୁରାଗ ଓ ଶ୍ରଦ୍ଧା କେଉଁଆଡ଼େ ବିଲୀନ ହୋଇଗଲା ଏବଂ ସେହି ସ୍ଥାନରେ ଶ୍ରୀଶ୍ରୀ ଯୀଶୁ ଓ ତାଙ୍କ ପ୍ରବର୍ତ୍ତିତ ସମ୍ପ୍ରଦାୟ ପ୍ରତି ପୂର୍ଣ୍ଣ ଶ୍ରଦ୍ଧା ଓ ବିଶ୍ୱାସ ଆସି ତାଙ୍କ ହୃଦୟକୁ ଅଧିକାର କରିବସିଲା । ଏହି ନବାନୁଭୂତ ଭାବତରଙ୍ଗ ତିନିଦିନ ପର୍ଯ୍ୟନ୍ତ ତାଙ୍କ ଉପରେ ପ୍ରଭୁତ୍ୱ କରି ବିଦ୍ୟମାନ ରହିଲା । ତୃତୀୟ ଦିବସର ଅବସାନ ପୂର୍ବରୁ ଠାକୁର ପଞ୍ଚବଟୀ ତଳେ ବୁଲୁବୁଲୁ ଦେଖିଲେ ଏକ ଅଦୃଷ୍ଟପୂର୍ବ ସୁନ୍ଦର ଗୌରବର୍ଣ୍ଣ ଦେବମାନବ ସ୍ଥିର ଦୃଷ୍ଟିରେ ତାଙ୍କୁ ଚାହିଁ ଚାହିଁ ତାଙ୍କ ଆଡ଼କୁ ଅଗ୍ରସର ହେଉଅଛନ୍ତି । ଦେଖୁ ଦେଖୁ ଏହି ମୂର୍ତ୍ତି ନିକଟକୁ ଚାଲିଆସିଲେ ଏବଂ ଠାକୁରଙ୍କ ପୂତ ହୃଦୟର ଅନ୍ତସ୍ଥଳରୁ ଧ୍ୱନିତ ହେବାକୁ ଲାଗିଲା—"ଈଶାମସି !" ତା'ପରେ ସେହି ଦେବ-ମାନବ ଈଶା ବା ଯୀଶୁ ଠାକୁରଙ୍କୁ ଆଲିଙ୍ଗନ କରି ତାଙ୍କର ଶରୀରରେ ଲୀନ ହୋଇଗଲେ ଏବଂ ଭାବାବିଷ୍ଟ ବାହ୍ୟଜ୍ଞାନହୀନ ଠାକୁରଙ୍କ ମନ ସଗୁଣ ବିରାଟ ବ୍ରହ୍ମଙ୍କ ସହିତ କେତେବେଳ ପର୍ଯ୍ୟନ୍ତ ଏକୀଭୂତ ହୋଇ ରହିଲା । ଏହି ରୂପେ ଶ୍ରୀଶ୍ରୀଯୀଶୁଙ୍କ ଦର୍ଶନଲାଭ କରି ଠାକୁର ତାଙ୍କର ଅବତାରତ୍ୱ ସମ୍ବନ୍ଧରେ ନିଃସନ୍ଦିଗ୍ଧ ହୋଇଥିଲେ ।

ଭଗବାନ ବୁଦ୍ଧଙ୍କ ସମ୍ବନ୍ଧରେ ମଧ୍ୟ ଠାକୁର ସାଧାରଣ ହିନ୍ଦୁ ଯେପରି ବିଶ୍ୱାସ କରିଥାଆନ୍ତି, ସେହିଭଳି ବିଶ୍ୱାସ କରୁଥିଲେ । ବୁଦ୍ଧଦେବଙ୍କୁ ସେ ଈଶ୍ୱରାବତାର ବୋଲି ଶ୍ରଦ୍ଧା ଓ ପୂଜା କରୁଥିଲେ ଏବଂ ପୁରୀଧାମସ୍ଥ ଶ୍ରୀଶ୍ରୀ-ଜଗନ୍ନାଥ, ସୁଭଦ୍ରା ଓ ବଳଭଦ୍ରଙ୍କର ମିଳିତ ମୂର୍ତ୍ତିରେ ଶ୍ରୀଭଗବାନ ବୁଦ୍ଧା-ବତାରଙ୍କର ପ୍ରକାଶ ଅଦ୍ୟାପି ବର୍ତ୍ତମାନ ବୋଲି ବିଶ୍ୱାସ କରୁଥିଲେ । ଜୈନଧର୍ମର ପ୍ରବର୍ତ୍ତକ ତୀର୍ଥଙ୍କରମାନଙ୍କ ପ୍ରତି ଏବଂ ଶିଖଧର୍ମପ୍ରବର୍ତ୍ତକ ଗୁରୁ ନାନକଙ୍କଠାରୁ ଗୁରୁ ଗୋବିନ୍ଦଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ପ୍ରତି ଠାକୁରଙ୍କର ବିଶେଷ ଭକ୍ତିଶ୍ରଦ୍ଧା ଥିଲା । କିନ୍ତୁ ଏମାନଙ୍କ ମଧ୍ୟରୁ କାହାକୁ ଠାକୁର ଈଶ୍ୱରାବତାର ବୋଲି ନିର୍ଦ୍ଦେଶ କରିନାହାନ୍ତି । ଶିଖମାନଙ୍କର ଦଶଜଣ ଗୁରୁଙ୍କ ସମ୍ବନ୍ଧରେ ଠାକୁର କହୁଥିଲେ, "ସେମାନେ ସମସ୍ତେ ଜନକ ଋଷିଙ୍କର ଅବତାର । ଶିଖ-ମାନଙ୍କ ନିକଟରୁ ଶୁଣିଛି, ରାଜର୍ଷି ଜନକଙ୍କ ମନରେ ମୁକ୍ତିଲାଭ କରିବା ପୂର୍ବରୁ ଲୋକକଲ୍ୟାଣସାଧନ କରିବାର ବାସନା ଉଦିତ ହୋଇଥିଲା ଏବଂ ସେଥିଲାଗି ସେ ନାନକାଦି ଗୋବିନ୍ଦଙ୍କ ପର୍ଯ୍ୟନ୍ତ ଦଶଗୁରୁ ରୂପରେ ଦଶଥର ଜନ୍ମଗ୍ରହଣ କରି ଶିଖଜାତି ମଧ୍ୟରେ ଧର୍ମ-ସଂସ୍ଥାପନପୂର୍ବକ ପରମବ୍ରହ୍ମଙ୍କ ସହିତ ଚିରକାଳ ଲାଗି ମିଳିତ ହୋଇ ଯାଇଥିଲେ ।"

ଷୋଡ଼ଶୀ ପୂଜା ପରେ ଶ୍ରୀଶ୍ରୀମାତାଠାକୁରାଣୀ ୧୮୭୩ ଖ୍ରୀଷ୍ଟାବ୍ଦର ସେପ୍ଟେମ୍ବର ମାସରେ କାମାରପୁକୁରକୁ ପ୍ରତ୍ୟାଗମନ କରିଥିଲେ । ଶ୍ରୀଶ୍ରୀମା ଏଠାକୁ ଆସିବାର ଅଳ୍ପକାଳ ପରେ ହିଁ ଠାକୁରଙ୍କର ମଧ୍ୟମାଗ୍ରଜ ରାମେଶ୍ୱର ଭିଷଣ ଜ୍ୱରାତିସାର ରୋଗରେ ମୃତ୍ୟୁବରଣ କଲେ । ରାମେଶ୍ୱରଙ୍କ ମୃତ୍ୟୁ ପରେ ତାଙ୍କର ପୁତ୍ର ରାମଲାଲ ଦକ୍ଷିଣେଶ୍ୱରରେ ପୂଜାଭାର ଗ୍ରହଣ କଲେ । ୧୮୭୪ ମସିହା ଏପ୍ରିଲ ମାସରେ ଶ୍ରୀମାତାଠାକୁରାଣୀ ପଦବ୍ରଜରେ ଦ୍ୱିତୀୟଥର ପାଇଁ ଦକ୍ଷିଣେଶ୍ୱରକୁ ଆସିଲେ । ସେହି ସମୟରେ ପଥିକମାନଙ୍କୁ ଜାହାନା-ବାଦ୍ (ଆରାମବାଗ) ପର୍ଯ୍ୟନ୍ତ ଅଗ୍ରସର ହୋଇ ବୃଶପାଞ୍ଚ କୋଶ ବ୍ୟାପୀ ତେଲୋଭେଲୋ ଓ କୈକଲା ପ୍ରାନ୍ତର ଉତ୍ତୀର୍ଣ୍ଣ ହେବାକୁ ପଡ଼ୁଥିଲା । ତା' ପରେ ତାରକେଶ୍ୱର ପର୍ଯ୍ୟନ୍ତ ଆସି ସେଠାରୁ ବୈଦ୍ୟବାଟିଠାରେ ଗଙ୍ଗାପାରି ହେବାକୁ ପଡ଼ୁଥିଲା । ଏହି ବିସ୍ତୀର୍ଣ୍ଣ ପ୍ରାନ୍ତର ଦୁଇଟି ସେତେବେଳେ

ଡକାଏତମାନଙ୍କର ଆଡ୍ଡାସ୍ଥଳ ଥିଲା । ତେଲୋଭେଲୋ ନାମକ କ୍ଷୁଦ୍ର ଗ୍ରାମ ଦୁଇଟିର ଏକ କୋଶ ଅନ୍ଦାଜ ଦୂରରେ ପ୍ରାନ୍ତରର ମଧ୍ୟଭାଗରେ କରାଳ-ବଦନା, ସୁଭୀଷଣା ଗୋଟିଏ କାଳୀମୂର୍ତ୍ତି ଥିଲା ଏବଂ ତାହା ଏବେ ମଧ୍ୟ ସେଠାରେ ଦୃଷ୍ଟିଗୋଚର ହୁଏ । ଲୋକେ କହନ୍ତି—ଏହି ଭୀଷଣ କାଳୀମୂର୍ତ୍ତିଙ୍କୁ ପୂଜା କରି ଡକାଏତମାନେ ନରହତ୍ୟାସଦୃଶ ନୃଶଂସ କାର୍ଯ୍ୟ କରିଥାଆନ୍ତି । ଠାକୁରଙ୍କର ମଧ୍ୟମାଗ୍ରଜ ରାମେଶ୍ୱରଙ୍କ କନ୍ୟା ଓ କନିଷ୍ଠ ପୁତ୍ର ଏବଂ ଆଉ କେତେଜଣ ସ୍ତ୍ରୀପୁରୁଷଙ୍କ ସହିତ ଶ୍ରୀଶ୍ରୀମା ତାଠାକୁରାଣୀ କାମାରପୁକୁରରୁ ଦକ୍ଷିଣେଶ୍ୱର ଯାତ୍ରା କଲେ । ଆରାମବାଗରେ ପହଞ୍ଚି ତେଲୋଭେଲୋ ଓ କୈକଲା ପ୍ରାନ୍ତର ସନ୍ଧ୍ୟା ପୂର୍ବରୁ ପାର ହେବାଲାଗି ଯଥେଷ୍ଟ ସମୟ ଅଛି ବୋଲି ଭାବି ତାଙ୍କର ସଙ୍ଗୀମାନେ ଏହି ସ୍ଥାନରେ ରହି ରାତି ଯାପନ କରିବାକୁ ଅନିଚ୍ଛା ପ୍ରକାଶ କଲେ ଶ୍ରୀଶ୍ରୀମା ତାଠାକୁରାଣୀ ଅବଶ୍ୟ ପଥଶ୍ରମରେ କ୍ଳାନ୍ତ ହୋଇ ପଡ଼ିଥିଲେ; କିନ୍ତୁ ଅନ୍ୟମାନଙ୍କ ମତିଗତି ଦେଖି ସେ ନିଜର କ୍ଳାନ୍ତ କଥା କାହାକୁ ନ କହି ସେମାନଙ୍କ ସଙ୍ଗେ ବାଟ ଚାଲିବାକୁ ଲାଗିଲେ । ଏହି ଭାବରେ ପ୍ରାୟ ଦୁଇକୋଶ ପଥ ଅତିକ୍ରମ କଲାବେଳକୁ ଦେଖାଗଲା—ସେ ଆଉ ସଙ୍ଗୀମାନଙ୍କ ସହିତ ସମତାଳ ରଖି ଚାଲିପାରୁ ନାହାନ୍ତି, ପଛରେ ପଡ଼ି ଯାଉଛନ୍ତି । ସେତେବେଳେ ସଙ୍ଗୀମାନେ ତାଙ୍କ ଲାଗି କିଛି ସମୟ ଅପେକ୍ଷା କରନ୍ତି ଏବଂ ସେ ତାଙ୍କ ପାଖରେ ପହଞ୍ଚିବା ମାତ୍ରେ ତାଙ୍କୁ ଚଞ୍ଚଳ ଚଞ୍ଚଳ ପାଦ ପକାଇବାକୁ କହି ସେମାନେ ପୁଣି ବାଟ ଚାଲନ୍ତି । ଏପରି ବାରମ୍ବାର ହେବାର ଦେଖି ସଙ୍ଗୀମାନେ ନିକଟକୁ ଆସି କହିଲେ—ଏପରି ଚାଲିଲେ ପ୍ରହରେ ରାତି ଭିତରେ ମଧ୍ୟ ଏହି ପ୍ରାନ୍ତର ପାରି ହୋଇପାରିବା ନାହିଁ । ସମସ୍ତଙ୍କୁ ଡକାଏତଙ୍କ ହାତରେ ପଡ଼ିବାକୁ ହେବ । ଶ୍ରୀଶ୍ରୀମା ଭାବିଲେ ତାଙ୍କ ଯୋଗୁଁ ଏତେ ଲୋକ ହଇରାଣ ହେବା ଉଚିତ ନୁହେଁ । ତେଣୁ ସେ ସେମାନଙ୍କୁ କହିଲେ, "ମୋ ଲାଗି ତୁମେମାନେ ଆଉ ଅପେକ୍ଷା କର ନାହିଁ । ତୁମେ ସବୁ ଆଗ ତାରକେଶ୍ୱରର ଚଟିଘରଯାଏ ଚାଲିଯାଇ ସେଠାରେ ବିଶ୍ରାମ କର । ମୁଁ ଯେତେ ଶୀଘ୍ର ପାରେ ଯାଇ ତୁମ-ମାନଙ୍କ ସହିତ ମିଶିବି ।" ଆଉ ଅଧିକ ସମୟ ନାହିଁ ଦେଖି ଏବଂ ତାଙ୍କ

କଥା ଉପରେ ନିର୍ଭର କରି ସଙ୍ଗୀମାନେ କାଳ ବିଳମ୍ବ ନ କରି ଦ୍ରୁତ ପଦରେ ବାଟ ଚାଲିବାକୁ ଲାଗିଲେ ଓ ସେହି ପ୍ରାନ୍ତର ପାର ହୋଇଗଲେ ।

ଏଣେ ଶ୍ରୀଶ୍ରୀମା ଏକାକିନୀ ଯଥାସାଧ୍ୟ ଦ୍ରୁତ ପଦରେ ପ୍ରାନ୍ତର ମଧ୍ୟରେ ଚାଲିଥାଆନ୍ତି; କିନ୍ତୁ ଶରୀର ଖୁବ୍ ଅବସନ୍ନ ଲାଗୁଥାଏ । ପ୍ରାନ୍ତର ଭିତରେ ପହଞ୍ଚିବା ମାତ୍ରେ ସନ୍ଧ୍ୟା ଘୋଟି ଆସିଲା । ବିଷମ ଚିନ୍ତିତା ହୋଇ ସେ କ'ଣ କରିବେ ଭାବୁଛନ୍ତି—ଏହି ସମୟରେ ଦେଖିଲେ ଘୋର କଳା ବିରାଟକାୟ ଜଣେ ପୁରୁଷ ଲୋକ ଗୋଟାଏ ଠେଙ୍ଗା କାନ୍ଧରେ ପକାଇ ତାଙ୍କର ଆଡ଼କୁ ଲକ୍ଷ୍ୟ କରି ମାଡ଼ି ଆସୁଛି । ତା' ପଛକୁ ଟିକିଏ ଦୂରରେ ତା'ର ସଙ୍ଗୀଭଳି ଆଉଜଣେ ମଧ୍ୟ ଆସୁଥିବାର ବୋଧ ହେଉଛି । ଏ କ୍ଷେତ୍ରରେ ପଳାୟନ ବା ଚିତ୍କାର କରିବା ବୃଥା ବୁଝିପାରି ଶ୍ରୀଶ୍ରୀମା ସେତେବେଳେ ସ୍ଥିର ଭାବରେ ଦଣ୍ଡାୟମାନ ରହି ଏମାନଙ୍କର ଆଗମନକୁ ସଶଙ୍କଚିତ୍ତରେ ପ୍ରତୀକ୍ଷା କରିବାକୁ ଲାଗିଲେ । କେତୋଟି ମୁହୂର୍ତ୍ତ ମଧ୍ୟରେ ଯମଦୂତ ସଦୃଶ ଏହି ବିକଟାକୃତି ପୁରୁଷ ତାଙ୍କ ପାଖକୁ ଆସି କର୍କଶ ସ୍ୱରରେ ପଚାରିଲା—"କିଏଲୋ ତୁ ! ଏ ଅସମୟରେ ଏଠି ଆସି ଛିଡ଼ା ହୋଇଛୁ ?"

ଶ୍ରୀଶ୍ରୀମା ସେତେବେଳେ ତାକୁ ପ୍ରସନ୍ନ କରିବା ଆଶାରେ 'ବାପା' ବୋଲି ସମ୍ବୋଧନ କରି ତାହାର ଶରଣାପନ୍ନ ହୋଇ କହିଲେ "ବାପା ! ମୋର ସଙ୍ଗୀମାନେ ମୋତେ ଏଠାରେ ଏକୁଟିଆ ଛାଡ଼ି ଆଗକୁ ଚାଲିଗଲେଣି । ମୁଁ ବୋଧହୁଏ ବାଟ ଭୁଲିଗଲିଣି । ତୁମେ ମୋତେ ସଙ୍ଗରେ ଧରି ଯଦି ସେମାନଙ୍କ ପାଖରେ ପହଞ୍ଚାଇ ଦିଅନ୍ତ ! ତୁମର ଜୋାଇଁ ଦକ୍ଷିଣେଶ୍ୱରରେ ରାଣୀ ରାସମଣିଙ୍କ କାଳୀବାଡ଼ିରେ ଥାଆନ୍ତି । ମୁଁ ତାଙ୍କର ପାଖକୁ ଯାଉଛି । ତୁମେ ଯଦି ସେଠାକୁ ମୋତେ ନେଇଯାଆନ୍ତ ତା'ହେଲେ ସେ ତୁମକୁ ବହୁତ ଆଦର କରନ୍ତେ ।" ଏହି କଥା ସରୁ ନସରୁଣୁ ଆଉ ଜଣକ ମଧ୍ୟ ସେଠାରେ ଆସି ପହଞ୍ଚିଗଲା । ଶ୍ରୀଶ୍ରୀମା ଦେଖିଲେ—ସେ ପୁରୁଷ ନୁହେଁ, ସ୍ତ୍ରୀ-ଲୋକଟି, ଏହି ପୁରୁଷଟିର ସ୍ତ୍ରୀ । ଏହି ସ୍ତ୍ରୀଲୋକକୁ ଦେଖି ବିଶେଷ ଆଶ୍ୱସ୍ତା ହୋଇ ଶ୍ରୀଶ୍ରୀମା ସେତେବେଳେ ତା'ର ହାତ ଧରି ଓ ତାକୁ ମାଆ ବୋଲି ସମ୍ବୋଧନ କରି କହିଲେ, "ମା ! ମୁଁ ତୁମର ଝିଅ ସାରଦା । ସଙ୍ଗୀମାନେ

ଗ୍ଭଲିଗଲେ, ଏଠାରେ ବିଷମ ବିପଦରେ ପଡ଼ିଥିଲି, ଭାଗ୍ୟକୁ ବାବା ଆଉ ତୁମେ ଆସି ପହଞ୍ଚିଗଲ ! ନ ହେଲେ କ'ଣ କରିଥାଆନ୍ତି କହିପାରୁ ନାହିଁ ।''

ଶ୍ରୀଶ୍ରୀମାଆଙ୍କର ଏହିଭଳି ନିଃସଙ୍କୋଚ ସରଳ ବ୍ୟବହାର, ଏକାନ୍ତ ବିଶ୍ୱାସ ଓ ମିଠା କଥାରେ ବାଗ୍‌ଦୀ ପାଇକ ଓ ତା'ର ପତ୍ନୀର ପ୍ରାଣ ଏକାବେଳକେ ବିଗଳିତ ହୋଇଗଲା । ସାମାଜିକ ଆଚାର ଓ ଜାତିକଥା ଭୁଲି ଯାଇ ସେମାନେ ସତକୁ ସତ ଏହି ଅନ୍ଧାର ରାତିରେ ଅପରିଚିତା ଭୂଇଁରେ ଏକାକିନୀ ସାରଦାମଣିଙ୍କୁ ନିଜର ଝିଅପରି ଭାବିଲେ ଏବଂ ତାଙ୍କୁ ବହୁ ସାନ୍ତ୍ୱନା ଦେବାକୁ ଲାଗିଲେ । ସେମାନେ ଦେଖିଲେ ଯେ ସେ ଅତ୍ୟନ୍ତ କ୍ଲାନ୍ତ ଓ ଅବସନ୍ନ ହୋଇ ପଡ଼ିଛନ୍ତି । ସେମାନେ ସେହି ରାତିରେ ତାଙ୍କୁ ଆଉ ଆଗକୁ ଯିବାକୁ ଦେଲେ ନାହିଁ । ସେଠାରୁ ଡାକେ ବାଟରେ ତେଲୋଭେଲୋ ଗ୍ରାମ । ସେହି ଗ୍ରାମରେ ଥିବା ଗୋଟିଏ ଛୋଟିଆ ଦୋକାନଘରକୁ ସେମାନେ ସାରଦାମଣିଙ୍କୁ ନେଇଗଲେ । ସେଠାରେ ରାତି କଟାଇବାର ସ୍ଥିର ହେଲା । ବାଗ୍‌ଦୀ ମାଆ ନିଜର ଖଣ୍ଡିଏ ଶାଢ଼ୀ ବିଛାଇ ଝିଅ ପାଇଁ ଶଯ୍ୟା ପ୍ରସ୍ତୁତ କରିଦେଲା । ବାଗ୍‌ଦୀ-ବାବା ମଧ୍ୟ ଦୋକାନରୁ ମୁଢ଼ି, ଚୂଡ଼ା ଗଣ୍ଡିଏ ଆଣି ତାଙ୍କୁ ଖାଇବାକୁ ଦେଲା । ଏହି ଭାବରେ ନିଜର ବାପମାଆ ଭଳି ଆଦର ଓ ସ୍ନେହ ଦେଖାଇ ସେମାନେ ତାଙ୍କୁ ଶୁଆଇ ଦେଲେ ଏବଂ ଦୁହେଁ ଯାକ ରାତିସାରା ଜଗିରହିଲେ । ରାତି ପାହି ସକାଳ ହେଲା । ସାରଦାମଣି ସକାଳର ନିତ୍ୟକର୍ମ ସମାପ୍ତ କରିବା ପରେ ବାଗ୍‌ଦୀ ଦମ୍ପତି ତାଙ୍କୁ ସାଙ୍ଗରେ ଧରି ତାରକେଶ୍ୱର ପର୍ଯ୍ୟନ୍ତ ଚାଲିଲେ । ସେଠାରେ ଗୋଟିଏ ଦୋକାନରେ ସେମାନେ ବିଶ୍ରାମ ନେଲେ । ବାଗ୍‌ଦୀ ରମଣୀ ତା'ର ସ୍ୱାମୀକୁ କହିଲା "ମୋ ଝିଅ କାଲି ରାତିରୁ କିଛୁ ଖାଇ ନାହିଁ । ତାରକନାଥ ବାବାଙ୍କ ପୂଜା ଶୀଘ୍ର ଶେଷ କରି ବଜାରରୁ ମାଛ, ପରିବା, ଡାଲି କିଣିଆଣ । ଆଜି ତାକୁ ମୋ ମନ ଭରି ମୁଁ ଖୁଆଇବି ।''

ପୁରୁଷଟି ସ୍ତ୍ରୀର ବରାଦ୍ ନେଇ ଚାଲିଗଲା । ଏହି ସମୟରେ ଶ୍ରୀଶ୍ରୀମାତାଠାକୁରାଣୀଙ୍କ ସଙ୍ଗୀ ଓ ସଙ୍ଗିନୀମାନେ ତାଙ୍କୁ ଖୋଜି ଖୋଜି ଆସି ସେଠାରେ ପହଞ୍ଚିଲେ ଏବଂ ତାଙ୍କୁ ନିରାପଦରେ ପହଞ୍ଚିଥିବାର ଦେଖି ଆଶ୍ୱସ୍ତ

ଓ ଖୁସୀ ହେଲେ । ତା'ପରେ ଶ୍ରୀଶ୍ରୀମା' ସେହି ବାଗ୍‌ଦୀ ଦମ୍ପତିଙ୍କ ସହିତ ନିଜର ସଙ୍ଗୀମାନଙ୍କର ପରିଚୟ କରାଇ ଦେଇ କହିଲେ—"ଏମାନେ ଯଦି ଆସି କାଲି ରାତିରେ ମତେ ରକ୍ଷା କରି ନ ଥା'ନ୍ତେ, ତା' ହେଲେ ସେହି ଅନ୍ଧାର ଅପନ୍ତରା ଭିତରେ ମୁଁ ଯେ କ'ଣ କରିଥାନ୍ତି, ତାହା ଭାବିପାରୁ ନାହିଁ ।

ତା'ପରେ ପୂଜା, ରନ୍ଧନ ଏବଂ ଭୋଜନାଦି ଶେଷ କରି ସମସ୍ତେ ଏଠାରେ କିଛି ସମୟ ପାଇଁ ବିଶ୍ରାମ କଲେ । ବିଶ୍ରାମାନ୍ତେ ସମସ୍ତେ ଯେତେବେଳେ ସେହି ସ୍ଥାନ ତ୍ୟାଗ କରି ବୈଦ୍ୟବାଟି ଅଭିମୁଖେ ଯାତ୍ରା ଆରମ୍ଭ କଲେ, ଶ୍ରୀଶ୍ରୀମା ଡାଠାକୁରାଣୀ ସେହି ବାଗ୍‌ଦୀ ଦମ୍ପତିଙ୍କୁ ଅଶେଷ କୃତଜ୍ଞତା ଜଣାଇ ବିଦାୟ ନେଲେ । ଶ୍ରୀଶ୍ରୀମାଆ ସେଦିନର ସ୍ମୃତିଚାରଣ କରି ପରବର୍ତ୍ତୀ କାଳରେ କହିଥିଲେ, "ଗୋଟିଏ ରାତି ଭିତରେ ଆମେ ପରସ୍ପରକୁ ଏତେ ଦୂର ଆପଣାର କରି ନେଇଥିଲୁ ଯେ ବିଦାୟ ନେଲାବେଳେ ବ୍ୟାକୁଳ ହୋଇ ଆମେ ବହୁତ କାନ୍ଦିଲୁ । ଅବଶେଷରେ ସୁବିଧାନୁସାରେ ମୋତେ ଦେଖିବା ପାଇଁ ସେମାନେ ଯେପରି ଦକ୍ଷିଣେଶ୍ୱର ନିଶ୍ଚୟ ଆସିବେ— ସେହି କଥା ବାରମ୍ବାର ମୁଁ ସେମାନଙ୍କର ହାତ ଧରି ଅନୁନୟ କରି କହିଲି । ବହୁ କଷ୍ଟରେ ସେମାନଙ୍କୁ ଛାଡ଼ି ସେଦିନ ସଙ୍ଗୀମାନଙ୍କ ସାଥିରେ ଦକ୍ଷିଣେଶ୍ୱର ଆସିଲି । ଆସିଲାବେଳେ ସେମାନେ ଦୁଇଜଣ ଅନେକ ଦୂର ପର୍ଯ୍ୟନ୍ତ ମୋତେ ବଳେଇ ଦେବାକୁ ଆସିଥିଲେ । ବାଟ ପାଖ ବିଲରୁ ଚଣାଛୁଇଁ ତୋଳି ମୋ କାନିରେ ବାନ୍ଧିଦେଇ ବାଗ୍‌ଦୀ-ମା କାନ୍ଦିକାନ୍ଦି ମୋତେ କହିଥିଲା, 'ମା ସାରଦା ! ରାତିରେ ଯେତେବେଳେ ମୁଢ଼ି ଖାଇବୁ, ସେତେବେଳେ ଏହି ଛୁଇଁ ସାଙ୍ଗରେ ଖାଇବୁ—ଭଲ ଲାଗିବ ।' ...ମୋର ସେହି ଡକାଏତ ବାବା-ମାଆ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ଦାଗରେ ମିଷ୍ଟାନ୍ନ ଦ୍ରବ୍ୟାଦି ଧରି ମୋତେ ଦେଖିବା ପାଇଁ କେତେଥର ଦକ୍ଷିଣେଶ୍ୱର ଆସିଥିଲେ । ଆଉ ଏ ମଧ୍ୟ (ସ୍ୱୟଂ ଠାକୁର ରାମକୃଷ୍ଣ) ମୋ ପାଖରୁ ସବୁ କଥା ଶୁଣି ସେମାନଙ୍କ ସହିତ ଠିକ୍ ଜୋଇଁ ପରି ବ୍ୟବହାର କରୁଥିଲେ, ଆଦର ଆପ୍ୟାୟନରେ ସେମାନଙ୍କୁ ପରିତୃପ୍ତ କରୁଥିଲେ ।"

ପ୍ରାୟ ବର୍ଷେକାଳ ଦକ୍ଷିଣେଶ୍ୱରରେ ବାସକଲା ପରେ ଶ୍ରୀଶ୍ରୀମାତା-ଠାକୁରାଣୀ କଠିନ ଆମାଶୟ ରୋଗରେ ଆକ୍ରାନ୍ତ ହେଲେ । ଶମ୍ଭୁବାବୁ ତାଙ୍କୁ ଆରୋଗ୍ୟ କରିବା ନିମିତ୍ତ ବିଶେଷ ଯତ୍ନ ନେଲେ । ଅଳ୍ପ ଆରୋଗ୍ୟ ହେବାରୁ ୧୮୭୫ ମସିହା ସେପ୍ଟେମ୍ବର ମାସରେ ଶ୍ରୀଶ୍ରୀମା ନିଜର ପିତାଳୟ ଜୟରାମବାଟୀ ଗ୍ରାମକୁ ଯାଇଥିଲେ । କିନ୍ତୁ ସେଠାକୁ ଫେରିବାର ଅଳ୍ପଦିନ ପରେ ପୁଣି ସେହି ରୋଗରେ ଆକ୍ରାନ୍ତ ହୋଇ ଶଯ୍ୟାଶାୟିନୀ ହେଲେ । କ୍ରମେ ସେହି ରୋଗ ଏତେ ବଢ଼ିଗଲା ଯେ ତାଙ୍କର ଜୀବନରକ୍ଷା ମଧ୍ୟ ସଂଶୟର ବିଷୟ ହୋଇ ଉଠିଲା । କୌଣସି ପ୍ରକାରେ ରୋଗର ଉପଶମ ନ ହେବାରୁ ଶ୍ରୀଶ୍ରୀମା ଭାବିଲେ ଯେ ସେ ଦେବୀଙ୍କ ନିକଟରେ ଧାରଣା ଦେବେ । ଏ ବିଷୟରେ ସେ କାହାକୁ କିଛି ନ କହି ଗ୍ରାମଦେବୀ ସିଂହବାହିନୀ ଠାକୁରାଣୀଙ୍କ ମନ୍ଦିରକୁ ଯାଇ ଏହି ଉଦ୍ଦେଶ୍ୟରେ ପ୍ରାୟୋପବେଶନ କରି ପଡ଼ି ରହିଲେ । କେତେ ଘଣ୍ଟା ଏହିଭଳି ରହିବା ପରେ ଦେବୀ ପ୍ରସନ୍ନା ହୋଇ ତାଙ୍କୁ ଆରୋଗ୍ୟ ହେବା ଲାଗି ଔଷଧ ନିର୍ଦ୍ଦେଶ କରିଦେଲେ । ଦେବୀଙ୍କ ନିର୍ଦ୍ଦେଶିତ ଔଷଧ ଖାଇବା ପରେ ତାଙ୍କର ସେହି ରୋଗର ଉପଶମ ହେଲା ଏବଂ ଶରୀର ପୂର୍ବବତ୍ ସୁସ୍ଥ ସବଳ ହୋଇ ଉଠିଲା । ସେହି ଘଟଣା ପରଠାରୁ ଏହି ସିଂହବାହିନୀ ଠାକୁରାଣୀ ବିଶେଷ ଜାଗ୍ରତା ବୋଲି ଚତୁପାର୍ଶ୍ୱସ୍ଥ ଗ୍ରାମସମୂହରେ ବିଶେଷ ପ୍ରସିଦ୍ଧି ଲାଭ କରିଥିଲେ ।

ସେହି ପୀଡ଼ିତାବସ୍ଥାରେ ଶ୍ରୀଶ୍ରୀମାତାଠାକୁରାଣୀ ପିତାଳୟକୁ ଫେରିବାର କେତେକ ମାସ ପରେ ହିଁ ଠାକୁରଙ୍କ ଜୀବନରେ ଗୋଟିଏ ବିଶେଷ ଘଟଣା ଉପସ୍ଥିତ ହୋଇଥିଲା । ୧୮୭୬ ମସିହାରେ ସମ୍ଭବତଃ ମାର୍ଚ୍ଚ ମାସରେ ଠାକୁରଙ୍କ ଜନନୀ ଶ୍ରୀମତୀ ଚନ୍ଦ୍ରାମଣି ଦେବୀ ୮୫ ବର୍ଷ ବୟଃକ୍ରମ କାଳରେ ଇହଲୋକ ପରିତ୍ୟାଗ କଲେ । ବୃଦ୍ଧାଙ୍କର ଅନ୍ତିମକାଳ ଉପସ୍ଥିତ ଦେଖି ତାଙ୍କୁ ଅନ୍ତର୍ଜଳି କରା ହୋଇଥିଲା ଏବଂ ଠାକୁର ଫୁଲ, ଚନ୍ଦନ ଓ ତୁଳସୀ ନେଇ ତାଙ୍କର ପାଦପଦ୍ମରେ ଅଞ୍ଜଳି ପ୍ରଦାନ କରିଥିଲେ । ଚିତାଗ୍ନି ପ୍ରସ୍ତୁତ ହେଲାପରେ ଠାକୁରଙ୍କର ପୁତୁରା ରାମଲାଲ ମୁଖାଗ୍ନି ଦେଇ ବୃଦ୍ଧା-ଙ୍କର ଦେହସତ୍କାର କରିଥିଲେ, କାରଣ ସନ୍ନ୍ୟାସୀ ପକ୍ଷରେ ମୁଖାଗ୍ନି

ଦେବା ଉଚିତ ନୁହେଁ । ତା’ପରେ ଅଶୌଚ ଉତ୍ତୀର୍ଣ୍ଣ ହୁଅନ୍ତେ ଠାକୁରଙ୍କ ନିର୍ଦ୍ଦେଶରେ ରାମଲାଲ ହିଁ ବୃଷୋତ୍ସର୍ଗ କରି ଠାକୁରଙ୍କ ଜନନୀଙ୍କର ଶ୍ରାଦ୍ଧ-କ୍ରିୟା ଯଥାବିଧି ସମ୍ପାଦନ କରାଇଥିଲେ ।

ଏହି ସମୟରେ ଶମ୍ଭୁଚରଣ ମଲ୍ଲିକ ମଧ୍ୟ ମୃତ୍ୟୁମୁଖରେ ପଡ଼ିଲେ । ପୀଡ଼ିତାବସ୍ଥାରେ ଠାକୁର ତାଙ୍କୁ ଦିନେ ଦେଖିବାକୁ ଯାଇଥିଲେ ଏବଂ ସେଠାରୁ ଫେରିଆସି କହିଥିଲେ, “ଶମ୍ଭୁର ପ୍ରଦୀପରେ ତେଲ ନାହିଁ ।” ମୃତ୍ୟୁର କେତେକ ଦିନ ପୂର୍ବରୁ ଶମ୍ଭୁଚରଣ ହୃଦୟଙ୍କ ଆଗରେ ହୃଷ୍ଟ ଚିତ୍ତରେ କହିଥିଲେ, “ମରଣ ପାଇଁ ମୋର କିଛିମାତ୍ର ଚିନ୍ତା ନାହିଁ । ମୁଁ ଗଣ୍ଠିଲିପୁଣ୍ଟି ବାନ୍ଧି ପ୍ରସ୍ତୁତ ହୋଇ ବସିଛି ।” ଶମ୍ଭୁବାବୁଙ୍କ ସହିତ ପରିଚୟ ହେବାର ବହୁପୂର୍ବରୁ ଠାକୁର ଯୋଗାରୂଢ଼ ଅବସ୍ଥାରେ ଦେଖିଥିଲେ ଯେ ଶ୍ରୀଶ୍ରୀଜଗଦମ୍ବା ଶମ୍ଭୁଙ୍କୁ ତାଙ୍କର ଦ୍ୱିତୀୟ ରସଦ୍‌ଦାର ରୂପେ ମନୋନୀତ କରିଛନ୍ତି ଏବଂ ଦେଖିବାମାତ୍ରେ ସେ ତାଙ୍କୁ ଉକ୍ତ ବ୍ୟକ୍ତି ବୋଲି ଚିହ୍ନି ନେଇଥିଲେ ।

କ୍ୟାପ୍‌ଟେନ୍ ବିଶ୍ୱନାଥ ଉପାଧ୍ୟାୟ ନେପାଳ ରାଜାଙ୍କ ଓକିଲ ରାଜ-ପ୍ରତିନିଧି । ଠାକୁର ତାଙ୍କୁ କାପ୍ତେନ୍ ବୋଲି ସମ୍ବୋଧନ କରୁଥିଲେ । ବିଶ୍ୱନାଥ ଥିଲେ ଯେପରି ବିଦ୍ୱାନ, ସେହିପରି ଭକ୍ତିମାନ । ବେଦ, ବେଦାନ୍ତ, ଶ୍ରୀମଦ୍ଭାଗବତ, ଗୀତା, ଅଧ୍ୟାତ୍ମ ରାମାୟଣ ଏସବୁ ଧର୍ମଗ୍ରନ୍ଥ ତାଙ୍କର କଣ୍ଠସ୍ଥ ଥିଲା । ପ୍ରତିଦିନ ଭକ୍ତିଭରେ ଓ ତନ୍ମୟଚିତ୍ତରେ ସେ ତାଙ୍କ ଇଷ୍ଟ-ଦେବତାଙ୍କର ଅର୍ଚ୍ଚନା କରୁଥିଲେ । ଦିନେ ସେ ସ୍ୱପ୍ନରେ ଦେଖିଲେ ଯେ କେହି ଜଣେ ଜ୍ୟୋତିର୍ମୟ ଦିବ୍ୟପୁରୁଷ ତାଙ୍କୁ ଆଧ୍ୟାତ୍ମିକ ରାଜ୍ୟର ଶ୍ରେଷ୍ଠ ଜ୍ଞାନ-ସମ୍ପଦ ଗ୍ରହଣ କରିବା ଲାଗି ଆହ୍ୱାନ କରୁଅଛନ୍ତି । ତା’ପରେ ସେ ଯେତେବେଳେ ପ୍ରଥମ ଥର ଦକ୍ଷିଣେଶ୍ୱରକୁ ଆଗମନ କରି ଠାକୁରଙ୍କର ଦର୍ଶନ ଲାଭ କଲେ ଏବଂ ଦେଖିଲେ ଯେ ସେହି ସ୍ୱପ୍ନଦୃଷ୍ଟ ଦିବ୍ୟପୁରୁଷ ହେଉଛନ୍ତି ସ୍ୱୟଂ ଶ୍ରୀରାମକୃଷ୍ଣ ପରମହଂସଦେବ, ସେତେବେଳେ ତାଙ୍କର ବିସ୍ମୟ ଓ ପୁଲକର ସୀମା ରହିଲା ନାହିଁ । ସେହିଦିନଠାରୁ ସେ ଠାକୁରଙ୍କ ପ୍ରତି ବିଶେଷ ଅନୁରକ୍ତ ହୋଇ ପଡ଼ିଲେ ଏବଂ ଠାକୁରଙ୍କୁ ଦର୍ଶନ କରିବା ଲାଗି ପ୍ରାୟ ଦକ୍ଷିଣେଶ୍ୱର ଆସୁଥିଲେ । କେବେକେବେ ଠାକୁରଙ୍କ ନିଜ

ଠାକୁରଙ୍କୁ ନେଇ ଅତିଶୟ ଶ୍ରଦ୍ଧାଭକ୍ତି ସହକାରେ ନାନାବିଧ ଉପାଦେୟ ଖାଦ୍ୟଦ୍ରବ୍ୟ ତିଆରି କରି ଭୋଜନ କରାଉଥିଲେ । ବିଶ୍ୱନାଥ ଠାକୁରଙ୍କୁ କେବେକେବେ ଜନସାଧାରଣଙ୍କ ନିକଟରେ ଅତ୍ୟୁଚ୍ଚ ଭାବଭୂମିରେ ଅବସ୍ଥାନ କରିବାର ଦେଖିଥିଲେ । ସେ ଠାକୁରଙ୍କର ଏହି ଆଧ୍ୟାତ୍ମିକ ଅବସ୍ଥା ବେଶ୍ ବୁଝିପାରିଥିଲେ ଏବଂ ସର୍ବାନ୍ତଃକରଣରେ ତାଙ୍କୁ ହିଁ ଗୁରୁରୂପେ ବରଣ କରି ନେଇଥିଲେ । ପରେ ବିଶ୍ୱନାଥ ତାଙ୍କର ଜଣେ ବନ୍ଧୁଙ୍କୁ କହିଥିଲେ, "ମୁଁ ବେଦ, ବେଦାନ୍ତାଦି ଅନେକ ଧର୍ମଗ୍ରନ୍ଥ ପାଠ କରିଛି । ବିଭିନ୍ନ ସ୍ଥାନରେ ବିଭିନ୍ନ ସାଧୁ ଓ ଭକ୍ତଙ୍କ ସହିତ ମିଳିତ ହୋଇଛି ; କିନ୍ତୁ ଶ୍ରୀରାମକୃଷ୍ଣଙ୍କ ସଂସ୍ପର୍ଶରେ ଆସି ମୋ ଅନ୍ତରର ସକଳ ବାସନା ପୂର୍ଣ୍ଣ ହୋଇଛି । ଦେବମୂର୍ତ୍ତି ଶ୍ରୀରାମକୃଷ୍ଣଙ୍କ ଜୀବନରେ ସବୁଯାକ ସତ୍ୟ ଶାସ୍ତ୍ରର ସମସ୍ତ ମର୍ମ ମୂର୍ତ୍ତି ହୋଇ-ଉଠିଛି । ମୋର ଦୃଢ଼ ବିଶ୍ୱାସ, ଦିନେ ତୁମେ ମଧ୍ୟ ମୋର ଏହି କଥାର ସତ୍ୟତା ଉପଲବ୍ଧି କରିପାରିବ ।"

ଠାକୁରଙ୍କ ମନରେ ବର୍ତ୍ତମାନ ଏକ ଅଭିନବ ବାସନା ପ୍ରବଳ ଭାବରେ ଉଦିତ ହେଲା । ସେ ଯୋଗାରୂଢ଼ାବସ୍ଥାରେ ଦିବ୍ୟଦୃଷ୍ଟିରେ ଦେଖିଥିଲେ ଯେ, ତାଙ୍କୁ ତାଙ୍କ କାର୍ଯ୍ୟରେ ସାହାଯ୍ୟ କରିବା ଲାଗି ଅନ୍ତରଙ୍ଗ ଭକ୍ତମାନେ ଆଗମନ କରିବେ । ସେହିସବୁ ଭକ୍ତମାନଙ୍କୁ ଦେଖିବା ଲାଗି ଏବଂ ସେମାନଙ୍କ ଅନ୍ତରରେ ନିଜ ଧର୍ମଶକ୍ତି ସଞ୍ଚାର କରିବା ଲାଗି ସେ ବର୍ତ୍ତମାନ ବିଶେଷ ବ୍ୟାକୁଳ ହୋଇ ଉଠିଲେ । ଠାକୁର ନିଜ ମୁହଁରେ କହିଛନ୍ତି- "ସେହି ବ୍ୟାକୁଳତାର ସୀମା ନ ଥିଲା । ଦିନ ଶେଷରେ ଯେତେବେଳେ ସନ୍ଧ୍ୟାର ସମାଗମ ହୁଏ, ସେତେବେଳେ ଧୈର୍ଯ୍ୟର ବନ୍ଧ ଦେଇ ଏହି ବ୍ୟାକୁଳତାକୁ ଆଉ ଚାପି ରଖିପାରେ ନାହିଁ । ମନେହୁଏ—ମୋର ଗୋଟିଏ ଦିନ ଚାଲିଗଲା, ଅଥଚ ସେମାନଙ୍କ ଭିତରୁ କେହି ଜଣେ ହେଲେ ସୁଦ୍ଧା ଆସିଲେ ନାହିଁ । ଯେତେବେଳେ ସନ୍ଧ୍ୟାଳତିର ଶଙ୍ଖଘଣ୍ଟାଧ୍ୱନିରେ ଦେବାଳୟ ମୁଖରିତ ହୋଇଉଠେ, ସେତେବେଳେ ବାବୁମାନଙ୍କ କୋଠିର ଉପର ଛାତକୁ ଉଠି ଯନ୍ତ୍ରଣାରେ ଅସ୍ଥିର ହୋଇ କ୍ରନ୍ଦନ କରିକରି ଉଚ୍ଚ ସ୍ୱରରେ ଚିତ୍କାର କରି ଡାକେ—'ତୁମେ ସବୁ କିଏ କୁଆଡ଼େ ଅଛ, ଆସରେ ! ତୁମ-

ମାନଙ୍କୁ ନ ଦେଖି ଆଉ ରହିପାରୁନାହିଁ । ମୋର ଦେହ ଚତ୍କାରରେ ଗଗନ-ପବନ ପୂର୍ଣ୍ଣ ହୋଇଯାଏ । ମାଆ ତା'ର ସନ୍ତାନକୁ ଦେଖିବା ଲାଗି ଏହି ପ୍ରକାର ବ୍ୟାକୁଳତା ଅନୁଭବ କରେ କି ନା ସନ୍ଦେହ । ସଖା ସଖା ସହିତ ଏବଂ ପ୍ରଣୟୀଯୁଗଳ ପରସ୍ପର ସହିତ ମିଳନ ଲାଗି କେବେ ଏପରି କରନ୍ତି ବୋଲି ଶୁଣିନାହିଁ । ବ୍ୟାକୁଳତାରେ ପ୍ରାଣ ଅତ୍ୟନ୍ତ ବ୍ୟାକୁଳ ହୋଇ ଉଠୁଥିଲା । ଏହିପରି ହେବାର କିଛିଦିନ ପରେ ଭକ୍ତମାନେ ଗୋଟିଗୋଟି ହୋଇ ଆସି ଏଠାରେ ଜୁଟିଲେ ।''

# ଅଷ୍ଟାଦଶ ଅଧ୍ୟାୟ

# କେଶବ ଓ ବିଦ୍ୟାସାଗରଙ୍କ ସଙ୍ଗରେ

ଠାକୁରଙ୍କର ମାତୃବିୟୋଗ ହେବାର ବର୍ଷକ ପୂର୍ବେ ଶ୍ରୀଜଗଦମ୍ବାଙ୍କ ଇଚ୍ଛାରୁ ତାଙ୍କ ଜୀବନରେ ଆଉ ଗୋଟିଏ ବିଶେଷ ଘଟଣା ଘଟିଗଲା । ୧୮୭୫ ମସୀହା ମାର୍ଚ୍ଚମାସ । ଠାକୁରଙ୍କ ପ୍ରାଣରେ ଭାରତବର୍ଷୀୟ ବ୍ରାହ୍ମ-ସମାଜର ନେତା ଶ୍ରୀଯୁକ୍ତ କେଶବଚନ୍ଦ୍ର ସେନ ମହାଶୟଙ୍କୁ ଦେଖିବାର ବାସନା ଜାଗ୍ରତ ହେଲା । ଶ୍ରୀଯୁକ୍ତ କେଶବ ସେତେବେଳକୁ କଲିକତାର କେତେକ ମାଇଲ ଉତ୍ତରରେ ବେଲଘରିଆ ନାମକ ସ୍ଥାନରେ ଶ୍ରୀଯୁକ୍ତ ଜୟଗୋପାଳ ସେନ ମହାଶୟଙ୍କ ଉଦ୍ୟାନଗୃହରେ ଶିଷ୍ୟମାନଙ୍କ ସହ ସାଧନ ଭଜନରେ ନିଯୁକ୍ତ ଥିଲେ । ସେଦିନ ପ୍ରଥମ କରି ହୃଦୟଙ୍କୁ ସାଙ୍ଗରେ ଧରି ଠାକୁର ସେହି ଉଦ୍ୟାନବାଟିକାରେ ଉପସ୍ଥିତ ହେଲେ । ଗାଡ଼ିରୁ ଓହ୍ଲାଇ ହୃଦୟ ଦେଖିଲେ ଯେ ଶ୍ରୀଯୁକ୍ତ କେଶବ ଅନୁଚରବର୍ଗଙ୍କ ସହିତ ଉଦ୍ୟାନ ମଧ୍ୟରେ ଥିବା ପୁଷ୍କରିଣୀର ବନ୍ଧାଘାଟ ଉପରେ ବସିଛନ୍ତି । ସେଠାକୁ ଯାଇ ହୃଦୟ ତାଙ୍କୁ ନିବେଦନ ଜଣାଇଲେ, "ମୋର ମାମୁଁ ହରିକଥା ଓ ହରିଗୁଣଗାନ ଶୁଣିବାକୁ ଭାରି ଭଲ ପାଆନ୍ତି । ଆପଣଙ୍କ ସୁନାମ ଶୁଣି ଆପଣଙ୍କ ମୁହଁରୁ ଈଶ୍ୱରଙ୍କର ଗୁଣାନୁକୀର୍ତ୍ତନ ଶୁଣିବା ଲାଗି ସେ ଏଠାକୁ ଆସିଛନ୍ତି । ଆପଣଙ୍କର ଆଦେଶ ହେଲେ ତାଙ୍କୁ ଏଠାକୁ ନେଇ ଆସିବି ।"

କେଶବ ସେନ ଏଥିପାଇଁ ସମ୍ମତି ଦେଲେ । ହୃଦୟ ଗାଡ଼ିରୁ ଠାକୁରଙ୍କୁ ଡାକି ଆଣିଲେ । ସେଠାରେ ପହଞ୍ଚି ଠାକୁର କହିଲେ, "ବାବୁ ! ତୁମେ କୁଆଡ଼େ ଈଶ୍ୱରଙ୍କୁ ଦର୍ଶନ କରିଛ ! ଏହି ଦର୍ଶନ କିଭଳି ତାହା ଜାଣିବାକୁ ଇଚ୍ଛା ହେଉଛି । ସେଥିଲାଗି ତମ ପାଖକୁ ଆସିଛି ।"

ଏହି ଭାବରେ କ୍ରମେ ସତ୍ପ୍ରସଙ୍ଗ ଆରମ୍ଭ ହେଲା । କିଛିକ୍ଷଣ ପରେ ଠାକୁର ଗୋଟିଏ ରାମପ୍ରସାଦୀ ଶ୍ୟାମାଭଜନ ଗାଇଲେ । ସଙ୍ଗୀତଟି ହେଲା 'କେ ଜାନେ ମନ୍ କାଲୀ କେମନ ।' ଏତକ ଗାଉଗାଉ ଠାକୁରଙ୍କର ଭାବ-ସମାଧି ହୋଇଗଲା । ଠାକୁରଙ୍କର ବାହ୍ୟ ଚେତନା ଫେରାଇ ଆଣିବା ଲାଗି ହୃଦୟ ତାଙ୍କର କାନରେ ପ୍ରଣବମନ୍ତ୍ର ଉଚ୍ଚାରଣ କରି ଶୁଣାଇଲେ । ତାହା ଶୁଣୁଶୁଣୁ ଠାକୁରଙ୍କର ମୁଖମଣ୍ଡଳ ମଧୁର ହାସ୍ୟରେ ଉଜ୍ଜ୍ୱଳ ହୋଇ ଉଠିଲା । ଏହି ଭାବରେ ଅର୍ଦ୍ଧବାହ୍ୟଦଶାପ୍ରାପ୍ତ ହୋଇ ସେ ଗମ୍ଭୀର ଆଧ୍ୟାତ୍ମିକ ବିଷୟଗୁଡ଼ିକୁ ସାମାନ୍ୟ ସାମାନ୍ୟ ଦୃଷ୍ଟାନ୍ତ ସାହାଯ୍ୟରେ ଏପରି ସରଳ ଭାବରେ ବୁଝାଇବାକୁ ଲାଗିଲେ ଯେ ସମବେତ ସମସ୍ତେ ମୁଗ୍ଧ ହୋଇ ତାଙ୍କର ମୁହଁକୁ ଚାହିଁ ବସି ରହିଲେ । ଠାକୁର ସେମାନଙ୍କର ଏହି ଭାବ ଦେଖି କହିଲେ, "ଗୋରୁ ଗୋଠକୁ ଅନ୍ୟ କୌଣସି ପଶୁ ପଶି ଆସିଲେ ସେମାନେ ତାକୁ ଶିଙ୍ଗ ହଲାଇ ତଡ଼ିଦିଅନ୍ତି । କିନ୍ତୁ ଦଳର ଗୋଟିଏ ଗୋରୁ ଆସିଲେ ତା'ର ଦେହ ଚାଟାଚାଟି କରନ୍ତି । ଆମର ଆଜି ସେହିପରି ହେଲା ।" ତା'ପରେ କେଶବଙ୍କୁ ସମ୍ବୋଧନ କରି ଠାକୁର କହିଲେ, "ତୁମର ଲାଞ୍ଜ ଖସିଗଲାଣି ।" ଏହି କଥାରେ ଅର୍ଥ ବୁଝାଇବାକୁ ଯାଇ ଠାକୁର ପୁଣି କହିଲେ—"ଦେଖ, ବେଙ୍ଗଛୁଆର ଯେତେଦିନ ଯାଏ ଲାଞ୍ଜ ଥାଏ, ସେତେଦିନ ଯାଏ ସେ ପାଣିରେ ଥାଏ । ସ୍ଥଳଭାଗକୁ ଉଠିପାରେ ନାହିଁ । କିନ୍ତୁ ଲାଞ୍ଜ ଯେତେବେଳେ ଖସିଯାଏ, ସେତେବେଳେ ସେ ପାଣି ଭିତରେ ବି ରହିପାରେ, ସ୍ଥଳଭାଗରେ ବି ବିଚରଣ କରିପାରେ—ସେହିପରି ମଣିଷର ଯେତେଦିନ ଯାଏ ଅବିଦ୍ୟାରୂପକ ଲାଞ୍ଜ ଥାଏ, ସେତେଦିନ ସେ ସଂସାର-ଜଳରେ କେବଳ ରହିପାରେ । ଲାଞ୍ଜ ଖସିଗଲେ ସଂସାର ଓ ସଚ୍ଚିଦାନନ୍ଦ ଉଭୟ ବିଷୟରେ ଇଚ୍ଛାନୁସାରେ ବିଚରଣ କରିପାରେ । କେଶବ ! ତୁମର ବର୍ତ୍ତମାନ ଏହି ପ୍ରକାର ଅବସ୍ଥା ଆସିଗଲାଣି । ଏ ଅବସ୍ଥାରେ ଜଣେ ସଂସାର ଭିତରେ ରହିପାରେ, ପୁଣି ସଚ୍ଚିଦାନନ୍ଦ ଅବସ୍ଥାକୁ ମଧ୍ୟ ଯାଇପାରେ ।" ଏହିଭଳି ନାନା ପ୍ରସଙ୍ଗ ପଡ଼ିଲା । କିଛି ସମୟ ପରେ ଠାକୁର ସେଦିନ ଦକ୍ଷିଣେଶ୍ୱରକୁ ଫେରି ଆସିଲେ ।

ଠାକୁରଙ୍କର ଦର୍ଶନ ପାଇବା ପରେ କେଶବ ସେନଙ୍କ ମନ ତାଙ୍କ ପ୍ରତି ଏତେ ଦୂର ଆକୃଷ୍ଟ ହୋଇ ପଡ଼ିଲା ଯେ ସେହିଦିନଠାରୁ ସେ ପ୍ରାୟ ଠାକୁରଙ୍କ ପୁଣ୍ୟ ଦର୍ଶନ ପାଇଁ ଦକ୍ଷିଣେଶ୍ୱରକୁ ଚାଲି ଆସୁଥିଲେ । କେବେ କେବେ ଠାକୁରଙ୍କୁ ତାଙ୍କର କଲିକତାସ୍ଥ 'କମଳ କୁଟୀର' ନାମକ ଘରକୁ ମଧ୍ୟ ନେଇ ଯାଉଥିଲେ । ଯେଉଁ ଭାବରେ ହେଉ ତାଙ୍କର ଦିବ୍ୟସଙ୍ଗଲାଭ ଦ୍ୱାରା ନିଜକୁ ସୌଭାଗ୍ୟବାନ ମନେ କରୁଥିଲେ ।

ଠାକୁର ଓ କେଶବଙ୍କ ସମ୍ବନ୍ଧ କ୍ରମେ ଏପରି ଗଭୀର ଭାବ ଧାରଣ କଲା ଯେ ପରସ୍ପର ପରସ୍ପରକୁ ଅଳ୍ପଦିନ ପାଇଁ ନ ଦେଖିଲେ ଉଭୟେ ବିଶେଷ ଅଭାବ ବୋଧ କରୁଥିଲେ । ସେତେବେଳେ ଠାକୁର କଲିକତାରେ ତାଙ୍କ ନିକଟରେ ଉପସ୍ଥିତ ହେଉଥିଲେ ଅଥବା କେଶବ ସେନ ଦକ୍ଷିଣେଶ୍ୱରକୁ ଆସୁଥିଲେ । ତା'ଛଡ଼ା ବ୍ରାହ୍ମ-ସମାଜର ଉତ୍ସବ ସମୟରେ ପ୍ରତିବର୍ଷ ଠାକୁରଙ୍କ ନିକଟକୁ ଆସି କିମ୍ବା ଠାକୁରଙ୍କୁ ଦକ୍ଷିଣେଶ୍ୱରରୁ ନେଇଯାଇ ତାଙ୍କ ସଙ୍ଗେ ଈଶ୍ୱରୀୟ ପ୍ରସଙ୍ଗ ଆଲୋଚନା କରୁଥିଲେ । ଠାକୁରଙ୍କ ସଙ୍ଗେ ଆଲୋଚନା ଓ ତାଙ୍କ ମୁଖରୁ ତତ୍ତ୍ୱ-ଉପଦେଶ ଶ୍ରବଣ ସେହି ଉତ୍ସବର ଗୋଟିଏ ବିଶେଷ ଅଙ୍ଗ ରୂପେ ମଧ୍ୟ ପରିଗଣିତ ହେଉଥିଲା । ପୁଣି କେବେ କେବେ କେଶବ ଜାହାଜରେ ବସି ଗଙ୍ଗାବକ୍ଷରେ କୀର୍ତ୍ତନ କରି କରି ସଦଳବଳେ ଦକ୍ଷିଣେଶ୍ୱରକୁ ଆସି ଠାକୁରଙ୍କ ସଙ୍ଗେ ମିଳିତ ହେଉଥିଲେ । କେତେବେଳେ ପୁଣି ଠାକୁରଙ୍କୁ ଜାହାଜରେ ବସାଇ ତାଙ୍କର ଅମୃତମୟ ଉପଦେଶ ଶୁଣିଶୁଣି ଗଙ୍ଗାବକ୍ଷରେ ବିଚରଣ କରୁଥିଲେ ।

ଏକଥା ନିଶ୍ଚିତ ଯେ କେଶବ ସେନଙ୍କ ସହିତ ଠାକୁରଙ୍କର ମିଳନ ଘଟିବାର ପରେ ପରେ ହିଁ କଲିକତାର ଜନସାଧାରଣ ଠାକୁରଙ୍କ କଥା ବିଶେଷ ଭାବରେ ଜାଣି ପାରିଥିଲେ । ଠାକୁରଙ୍କର ପୁଣ୍ୟ ଦର୍ଶନ ଓ ଅମୃତ-ନିସ୍ୟନ୍ଦିନୀ ବାଣୀରେ କେଶବଚନ୍ଦ୍ର ଜୀବନପଥରେ ଯେତେ ଯେତେ ନୂତନ ଆଲୋକ ଦେଖୁଥିଲେ, ସେତିକି ସେତିକି ଏହି ବିଷୟ ମୁକ୍ତକଣ୍ଠରେ ଜନସାଧାରଣଙ୍କୁ ଜଣାଇ, ସେମାନେ ସମସ୍ତେ ଯେପରି ତାଙ୍କ ଭକ୍ତି ତୃପ୍ତି ଓ ଆନନ୍ଦଲାଭ କରିବେ, ସେଥିଲାଗି ଉତ୍ସାହର ସହିତ ଆହ୍ୱାନ

କରୁଥିଲେ । ସେଥିପାଇଁ ସେହିଦିନଠାରୁ ବ୍ରାହ୍ମସମାଜର ଇଂରାଜୀ ଓ ବଙ୍ଗଳା ଯାବତୀୟ ପତ୍ରିକା ଯଥା 'ସୁଲଭ ସମାଚାର', 'ସନ୍‌ଡେ ମିରର', 'ଥେଇଷ୍ଟିକ୍ କ୍ୱାର୍ଟର୍ଲି ରିଭିଉ' ପ୍ରଭୃତି ଠାକୁରଙ୍କର ପୂତ ଚରିତ, ସାରଗର୍ଭ ବାଣୀ ଓ ଧର୍ମବିଷୟକ ମତାମତର ଆଲୋଚନାରେ ପୂର୍ଣ୍ଣ ହୋଇଯାଉଥିଲା । ବକ୍ତୃତା ଓ ଏକାନ୍ତ ଉପାସନା ପରେ ବେଦୀ ଉପରୁ ବ୍ରାହ୍ମସଙ୍ଘକୁ ସମ୍ବୋଧନପୂର୍ବକ ଉପଦେଶ ପ୍ରଦାନ କଲାବେଳେ ମଧ୍ୟ କେଶବ ପ୍ରମୁଖ ବ୍ରାହ୍ମନେତାମାନେ ଅନେକ ସମୟରେ ଠାକୁରଙ୍କ ବାଣୀଗୁଡ଼ିକୁ ଆଲୋଚନା କରୁଥିଲେ । ବ୍ରାହ୍ମ-ନେତାମାନଙ୍କର ଧର୍ମପିପାସା ଓ ଈଶ୍ୱରାନୁରାଗ ଦର୍ଶନରେ ଆନନ୍ଦିତ ହୋଇ ଯାହାଦ୍ୱାରା ସେମାନେ ସାଧନସମୁଦ୍ରରେ ଏକାବେଳକେ ବୁଡ଼ି ଯାଇ ଈଶ୍ୱରଙ୍କର ପ୍ରତ୍ୟକ୍ଷ ଦର୍ଶନରୂପକ ରତ୍ନଲାଭରେ କୃତାର୍ଥ ହୋଇପାରିବେ, ସେଦିଗରେ ପଥ ଦେଖାଇବା ପାଇଁ ସେତେବେଳେ ଠାକୁର ବିଶେଷଭାବରେ ଯତ୍ନବାନ ହୋଇପଡ଼ିଥିଲେ ।

ଏତଦ୍‌ବ୍ୟତୀତ ଠାକୁରଙ୍କ ସମ୍ପର୍କରେ ଆସି କେଶବ ପ୍ରମୁଖ ବ୍ରାହ୍ମଗଣ ଆଉ ଗୋଟିଏ ବିଷୟ ବୁଝିପାରିଥିଲେ । ପାଶ୍ଚାତ୍ୟ ଧର୍ମପ୍ରଚାରକମାନଙ୍କ ମୁଖରୁ ଏବଂ ଇଂରାଜୀ ପୁସ୍ତକାଦିରୁ ସେମାନେ ଶିକ୍ଷା କରିଥିଲେ ଯେ ଈଶ୍ୱର କଦାପି ସାକାର ହୋଇପାରିବେ ନାହିଁ । ତେଣୁ କୌଣସି ସାକାର ମୂର୍ତ୍ତିରେ ତାଙ୍କର ଅଧିଷ୍ଠାନ ସ୍ୱୀକାର କରି ପୂଜା ଉପାସନାଦି କଲେ ମହା ପାପ ହୁଏ । କିନ୍ତୁ "ନିରାକାର ଜଳ ଜମି ଜମି ସାକାର ହେବା"— "ଚୋଳର ଆଉ ଦେଖି ଯଥାର୍ଥ ଆତ ମନେ ପଡ଼ିବା ଭଳି ସାକାର ମୂର୍ତ୍ତି ଅବଲମ୍ବନ କରି ଈଶ୍ୱରଙ୍କର ଯଥାର୍ଥ ସ୍ୱରୂପର ପ୍ରତ୍ୟକ୍ଷ ଜ୍ଞାନରେ ପହଞ୍ଚିବା ଇତ୍ୟାଦି ପ୍ରତୀକ-ଉପାସନାର କଥା ଠାକୁରଙ୍କ ଶ୍ରୀମୁଖରୁ ଶୁଣି ସେମାନେ ବୁଝିଥିଲେ ଯେ 'ପୌତ୍ତଳିକତା' ବୋଲି ନିର୍ଦ୍ଦେଶ କରି ସେମାନେ ଯେଉଁ କାର୍ଯ୍ୟଟିକୁ ଏତେଦିନ ନିତାନ୍ତ ଯୁକ୍ତିହୀନ ଓ ହେୟ ଭାବି ଆସିଛନ୍ତି, ତତ୍ ସମ୍ବନ୍ଧରେ କହିବା ପାଇଁ ଓ ଚିନ୍ତା କରିବା ପାଇଁ ଅନେକ ବିଷୟ ରହିଛି । ଏହା ବ୍ୟତୀତ କେଶବ ପ୍ରମୁଖ ବ୍ରାହ୍ମମାନଙ୍କ ସମ୍ମୁଖରେ ଯେଉଁ ଦିନ ଠାକୁର "ଅଗ୍ନି ଓ ତା'ର ଦାହିକା ଶକ୍ତି ଭଳି ବ୍ରହ୍ମ ଓ ବ୍ରହ୍ମଶକ୍ତିର ପ୍ରକାଶ ବିରାଟ

ଜଗତ ଅଭିନ୍ନ" ବୋଲି ପ୍ରତିପାଦନ କଲେ, ସେଦିନ ହେଁ ସେମାନେ ସାକାର ଉପାସନାକୁ ନୂତନ ଆଲୋକରେ ଦେଖିପାରିଥିଲେ, ଏଥିରେ ତିଳେମାତ୍ର ସନ୍ଦେହ ନାହିଁ । ସେମାନେ ସେଦିନ ନିଃସଂଶୟରେ ବୁଝିଥିଲେ ଯେ କେବଳ ମାତ୍ର ନିରାକାର ସଗୁଣବ୍ରହ୍ମରୂପେ ନିର୍ଦ୍ଦେଶ କଲେ ଈଶ୍ୱରଙ୍କର ଯଥାର୍ଥ ସ୍ୱରୂପର ଏକାଂଶ ମାତ୍ର ହିଁ ନିର୍ଦ୍ଦିଷ୍ଟ ହୋଇ ରହେ । ଠାକୁରଙ୍କ ସଂସ୍ପର୍ଶରେ ଆସି ସେମାନେ ଆହୁରି ମଧ୍ୟ ବୁଝିଥିଲେ ଯେ ଈଶ୍ୱର-ସ୍ୱରୂପଙ୍କୁ କେବଳ ମାତ୍ର ସାକାର ବୋଲି ନିର୍ଦ୍ଦିଷ୍ଟ କରିବା ଯେପରି ଦୋଷାବହ, ତାଙ୍କୁ କେବଳ ମାତ୍ର ନିରାକାର ନିର୍ଗୁଣ ବୋଲି ନିର୍ଦ୍ଦେଶ କରିବା ମଧ୍ୟ ସେହିପରି ଦୋଷଯୁକ୍ତ । କାରଣ, ଈଶ୍ୱର ସାକାର-ଜଗତରୂପେ ବ୍ୟକ୍ତ ହୋଇ ରହିଛନ୍ତି, ନିରାକାର ସଗୁଣବ୍ରହ୍ମରୂପେ ଜଗତର ନିୟାମକ ହୋଇ ରହିଛନ୍ତି, ପୁନଶ୍ଚ ସର୍ବଗୁଣର ଅତୀତ ହୋଇ ଈଶ୍ୱର ଜୀବ-ଜଗତ୍ ପ୍ରଭୃତି ଯାବତୀୟ ବ୍ୟକ୍ତ ଓ ବସ୍ତୁର ନାମରୂପଯୁକ୍ତ ପ୍ରକାଶର ଭିତ୍ତିସ୍ୱରୂପ ହୋଇ ସର୍ବଦା ଅବସ୍ଥାନ କରୁଛନ୍ତି । "ଈଶ୍ୱର-ସ୍ୱରୂପର ଇତି କରିହେବ ନାହିଁ । ସେ ସାକାର, ସେ ନିରାକାର ଏବଂ ତା'ଛଡ଼ା ସେ ଆଉ ଯେ ସବୁ କ'ଣ କ'ଣ, ସେକଥା କିଏ ଜାଣିପାରେ ?" ଠାକୁରଙ୍କର ଏହି ସାମାନ୍ୟ ଉକ୍ତି ଭିତରେ ଏହିଭଳି ଗମ୍ଭୀର ଅର୍ଥ ଦେଖିବାକୁ ପାଇ କେଶବ ପ୍ରମୁଖ ସମସ୍ତେ ସେଦିନ ସ୍ତମ୍ଭିତ ହୋଇ ଯାଇଥିଲେ ।

ଆଚାର୍ଯ୍ୟ ପ୍ରତାପଚନ୍ଦ୍ର ମଜୁମଦାର ଥରେ ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ସଙ୍ଗଲାଭ କରିଥିଲେ । ସମାଜରେ ଆଧ୍ୟାତ୍ମିକ ଭାବର ପରିଣତି କିପରି କେତେଦୂର ହୋଇଅଛି—ଏ ସମ୍ବନ୍ଧରେ ପଚାରିବାରୁ ସେ କହିଥିଲେ—"ଏହାଙ୍କୁ (ଠାକୁରଙ୍କୁ) ଦେଖିବା ଆଗରୁ ଆମେ ଧର୍ମ କାହାକୁ କୁହାଯାଏ କ'ଣ ବୁଝିଥିଲୁ ? ଏହାଙ୍କୁ ଦର୍ଶନ କରିବା ପରେ ଯାଇ ବୁଝିଲୁ ଯଥାର୍ଥ ଧର୍ମ-ଜୀବନ କାହାକୁ କୁହାଯାଏ ।" ପ୍ରତାପ ମଜୁମଦାରଙ୍କ ସହିତ ସେଦିନ ନବବିଧାନ ସମାଜର ଚିରଞ୍ଜୀବ ଶର୍ମା (ତ୍ରୈଲୋକ୍ୟନାଥ ସାନ୍ୟାଲ) ଉପସ୍ଥିତ ଥିଲେ । ସେ ବ୍ରାହ୍ମ-ସଙ୍ଗୀତର ବିଶେଷ ପୁଷ୍ଟିସାଧନ କରିଥିଲେ । ଶୁଣାଯାଏ ଠାକୁରଙ୍କର ନାନାପ୍ରକାର ଦର୍ଶନ, ଭାବ ଓ ସମାଧି ପ୍ରଭୃତି ସହିତ

ପରିଚିତ ହେବା ଫଳରେ ସେ ତାଙ୍କର ଶ୍ରେଷ୍ଠ ଭାବୋଦ୍ଦୀପକ ପଦଗୁଡ଼ିକ ରଚନାରେ ସମର୍ଥ ହୋଇପାରିଥିଲେ । "ନିବିଡ଼ ଅନ୍ଧାରେ ମା' ତୋର ଚମକେ ଅରୂପ ରାଶି"—"ଗଭୀର ସମାଧି-ସିନ୍ଧୁ ଅନନ୍ତ ଅପାର"—"ଚିଦାକାଶେ ହଲ ପୂର୍ଣ୍ଣପ୍ରେମଚନ୍ଦ୍ରୋଦୟ ହେ"—"ଚିଦାନନ୍ଦ-ସିନ୍ଧୁନୀରେ ପ୍ରେମାନନ୍ଦେର ଲହରୀ"—"ଆମାୟ ଦେ'ମା ପାଗଲ କରେ" ପ୍ରଭୃତି ଗଭୀର ମାର୍ମିକ ଭଜନଗୁଡ଼ିକ ଉପରେ ଠାକୁରଙ୍କର ପ୍ରଭାବ ନିଶ୍ଚୟ ପଡ଼ିଅଛି ଏବଂ ଭଜନଗୁଡ଼ିକ ବଙ୍ଗଦେଶର ଭକ୍ତ-ସାଧକମାନଙ୍କର ଖୁବ୍ ପ୍ରିୟ ହୋଇ ରହିଆସିଛି । ଏହିପରି ଭାବରେ ତତ୍‌କାଳୀନ ବ୍ରାହ୍ମସମାଜ ଠାକୁରଙ୍କର ଅଦୃଷ୍ଟପୂର୍ବ ଆଧ୍ୟାତ୍ମିକ ପ୍ରଭାବରେ ଅନୁପ୍ରାଣିତ ହୋଇଥିଲା ।

ଠାକୁର ଶ୍ରୀରାମକୃଷ୍ଣ ବାଲ୍ୟକାଳରୁ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କ କଥା ଶୁଣି ଆସିଥିଲେ । ତାଙ୍କୁ ଦେଖିବାପାଇଁ ଦିନେ ତାଙ୍କର ପ୍ରବଳ ଇଚ୍ଛା ଜାଗ୍ରତ ହେଲା । ୧୮୮୨ ମସିହାର କଥା । ଅଗଷ୍ଟ ମାସ ପାଞ୍ଚ ତାରିଖ ଶନିବାର ଚାରିଟାବେଳେ ଠାକୁର ବାଦୁଡ଼ବାଗାନସ୍ଥିତ ବିଦ୍ୟାସାଗରଙ୍କ ଘରକୁ ଆଗମନ କଲେ । ସଙ୍ଗରେ ଥିଲେ ମାଷ୍ଟର, ଭବନାଥ ହାଜରା ପ୍ରଭୃତି ଭକ୍ତସଙ୍ଗୀଗଣ । ବିଦ୍ୟାସାଗରଙ୍କ ସହିତ ନାନାବିଧ ଉଚ୍ଚ ଆଧ୍ୟାତ୍ମିକ ପ୍ରସଙ୍ଗର ଆଲୋଚନା ହେଲା । ବିଦ୍ୟାସାଗର ଖୁବ୍ ମୁଗ୍ଧ ହୋଇଗଲେ । କଥାପ୍ରସଙ୍ଗରେ ଠାକୁର ବିଦ୍ୟାସାଗରଙ୍କୁ ବ୍ରହ୍ମର ପ୍ରକୃତ ସ୍ୱରୂପ ସମ୍ବନ୍ଧରେ କହିଥିଲେ—"ଏହି ଜଗତରେ ବିଦ୍ୟା ମାୟା ସହିତ ଅବିଦ୍ୟା ମାୟା ମଧ୍ୟ ରହିଛି । ଜ୍ଞାନଭକ୍ତି ରହିଛି, ପୁଣି କାମିନୀ କାଞ୍ଚନ ମଧ୍ୟ ରହିଛି । ସତ୍ ରହିଛି, ଅସତ୍ ବି ରହିଛି । ଭଲ ରହିଛି, ପୁଣି ମନ୍ଦ ମଧ୍ୟ ରହିଛି । କିନ୍ତୁ ବ୍ରହ୍ମ ନିର୍ଲିପ୍ତ । ଭଲ, ମନ୍ଦ, ସତ୍, ଅସତ୍ ଯାହାକିଛି ସବୁ ଜୀବ ପକ୍ଷରେ—ତା'ର (ବ୍ରହ୍ମର) ଏଥିରେ କିଛି ହୁଏ ନାହିଁ । ଯେପରି ପ୍ରଦୀପ ସମ୍ମୁଖରେ କେହି ଭାଗବତ ପଢ଼ୁଛି—ଆଉ କିଏ ବା ଜାଲ୍ କରୁଛି । ପ୍ରଦୀପ କିନ୍ତୁ ନିର୍ଲିପ୍ତ । ସୂର୍ଯ୍ୟ ଶିଷ୍ଟ ଉପରେ ଆଲୁଅ ଦେଉଛନ୍ତି, ପୁଣି ଦୁଷ୍ଟ ଉପରେ ମଧ୍ୟ ଆଲୁଅ ଦେଉଛନ୍ତି । ଯଦି କହ—ତା' ହେଲେ ଏହିସବୁ ଦୁଃଖ, ପାପ, ଅଶାନ୍ତି, ପ୍ରଭୃତି କଅଣ ? ତା'ର ଉତ୍ତର ହେଉଛି—ଏସବୁ ଜୀବ ପକ୍ଷରେ । ବ୍ରହ୍ମ କିନ୍ତୁ ନିର୍ଲିପ୍ତ । ସାପ ଭିତରେ

ବିଷ ରହିଛି—ଅନ୍ୟକୁ କାମୁଡ଼ିଲେ ସେ ମରୁଛି, କିନ୍ତୁ ସାପର କିଛି ହେଉ-
ନାହିଁ । ବ୍ରହ୍ମ ଯେ କ'ଣ, ତାହା ମୁହଁରେ କୁହାଯାଇପାରେ ନାହିଁ । ସବୁ
ଜିନିଷ ଉଚ୍ଛିଷ୍ଟ ହୋଇଯାଇଛି । ବେଦ, ପୁରାଣ, ତନ୍ତ୍ର, ଷଡ଼୍‌ଦର୍ଶନ, ସବୁ
ଉଚ୍ଛିଷ୍ଟ ହୋଇ ଯାଇଛି । ସବୁତକ ମୁଖଦ୍ୱାରା ପଢ଼ା ହୋଇଛି, ମୁଖରେ
ଉଚ୍ଚାରିତ ହୋଇଯାଇଛି, ତେଣୁ ଅଇଁଠା ହୋଇଯାଇଛି; କିନ୍ତୁ ଗୋଟିଏ
ଜିନିଷ କେବଳ ଅଇଁଠା ହୋଇନାହିଁ । ସେ ଜିନିଷଟି ହେଲା ବ୍ରହ୍ମ । ବ୍ରହ୍ମ
ଯେ କ'ଣ, ଆଜି ପର୍ଯ୍ୟନ୍ତ କେହି ମୁହଁରେ ବର୍ଣ୍ଣନା କରିପାରି ନାହିଁ ।''

ସମସ୍ତେ ନିଶ୍ଚଳ ଅବାକ୍ ହୋଇ ଏହିସବୁ କଥା ଶୁଣୁଥାଆନ୍ତି ।
ଯେପରିକି ସାକ୍ଷାତ୍ ବାଗ୍‌ଦେବୀ ଶ୍ରୀରାମକୃଷ୍ଣଙ୍କ ଜିହ୍ୱାରେ ଅଧିଷ୍ଠାତ୍ରୀ ହୋଇ,
ବିଦ୍ୟାସାଗରଙ୍କୁ ଉପଲକ୍ଷ୍ୟ କରି ଜୀବର ମଙ୍ଗଳ ପାଇଁ ଏହିସବୁ କଥା
କହୁଛନ୍ତି ।

ଏହିପରି କିଛିସମୟ କଥୋପକଥନ କରି ଠାକୁର ଗାତ୍ରୋତ୍‌ଥାନ
କଲେ । ସେତେବେଳକୁ ରାତି ନଅଟା ବାଜିଲାଣି । ଠାକୁରଙ୍କୁ ଗାଡ଼ିରେ
ଉଠାଇ ଦେବା ଲାଗି ବିଦ୍ୟାସାଗର ଆତ୍ମୀୟଗଣଙ୍କ ସହିତ ଉଠି ଠିଆ
ହେଲେ । ଠାକୁର ଶ୍ରୀରାମକୃଷ୍ଣ ବିଦ୍ୟାସାଗରଙ୍କ ଆଧ୍ୟାତ୍ମିକ ମଙ୍ଗଳ ଲାଗି
ମୂଳମନ୍ତ୍ର ଜପ କରିବାକୁ ଲାଗିଲେ । ବିଦ୍ୟାସାଗର ଓ ଅନ୍ୟମାନେ ଗୋଟି
ଗୋଟି ହୋଇ ଠାକୁରଙ୍କୁ ପ୍ରଣାମ କଲେ । ତତ୍ପରେ ଶ୍ରୀରାମକୃଷ୍ଣ ବିଦାୟ
ଗ୍ରହଣ କରି ଦକ୍ଷିଣେଶ୍ୱରକୁ ଫେରି ଆସିଲେ । ଅହେତୁକ କୃପାସିନ୍ଧୁ ଠାକୁର
ଜୀବର କଲ୍ୟାଣ ଲାଗି ଏହିପରି ଘରେ ଘରେ ଈଶ୍ୱରଙ୍କ ନାମ ବିତରଣ
କରି ବୁଲୁଥିଲେ । ସେ କହୁଥିଲେ—'ଈଶ୍ୱରଙ୍କୁ ପ୍ରେମ କରିବା ହିଁ ଜୀବନର
ଉଦ୍ଦେଶ୍ୟ ।' (ଶ୍ରୀମା-କଥିତ ଶ୍ରୀରାମକୃଷ୍ଣକଥାମୃତ, ତୃତୀୟ ଭାଗ, ୧ମ ଖଣ୍ଡରୁ
ସଙ୍କଳିତ ।)

ଠାକୁରଙ୍କ ଜୀବନର ଅନ୍ୟ ଗୋଟିଏ ଘଟଣାର ଉଲ୍ଲେଖ ଏଠାରେ
ପ୍ରାସଙ୍ଗିକ ମନେହୁଏ । ଶ୍ରୀଯୁକ୍ତ କେଶବ ସେନଙ୍କ ସହିତ ପ୍ରଥମ ପରିଚୟ
ପରେ ଶ୍ରୀଶ୍ରୀଚୈତନ୍ୟଦେବଙ୍କଦ୍ୱାରା ପ୍ରବର୍ତ୍ତିତ ସର୍ବଜନମନୋହର ନଗର-
କୀର୍ତ୍ତନ ଦେଖିବା ଲାଗି ଠାକୁରଙ୍କର ବାସନା ହେଲା । ନିଜ ଗୃହର

ବାହାରେ ଠିଆ ହୋଇ ଠାକୁର ସହସା ଦିନେ (ଦିବ୍ୟ ଚକ୍ଷୁରେ) ଦେଖିଲେ ଯେ ନବଦ୍ୱୀପଚନ୍ଦ୍ର ଶ୍ରୀଗୌରାଙ୍ଗଦେବ, ଶ୍ରୀନିତ୍ୟାନନ୍ଦ ଓ ଶ୍ରୀଅଦ୍ୱୈତ ପ୍ରଭୁଙ୍କୁ ସଙ୍ଗରେ ଧରି ଈଶ୍ୱରପ୍ରେମରେ ତନ୍ମୟ ହୋଇ ଜନତରଙ୍ଗର ମଧ୍ୟଭାଗରେ ଧୀର ପଦକ୍ଷେପରେ ଆଗମନ କରୁଛନ୍ତି ଏବଂ ଚତୁଃପାର୍ଶ୍ୱସ୍ଥ ସମସ୍ତେ ତାଙ୍କର ପ୍ରେମରେ ତନ୍ମୟ ହୋଇ କେହି ବା ଅଚେତନଭାବରେ, କେହି ବା ଉଦ୍ଦାମ ତାଣ୍ଡବରେ ନିଜ ନିଜ ଅନ୍ତରର ଉଲ୍ଲାସ ପ୍ରକାଶ କରୁଅଛନ୍ତି । ଏହି ଅଦ୍ଭୁତ ସଙ୍କୀର୍ତ୍ତନ ଦଳ ଭିତରେ କେତୋଟି ମୁଖ ଠାକୁରଙ୍କ ସ୍ମୃତିପଟରେ ଉଜ୍ଜ୍ୱଳ ବର୍ଣ୍ଣରେ ଅଙ୍କିତ ହୋଇ ଯାଇଥିଲା ଏବଂ ଏହି ଦର୍ଶନର କିଛିକାଳ ପରେ ତାଙ୍କ ପାଖକୁ ଆସିଥିବା ଭକ୍ତମାନଙ୍କୁ ଦେଖି ଠାକୁର ସେମାନଙ୍କ ବିଷୟରେ ଏହି ସିଦ୍ଧାନ୍ତ କରିଥିଲେ ଯେ ପୂର୍ବ ଜୀବନରେ ସେମାନେ ଶ୍ରୀଚୈତନ୍ୟ-ଦେବଙ୍କର ସାଙ୍ଗୋପାଙ୍ଗ ଥିଲେ ।

ଏହି ଦର୍ଶନର କିଛିକାଳ ପରେ ଠାକୁର କାମାରପୁକୁର ଓ ହୃଦୟଙ୍କ ଗ୍ରାମ ସିହଡ଼କୁ ଯାଇଥିଲେ । ସିହଡ଼ ଗ୍ରାମର କେତେ କୋଶ ଦୂରରେ ଫୁଲୁଇ ଶ୍ୟାମବଜାର ନାମକ ସ୍ଥାନ । ଏହି ଗ୍ରାମର ନଟବର ଗୋସ୍ୱାମୀ ଠାକୁରଙ୍କୁ ତାଙ୍କ ଘରେ ପଦଧୂଳି ଦେବା ଲାଗି ନିମନ୍ତ୍ରଣ କରିଥିଲେ । ଠାକୁର ତେଣୁ ହୃଦୟଙ୍କୁ ସାଙ୍ଗରେ ଧରି ତାଙ୍କ ଘରକୁ ଯାଇ ସାତଦିନ ରହିଥିଲେ । ସେତେବେଳେ ସେ ଶ୍ୟାମବଜାରର ବୈଷ୍ଣବମାନଙ୍କର କୀର୍ତ୍ତନାନନ୍ଦ ଦର୍ଶନ କରିଥିଲେ । ସେଠାରେ ଈଶାନଚନ୍ଦ୍ର ମଲ୍ଲିକ ଠାକୁରଙ୍କ ସଙ୍ଗେ ପରିଚିତ ହୋଇ ତାଙ୍କୁ ନିଜ ଘରକୁ କୀର୍ତ୍ତନାନନ୍ଦ ଲାଗି ନିମନ୍ତ୍ରଣ କଲେ । କୀର୍ତ୍ତନ-କାଳରେ ଠାକୁରଙ୍କର ଅପୂର୍ବ ଭାବ ଦେଖି ବୈଷ୍ଣବମାନେ ବିଶେଷ ଆକର୍ଷଣ ଅନୁଭବ କଲେ । ଦିନଦିନ ଦିନରାତି ସେଠାରେ ଆନନ୍ଦର ବନ୍ୟା ପ୍ରବାହିତ ହେଲା । ଲୋକେ ଠାକୁରଙ୍କୁ ଦେଖିବା ଲାଗି ଓ ତାଙ୍କର ପାଦସ୍ପର୍ଶ କରିବା ଲାଗି ଉନ୍ମତ୍ତ ହୋଇ ଉଠିଥିଲେ । ଠାକୁରଙ୍କର ସେତେବେଳେ ସ୍ନାନାହାର ଲାଗି ମଧ୍ୟ ଅବକାଶ ନ ଥିଲା । ତେଣୁ ଦିନେ ଗୋପନରେ ହୃଦୟ ତାଙ୍କୁ ଧରି ସିହଡ଼ ଗ୍ରାମକୁ ଚାଲିଆସିଲେ । ଠାକୁର ସେଠାରୁ ଚାଲି ଆସିଲା ପରେ ସେଠାରେ ଆନନ୍ଦମେଳାର ଅବସାନ ଘଟିଲା ।

# ଊନବିଂଶ ଅଧ୍ୟାୟ

# ଶ୍ରୀରାମକୃଷ୍ଣଙ୍କ ସାନ୍ନିଧ୍ୟରେ ଭକ୍ତବୃନ୍ଦ, ରାଖାଲ ଓ ନରେନ୍ଦ୍ରନାଥ

ଇତିମଧ୍ୟରେ ବ୍ରାହ୍ମମଣ୍ଡଳୀ ଦ୍ୱାରା ପରିଚାଳିତ ସମ୍ବାଦପତ୍ରଗୁଡ଼ିକରେ ଠାକୁରଙ୍କ ଆଧ୍ୟାତ୍ମିକ ମତର ଅଲୌକିକତ୍ୱ ଏବଂ ତାଙ୍କର ଅମୃତମୟୀ ବାଣୀଗୁଡ଼ିକର କିଛିକିଛି ନିୟମିତ ପ୍ରକାଶ ପାଉଥିଲା । ତଦ୍ଦ୍ୱାରା କଲିକତାର ଜନସାଧାରଣଙ୍କ ମନରେ ତାଙ୍କ ପ୍ରତି ଖୁବ୍ ଆଗ୍ରହ ଓ ଆକର୍ଷଣ ବଢ଼ି ଯାଇଥିଲା । ଫଳରେ ଠାକୁରଙ୍କ ପୁଣ୍ୟ ଦର୍ଶନ ଲାଗି ସେମାନେ ଦକ୍ଷିଣେଶ୍ୱର ଆସିବାକୁ ଲାଗିଲେ । ୧୮୭୯ ମସିହାରେ ରାମଚନ୍ଦ୍ର ଦତ୍ତ ଓ ମନମୋହନ ମିତ୍ର ନାମକ ଦୁଇଜଣ ଗୃହସ୍ଥ ଭକ୍ତ କେଶବ ସେନଙ୍କ ପରିଚାଳିତ ସମ୍ବାଦପତ୍ରରୁ ଠାକୁରଙ୍କର ବୃତ୍ତାନ୍ତ ପଢ଼ି ତାଙ୍କୁ ଦର୍ଶନ କରିବାକୁ ଆସିଥିଲେ । ଠାକୁରଙ୍କ ପ୍ରବର୍ତ୍ତିତ ଜୀବନାଦର୍ଶର ମୂଳ କଥା ହେଲା— 'କାମ-କାଞ୍ଚନ' ତ୍ୟାଗ । ଏହି ଭାବ ସମ୍ପୂର୍ଣ୍ଣରୂପେ ଗ୍ରହଣ କରି ନ ପାରିଲେ ସୁଦ୍ଧା ରାମଚନ୍ଦ୍ର ଦତ୍ତ ଓ ମନମୋହନ ମିତ୍ରଙ୍କ ସଦୃଶ ବହୁ ଗୃହୀ-ଭକ୍ତ ଠାକୁରଙ୍କ ପ୍ରଭାବରେ ତ୍ୟାଗ-ପଥରେ ଅନେକ ଦୂର ଅଗ୍ରସର ହୋଇପାରିଥିଲେ । ୧୮୮୧ ମସୀହାଠାରୁ ଠାକୁରଙ୍କର ଲୀଳା-ସହଚର ତ୍ୟାଗୀ ଭକ୍ତବୃନ୍ଦ ଜଣଜଣ ହୋଇ ଆସି ତାଙ୍କ ନିକଟରେ ଉପସ୍ଥିତ ହେଲେ । ଶ୍ରୀରାମକୃଷ୍ଣଙ୍କ ସଙ୍ଘର ବିଶିଷ୍ଟ ସନ୍ନ୍ୟାସୀ ସୁପରିଚିତ ସ୍ୱାମୀ ବ୍ରହ୍ମାନନ୍ଦ ଏହି ସମୟରେ ଠାକୁରଙ୍କ ନିକଟରେ ପ୍ରଥମେ ପହଞ୍ଚିଥିଲେ । ପୂର୍ବ ଜୀବନରେ ତାଙ୍କର ନାମ ଥିଲା ଶ୍ରୀରାଖାଲଚନ୍ଦ୍ର ଘୋଷ । ମନମୋହନଙ୍କ ଭଉଣୀଙ୍କୁ ସେ ବିବାହ କରିଥିଲେ । ଏହି ବିବାହର ଅଳ୍ପକାଳ ପରେ ଠାକୁରଙ୍କ ନାମ ଶୁଣି ସେ ସେଠାକୁ ଆସିଥିଲେ । ଶ୍ରୀରାମକୃଷ୍ଣଦେବ ସ୍ୱମୁଖରେ କହିଛନ୍ତି, "ରାଖାଲ ଆସିବାର କିଛି ଦିନ ପୂର୍ବେ ଦେଖିଲି—ମା (ଶ୍ରୀଜଗଦମ୍ବା) ଗୋଟିଏ

ବାଳକଙ୍କୁ ଆଣି ସହସା ମୋର କୋଳରେ ବସାଇ ଦେଇ କହିଲେ,'ଏଇଟି ତୋର ପୁତ୍ର !' ଏହା ଶୁଣି ମୁଁ ଆତଙ୍କରେ ଶିହରଉଠି କହିଲି, 'ସେ କ'ଣ ? ମୋର ପୁଣି ପୁଅ କ'ଣ ?' ମା ଏ କଥା ଶୁଣି ହସି ହସି ବୁଝାଇ ଦେଲେ, ସାଧାରଣ ସଂସାରୀ ଭାବରେ ପୁଅ ନୁହେଁ—ତ୍ୟାଗୀ ମାନସପୁତ୍ର ।' ସେତେବେଳେ ଯାଇ ଆଶ୍ୱସ୍ତ ହେଲି । ଏହି ଦର୍ଶନର ଠିକ୍ ପରେ ପରେ ରାଖାଲ ଆସି ପହଞ୍ଚିଲା । ମୁଁ ବୁଝିଲି—ଏ ସେହି ବାଳକ ।" ଶ୍ରୀଯୁକ୍ତ ରାଖାଲଙ୍କ ସମ୍ପର୍କରେ ଆଉ ଥରେ ଠାକୁର କହିଥିଲେ, "ସେତେବେଳେ ରାଖାଲର ଏପରି ଭାବ ଥିଲା, ସତେକି ତିନି ବର୍ଷର ବାଳକ । ମତେ ଠିକ୍ ମାଆ ଭଳି ଦେଖୁଥିଲା । ଥାଉ, ଥାଉ, ହଠାତ୍ ଦୌଡ଼ି ଆସି କୋଳରେ ବସି ପଡ଼ିବ, ଆଉ ମନ ଆନନ୍ଦରେ ନିଃସଙ୍କୋଚରେ ସ୍ତନ ପାନ କରିବ । ମୋତେ ପାଇଲେ ଆତ୍ମହରା ହୋଇ ରାଖାଲ ଭିତରେ ଯେ କିଭଳି ବାଳକଭାବର ଆବେଶ ହେଉଥିଲା, ତାହା କଥାରେ ବୁଝାଇ ହେବ ନାହିଁ । ମୁଁ ମଧ୍ୟ ଭାବାବିଷ୍ଟ ହୋଇ ତାକୁ କ୍ଷୀର ଲହୁଣୀ ଖୁଆଏ—ଖେଳାଏ । କେବେକେବେ କାନ୍ଧରେ ନେଇ ବସାଏ । ସେଥିରେ ବି ତା' ମନରେ ବିନ୍ଦୁମାତ୍ର ସଙ୍କୋଚ-ଭାବ ଆସେ ନାହିଁ । ଏହା ପୂର୍ବରୁ ମା ମୋତେ ଦେଖାଇ ଦେଇଥିଲେ—ରାଖାଲ ପ୍ରକୃତରେ ବ୍ରଜବାଳକ ।"

ବୟୋବୃଦ୍ଧି ସଙ୍ଗେ ସଙ୍ଗେ ବାଳକ ଧୀର ଗମ୍ଭୀର ସାଧକଶ୍ରେଣୀଭୁକ୍ତ ହୋଇ କ୍ରମେ ଈଶ୍ୱରଙ୍କ ଉଦ୍ଦେଶ୍ୟରେ ସଂସାରର ସର୍ବସ୍ୱ ତ୍ୟାଗ କରି ଶ୍ରୀରାମକୃଷ୍ଣ ସଂଘର ଶୀର୍ଷ ସ୍ଥାନରେ ଉପନୀତ ହୋଇଥିଲେ । ତାଙ୍କର ଦକ୍ଷିଣେଶ୍ୱରକୁ ଆସିବାର ତିନିଚାରିମାସ ପରେ ପୂଜ୍ୟପାଦ ସ୍ୱାମୀ ବିବେକାନନ୍ଦ ଠାକୁରଙ୍କ ନିକଟକୁ ଆସିଥିଲେ ।

ନିଜ ଚିହ୍ନିତ ଭକ୍ତମାନଙ୍କର ଆଗମନ-କାଳ ସନ୍ନିକଟ ଜାଣି ଦିବ୍ୟ-ଭାବାରୂଢ଼ ଠାକୁର ଏହି ସମୟରେ କିଭଳି ଆଗ୍ରହ ସହକାରେ ସେମାନଙ୍କର ପ୍ରତୀକ୍ଷା କରିଥିଲେ, ତାହା ଶ୍ରୀମତ୍ ସ୍ୱାମୀ ବିବେକାନନ୍ଦଙ୍କ ପ୍ରଥମ ଆଗମନ ବେଳର ଘଟଣା ବର୍ଣ୍ଣନା କଲେ ସ୍ପଷ୍ଟ ବୁଝାପଡ଼ିବ । ସ୍ୱାମୀ ବ୍ରହ୍ମାନନ୍ଦ କହୁଥିଲେ—ଠାକୁରଙ୍କ ନିକଟକୁ ତାଙ୍କ ଆଗମନର ପ୍ରାୟ ସମାନ ସମୟରେ

କଲିକତାର ଶିମଳା ପଲ୍ଲୀନିବାସୀ ଶ୍ରୀସୁରେନ୍ଦ୍ରନାଥ ମିତ୍ର ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ପୁଣ୍ୟଦର୍ଶନ-ଲାଭରେ ଧନ୍ୟ ହୋଇଥିଲେ । ପ୍ରଥମ ଦର୍ଶନରୁ ହିଁ ସୁରେନ୍ଦ୍ରନାଥ ଠାକୁରଙ୍କ ପ୍ରତି ଅତ୍ୟନ୍ତ ଆକୃଷ୍ଟ ହୋଇ ପଡ଼ିଲେ ଏବଂ ଅଳ୍ପକାଳ ମଧ୍ୟରେ ତାଙ୍କୁ ନିଜ ଘରକୁ ନେଇଯାଇ ଆନନ୍ଦ-ଉତ୍ସବର ଅନୁଷ୍ଠାନ କଲେ । ସୁକଣ୍ଠ ଗାୟକର ଅଭାବ ହେବାରୁ ସୁରେନ୍ଦ୍ରନାଥ ସେଦିନ ନିଜ ପ୍ରତିବେଶୀ ବିଶ୍ୱନାଥ ଦତ୍ତଙ୍କ ପୁତ୍ର ଶ୍ରୀମାନ୍ ନରେନ୍ଦ୍ରନାଥଙ୍କୁ ଠାକୁରଙ୍କ ପାଖକୁ ଭଜନ ଗାଇବା ନିମିତ୍ତ ନିଜ ଘରକୁ ସାଦର ନିମନ୍ତ୍ରଣ କଲେ । ଠାକୁର ଓ ତାଙ୍କ ପ୍ରଧାନ ଲୀଳାସହାୟକ ସ୍ୱାମୀ ବିବେକାନନ୍ଦଙ୍କର ପ୍ରଥମ ମିଳନ ଏହି ସୂତ୍ରରେ ସଂଘଟିତ ହୋଇଥିଲା ।

ସେଦିନ ୧୮୮୧ ମସୀହା ନଭେମ୍ବର ମାସ । ନରେନ୍ଦ୍ରନାଥଙ୍କୁ ସେତେବେଳେ ଅଠର ବର୍ଷ ବୟସ । ସେତେବେଳେ ସେ ଏଫ୍. ଏ. (ଆଜିକାଲିର ଆଇ. ଏ.) ପରୀକ୍ଷା ପାଇଁ ପ୍ରସ୍ତୁତ ହେଉଥାଆନ୍ତି ।··· ସୁରେନ୍ଦ୍ରନାଥଙ୍କ ଘରେ ନରେନ୍ଦ୍ରନାଥ କେତୋଟି ଭଜନ ଗାଇ ସାରି ଯେତେବେଳେ ନୀରବ ହେଲେ, ସେତେବେଳେ ଠାକୁର ନିଜେ ତାଙ୍କ ପାଖକୁ ଉଠିଆସିଲେ । ଏହି ଦୀପ୍ତିମାନ ସୁକଣ୍ଠ କିଶୋରଙ୍କ ଆଡ଼କୁ ଚାହିଁ ଠାକୁର ତାଙ୍କର ଅଙ୍ଗଲକ୍ଷଣଗୁଡ଼ିକ ବିଶେଷଭାବରେ ନିରୀକ୍ଷଣ କରି କରି ତାଙ୍କ ସହିତ ପଦେ ଦି'ପଦ କଥାବାର୍ତ୍ତା ମଧ୍ୟ ହେଲେ ଏବଂ ଶୀଘ୍ର ଦକ୍ଷିଣେଶ୍ୱର ଆସିବା ଲାଗି ଆମନ୍ତ୍ରଣ କଲେ ।

ଠାକୁରଙ୍କର ଆଉ ଜଣେ ଗୃହସ୍ଥ ଭକ୍ତ ରାମଚନ୍ଦ୍ର ଦତ୍ତ ଥିଲେ ନରେନ୍ଦ୍ରନାଥଙ୍କ ଦୂରସମ୍ପର୍କୀୟ ଆତ୍ମୀୟ । ଧର୍ମଭାବର ପ୍ରେରଣାରେ ନରେନ୍ଦ୍ର ବିବାହ କରିବା ଲାଗି ଅନିଚ୍ଛା ପ୍ରକାଶ କରିବାରୁ ଦିନେ ଉକ୍ତ ଦତ୍ତ ମହାଶୟ ତାଙ୍କୁ କହିଲେ, "ଯଦି ଧର୍ମଲାଭ କରିବା ପାଇଁ ତୋର ଯଥାର୍ଥ ବାସନା ହୋଇଥାଏ, ତେବେ ବ୍ରାହ୍ମସମାଜ ପ୍ରଭୃତିରେ ଅକାରଣ ଘୂରିଘୂରି ନ କରି ଦକ୍ଷିଣେଶ୍ୱରର ଠାକୁରଙ୍କ ପାଖକୁ ଯା ।" ପ୍ରତିବେଶୀ ସୁରେନ୍ଦ୍ରନାଥ ମଧ୍ୟ ଦିନେ ଗାଡ଼ି କରି ଦକ୍ଷିଣେଶ୍ୱର ଯିବା ପାଇଁ ତାଙ୍କୁ ନିମନ୍ତ୍ରଣ ଜଣାଇଲେ । ନରେନ୍ଦ୍ରନାଥ ଏଥିରେ ସମ୍ମତ ହୋଇ ଦୁଇ ତିନିଜଣ

ସମବୟସ୍କ ବନ୍ଧୁଙ୍କ ସାଙ୍ଗରେ ଧରି ସୁରେନ୍ଦ୍ରନାଥଙ୍କ ସହିତ ଦକ୍ଷିଣେଶ୍ୱରରେ ଆସି ପହଞ୍ଚିଲେ । ନରେନ୍ଦ୍ରନାଥଙ୍କୁ ଦେଖି ସେଦିନ ଠାକୁରଙ୍କର ଯାହା ମନେ ହୋଇଥିଲା, କଥା ପ୍ରସଙ୍ଗରେ ସେହି କଥା ଥରେ ସଂକ୍ଷେପରେ ସେ ଅନ୍ତରଙ୍ଗ ଭକ୍ତମାନଙ୍କ ଆଗରେ କହିଥିଲେ, "ପଶ୍ଚିମ ପାଖ ଦୁଆର ଦେଇ ନରେନ୍ଦ୍ର ପ୍ରଥମ ଦିନ ଏହି ଘରେ ପ୍ରବେଶ କରିଥିଲା । ଦେଖିଲି—ନିଜର ଶରୀର ପ୍ରତି ଲକ୍ଷ୍ୟ ନାହିଁ । ମୁଣ୍ଡର କେଶ ଓ ବେଶଭୂଷାର କୌଣସି ପ୍ରକାର ପରିପାଟୀ ନାହିଁ । ବାହାରର କୌଣସି ଜିନଷ ପ୍ରତି ଇତର ସାଧାରଣଙ୍କ ପରି ତା'ର କିଛି ଆଗ୍ରହ ବା ଆସକ୍ତି ନାହିଁ । ସବୁ କିଛିରେ ଯେପରି ଉଦାସୀନ । ତା'ର ଆଖି ଦେଖି ମନେ ହେଲା—ତା'ର ମନର ଅନେକ ଭିତରୁ ତାକୁ ଯେପରି କିଏ ଜୋର୍ କରି ଟାଣି ରଖିଛି । ତଳେ ମସିଣା ପରା ହୋଇଥିଲା । ବସିବାକୁ କହିଲି; ଗୀତ ଗାଇବା କଥା ପଚାରି ବୁଝିଲି ଯେ ସେ ମାତ୍ର ଦୁଇ ଚାରିଟି ବଙ୍ଗଳା ଗୀତ ସେତେବେଳକୁ ଶିଖିଛି । ସେତିକ ଗାଇବାକୁ କହିଲି । ତେଣୁ ସେ ବ୍ରାହ୍ମସମାଜର 'ମନ ଚଲ ନିଜ ନିକେତନେ' ଗୀତଟି ଖୋଲଅଣା ମନପ୍ରାଣ ଦେଇ ସତେକି ଧ୍ୟାନସ୍ଥ ହୋଇ ଗାଇଲା । ତା' ଗୀତ ଶୁଣି ଆଉ ସମ୍ଭାଳିପାରିଲି ନାହିଁ । ଭାବାବିଷ୍ଟ ହୋଇପଡ଼ିଲି ।"

ପରବର୍ତ୍ତୀ କାଳରେ ଶ୍ରୀଯୁକ୍ତ ନରେନ୍ଦ୍ରନାଥ ଦିନେ ସେହି ବିଶେଷ ଦିନଟିର ଘଟଣା ସମ୍ବନ୍ଧରେ କଥା ପ୍ରସଙ୍ଗରେ ଗୁରୁଭାଇମାନଙ୍କୁ କହିଥିଲେ, "ଗୀତ ତ ଗାଇଲି; ତା'ପରେ ପରେ ଠାକୁର ହଠାତ୍ ଉଠି ଆସି ମୋର ହାତ ଧରି ତାଙ୍କ ଘରର ଉତ୍ତରକୁ ଯେଉଁ ବାରଣ୍ଡାଟି ଅଛି ସେଠାକୁ ନେଇଗଲେ ।... ହଠାତ୍ ମୋର ହାତ ଧରି ଧାର ଧାର ଆନନ୍ଦାଶ୍ରୁ ବିସର୍ଜନ କରିବାକୁ ଲାଗିଲେ ଏବଂ ପୂର୍ବ ପରିଚିତ ଭଳି ମୋତେ ପରମ ସ୍ନେହରେ ସମ୍ବୋଧନ କରି କହିଲେ, 'ଏତେଦିନ ପରେ ଆସିଲୁ ? ମୁଁ ତୋ ଲାଗି କିଭଳି ପ୍ରତୀକ୍ଷା କରି ରହିଛି, ସେ କଥା ତୁ ଥରେ ବି ଭାବିଲୁ ନାହିଁ ?' ଏପରି କେତେ କଥା କହିଲେ ଏବଂ ରୋଦନ କରିବାକୁ ଲାଗିଲେ । ପରକ୍ଷଣରେ ପୁଣି ମୋ ସମ୍ମୁଖରେ ହାତ ଯୋଡ଼ି ଦଣ୍ଡାୟମାନ ହୋଇ ଦେବତାଙ୍କ ସଦୃଶ ମୋ ପ୍ରତି ସମ୍ମାନ ପ୍ରଦର୍ଶନପୂର୍ବକ କହିଲେ— 'ମୁଁ ଜାଣେ ପ୍ରଭୁ !

ତୁମେ ସେହି ପୁରାତନ ଋଷି ନରରୂପୀ ନାରାୟଣ, ଜୀବର ଦୁର୍ଗତି ନିବାରଣ କରିବା ଲାଗି ପୁନରାୟ ଶରୀର ଧାରଣ କରିଅଛ ।... ତା'ପରେ ମୋତେ ସେଠାରେ ରହିବାକୁ କହି ସେ ଗୃହ ଭିତରକୁ ପ୍ରବେଶ କଲେ ଏବଂ ଲହୁଣୀ ମିଶ୍ରି ଓ କେତେକ ସନ୍ଦେଶ ଆଣି ମୋତେ ସ୍ୱହସ୍ତରେ ଖୁଆଇବାକୁ ଲାଗିଲେ ।... ତା'ପରେ ହାତ ଧରି କହିଲେ, 'କୁହ ତ ! ତୁମେ ଖୁବ୍ ଶୀଘ୍ର ଦିନେ କେବେ ମୋ ପାଖକୁ ଏକୁଟିଆ ଆସିବ ?' ତାଙ୍କର ଏଭଳି ଏକାନ୍ତ ଅନୁରୋଧ ଏଡ଼ାଇ ନ ପାରି ଅଗତ୍ୟା ଆସିବି ବୋଲି କହିଲି ଏବଂ ତାଙ୍କ ସହିତ ଗୃହ ଭିତରକୁ ପ୍ରବେଶ କରି ସଙ୍ଗୀମାନଙ୍କ ପାଖରେ ଯାଇ ବସିଲି ।

"ବସି ବସି ତାଙ୍କୁ ଲକ୍ଷ୍ୟ କଲି ଓ ଭାବିବାକୁ ଲାଗିଲି । ଦେଖିଲି— ତାଙ୍କର ଚାଲିଚଳଣରେ, କଥାବାର୍ତ୍ତାରେ ଅନ୍ୟମାନଙ୍କ ସହିତ ଆଚରଣରେ ଉନ୍ମାଦ ହେଲାଭଳି କିଛି ନାହିଁ । ତାଙ୍କର ସଦାଳାପ ଓ ଭାବସମାଧି ଦେଖି ମନେହେଲା—ସତକୁ ସତ ସେ ଈଶ୍ୱରଙ୍କ ଲାଗି ସବୁ ତ୍ୟାଗ କରିଛନ୍ତି ଏବଂ ସେ ଯାହା କହୁଛନ୍ତି, ସବୁ ନିଜେ ଆଚରଣ କରିଛନ୍ତି । 'ତୁମ୍ଭମାନଙ୍କୁ ଯେପରି ଦେଖୁଛି—ତୁମ୍ଭମାନଙ୍କ ସହିତ ଯେପରି କଥାବାର୍ତ୍ତା କରୁଛି, ସେହିପରି ଭାବରେ ଈଶ୍ୱରଙ୍କୁ ଦେଖାଯାଏ ଏବଂ ତାଙ୍କ ସଙ୍ଗେ କଥା କୁହାଯାଏ, କିନ୍ତୁ ତାଙ୍କୁ ପାଇବାକୁ କିଏ ଭଲା ଚାହେଁ ? ଲୋକମାନେ ସ୍ତ୍ରୀପୁତ୍ରଙ୍କ ଶୋକରେ ଆଖିରୁ ମାଠିଆ ମାଠିଆ ଲୁହ ଢାଳନ୍ତି, ବିଷୟ ବା ଟଙ୍କା ପାଇଁ ମଧ୍ୟ ସେପରି କରନ୍ତି; କିନ୍ତୁ ଈଶ୍ୱରଙ୍କୁ ପାଇଲି ନାହିଁ ବୋଲି ଏପରି କିଏ କାନ୍ଦେ କୁହ ? ତାଙ୍କୁ ପାଇଲି ନାହିଁ ବୋଲି ଯଦି ଏଭଳି ବ୍ୟାକୁଳ ହୋଇ କିଏ ତାଙ୍କୁ ଡାକେ, ତା'ହେଲେ ସେ ନିଶ୍ଚୟ ତାକୁ ଦେଖା ଦିଅନ୍ତି ।' —ଠାକୁରଙ୍କ ମୁଖରୁ ଏହିସବୁ କଥା ଶୁଣି ମନେ ହେଲା—ସେ ଅନ୍ୟାନ୍ୟ ଧର୍ମ-ପ୍ରଚାରକମାନଙ୍କ ଭଳି କଳ୍ପନା ବା ରୂପକର ସହାୟତା ନେଇ ଏପରି କହୁ ନାହାନ୍ତି । ସତକୁସତ ସର୍ବସ୍ୱ ତ୍ୟାଗ କରି ଏବଂ ସମ୍ପୂର୍ଣ୍ଣ ମନରେ ଈଶ୍ୱରଙ୍କୁ ଡାକି ଯାହା ପ୍ରତ୍ୟକ୍ଷ କରିଛନ୍ତି ତାହା ହିଁ କହୁଛନ୍ତି । ନିର୍ବାକ୍ ହୋଇ ଭାବିବାକୁ ଲାଗିଲି ଉନ୍ମାଦ ହେଲେ ମଧ୍ୟ ଈଶ୍ୱରଙ୍କ ପାଇଁ ଏଭଳି ତ୍ୟାଗ ଏ ଜଗତରେ ବିରଳ ବ୍ୟକ୍ତି ହିଁ କରିବାକୁ ସକ୍ଷମ । ଉନ୍ମାଦ ହେଲେ ସୁଦ୍ଧା

ଏ ବ୍ୟକ୍ତି ମହାପବିତ୍ର, ମହାତ୍ୟାଗୀ ଏବଂ ଏଥିଲାଗି ମାନବ-ହୃଦୟର ଶ୍ରଦ୍ଧା, ପୂଜା ଓ ସମ୍ମାନ ପାଇବାର ଯଥାର୍ଥ ଅଧିକାରୀ ! ଏପରି ଭାବ ଭାବି ସେଦିନ ତାଙ୍କର ଚରଣ-ବନ୍ଦନା କରି ତାଙ୍କଠାରୁ ବିଦାୟ ନେଇ କଲିକତା ଫେରି ଆସିଲି ।''

ସହସ୍ର କର୍ମରେ ରତ ନରେନ୍ଦ୍ରନାଥଙ୍କ ମନରେ କେତୋଟି ସପ୍ତାହ ଲାଗି ଦକ୍ଷିଣେଶ୍ୱରକୁ ଯିବା କଥା ଚାପା ପଡ଼ିଗଲା । ପାଶ୍ଚାତ୍ୟ ଶିକ୍ଷା ଓ ଦୈନନ୍ଦିନ କର୍ମ ତାଙ୍କୁ ଏପରି ଭୁଲାଇ ରଖିଲେ ମଧ୍ୟ ତାଙ୍କର ସ୍ମୃତି ଓ ସତ୍ୟାନ୍ୱେଷୀ ଅବସର ପାଇଲେ ତାଙ୍କ ମନରେ ଦକ୍ଷିଣେଶ୍ୱର ଅନୁଭୂତିର ସ୍ମୃତି ଜାଗ୍ରତ କରିଦିଏ । ସେ କିପରି ଏକୁଟିଆ ଦକ୍ଷିଣେଶ୍ୱର ଯାଇ ଠାକୁରଙ୍କୁ ଦେଇଥିବା ପ୍ରତିଶ୍ରୁତି ରକ୍ଷା କରିବେ—ଏହି ଭାବନାରେ ବେଳେବେଳେ ଉତ୍ତେଜିତ ହୋଇପଡ଼ନ୍ତି ।

ଠାକୁରଙ୍କ ସହିତ ପ୍ରଥମ ଦର୍ଶନ ପରେ ମାସାଧିକ କାଳ ଅତିବାହିତ ହୋଇଗଲା । ଦିନେ ନରେନ୍ଦ୍ର ଏକାକୀ ପାଦରେ ଚାଲିଚାଲି ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ଏହି ଦ୍ୱିତୀୟ ଥର ଦକ୍ଷିଣେଶ୍ୱରର ଅଭିଜ୍ଞତା ସେ ନିଜେ ପରବର୍ତ୍ତୀ କାଳରେ ନିଜ ମୁଖରେ ବର୍ଣ୍ଣନା କରିଛନ୍ତି—

''ଦକ୍ଷିଣେଶ୍ୱର କାଳୀବାଡ଼ି ଯେ କଲିକତାଠାରୁ ଏତେ ଦୂର, ସେ କଥା ଥରେ ଯାଇ ବୁଝିନଥିଲି ।··· ପଚାରି ପଚାରି କୌଣସିମତେ ଯାଇ ଦକ୍ଷିଣେ-ଶ୍ୱରରେ ପହଞ୍ଚିଲି ଏବଂ ସଙ୍ଗେ ସଙ୍ଗେ ଠାକୁରଙ୍କ ଘରେ ପ୍ରବେଶ କଲି । ମୋତେ ଦେଖିବାମାତ୍ରେ ସେ ଖୁବ୍ ଆହ୍ଲାଦରେ ପାଖକୁ ଡାକି ଗୋଟିଏ ପାଖରେ ବସାଇଲେ । ବସିବା ପରେ ପରେ କିନ୍ତୁ ଦେଖିଲି—ସେ ଯେପରି ଏକ ପ୍ରକାର ଭାବରେ ଆବିଷ୍ଟ ହୋଇ ପଡ଼ିଲେ ଏବଂ ଅସ୍ପଷ୍ଟ ସ୍ୱରରେ ନିଜ ମନକୁ ମନ କ'ଣ ସବୁ କହିକହି ସ୍ଥିର ଦୃଷ୍ଟିରେ ମୋତେ ଲକ୍ଷ୍ୟ କରି ଧୀରେ ଧୀରେ ମୋ ଆଡ଼କୁ ଘୁଞ୍ଚି ଆସିଲେ । ଭାବିଲି, ବୋଧହୁଏ ପାଗଳ ପୂର୍ବଦିନ ଭଳି ପୁଣି କୌଣସି ପ୍ରକାର ପାଗଳାମି ଆରମ୍ଭ କରିଦେବେ । ଏହିପରି ଭାବୁ ନ ଭାବୁଣୁ ସେ ହଠାତ୍ ନିକଟକୁ ଆସି ନିଜର ଦକ୍ଷିଣ ପାଦ ମୋ ଅଙ୍ଗରେ ସଂସ୍ଥାପନ କଲେ ଏବଂ ଏହାର ସ୍ପର୍ଶରେ ମୁହୂର୍ତ୍ତିକ ମଧ୍ୟରେ ମୋର ଗୋଟିଏ ଅପୂର୍ବ

ଉପଲବ୍‌ଧି ଘଟିଗଲା । ଆଖି ଖୋଲି ଦେଖିଲି—ଦୁଆର କବାଟ ସମେତ ଗୃହର ସମସ୍ତ ବସ୍ତୁ ସବେଗରେ ଘୂରିଘୂରି କୁଆଡେ ଲୀନ ହୋଇଯାଉଛି ଏବଂ ସମଗ୍ର ବିଶ୍ୱ ସହିତ ମୋର 'ମୁଁଭି' ଯେପରି ଏକ ସର୍ବଗ୍ରାସୀ ମହା-ଶୂନ୍ୟରେ ଏକାକାର ହେବାକୁ ଛୁଟି ଚାଲିଛି । ସେତେବେଳେ ଦାରୁଣ ଆତଙ୍କରେ ଅଭିଭୂତ ହୋଇ ପଡ଼ିଲି । ମନେ ହେଲା—ଏହି 'ମୁଁଭି'ର ନାଶ ହିଁ ତ ମରଣ—ସେହି ମରଣ ମୋର ସମ୍ମୁଖରେ, ଅତି ନିକଟରେ । ସମ୍ଭାଳି ନ ପାରି ଚିତ୍କାର କରି କହି ଉଠିଲି—'ଆହେ, ତୁମେ ମୋର ଏ କ'ଣ କଲ ? ମୋର ଯେ ବାପା ମାଆ ଅଛନ୍ତି ।' ଅଦ୍‌ଭୁତ ପାଗଳ ମୋର ଏ କଥା ଶୁଣି ଖିଲି ଖିଲି କରି ହସି ଉଠିଲେ ଏବଂ ହସ୍ତଦ୍ୱାରା ମୋର ବକ୍ଷ ସ୍ପର୍ଶ କରୁକରୁ କହିଲେ—ତା'ହେଲେ ବର୍ତ୍ତମାନ ଥାଉ । ଏକାଥରକେ ନୁହେଁ । ସମସ୍ତ ହେଲେ ହେବ ।' ଆଶ୍ଚର୍ଯ୍ୟର ବିଷୟ ସେ ଏହିଭାବରେ ସ୍ପର୍ଶ କରି ଏ କଥା କହିବା ମାତ୍ରେ ମୋର ସେହି ଅପୂର୍ବ ଅନୁଭୂତି ସଙ୍ଗେ ସଙ୍ଗେ ଅପନୀତ ହୋଇଗଲା । ମୁଁ ପ୍ରକୃତିସ୍ଥ ହେଲି ଓ ଘର ଭିତରେ ଏବଂ ବାହାରେ ଥିବା ପଦାର୍ଥଗୁଡ଼ିକୁ ପୂର୍ବଭଳି ଅବସ୍ଥିତ ଦେଖିବାକୁ ପାଇଲି ।''

ଏହି ଘଟଣାର କିଛିଦିନ ପରେ ନରେନ୍ଦ୍ରନାଥ ଠାକୁରଙ୍କ ନିକଟକୁ ଆଉଥରେ ଯାଇଥିଲେ । ଦକ୍ଷିଣେଶ୍ୱରରେ ସେଦିନ ବହୁ ଜନସମାଗମ । ସେହି କାରଣରୁ ହେଉ ବା ଅନ୍ୟ କାରଣରୁ ହେଉ, ଠାକୁର ସେଦିନ ନରେନ୍ଦ୍ର-ନାଥଙ୍କୁ ନିକଟବର୍ତ୍ତୀ ଯଦୁନାଥ ମଲ୍ଲିକଙ୍କର ଉଦ୍ୟାନକୁ ବୁଲିଯିବା ପାଇଁ ଡାକିଲେ । ଠାକୁର ନରେନ୍ଦ୍ରଙ୍କ ସହିତ କଥା କହିକହି ଏହି ଘରେ ଆସି ପହଞ୍ଚିଲେ । ସେଠାରେ ବସିବା ମାତ୍ରେ ସେ ସମାଧିସ୍ଥ ହୋଇଗଲେ । ସାମାନ୍ୟ ଦୂରରେ ନରେନ୍ଦ୍ର ବସିଥାଆନ୍ତି । ସେ ଠାକୁରଙ୍କର ଏହି ଅବସ୍ଥାକୁ ସ୍ଥିରଭାବରେ ଲକ୍ଷ୍ୟ କରୁଥାଆନ୍ତି । ଏହି ସମୟରେ ଠାକୁର ପୂର୍ବଦିନ ଭଳି ହଠାତ୍ ଆସି ତାଙ୍କୁ ସ୍ପର୍ଶ କଲେ । ନରେନ୍ଦ୍ର ପୂର୍ବରୁ ସତର୍କ ରହିଥିଲେ ସୁଦ୍ଧା ଏହି ଶକ୍ତିପୂର୍ଣ୍ଣ ସ୍ପର୍ଶରେ ସଙ୍ଗେ ସଙ୍ଗେ ଅଭିଭୂତ ହୋଇଗଲେ । ପୂର୍ବଦିନ ଭଳି ନ ହେଲେ ମଧ୍ୟ ଏଥିରେ ତାଙ୍କର ବାହ୍ୟ ସଂଜ୍ଞା ସଙ୍ଗେସଙ୍ଗେ ଲୁପ୍ତ ହୋଇ-ଗଲା । କିଛିକ୍ଷଣ ପରେ ଯେତେବେଳେ ତାଙ୍କର ବାହ୍ୟ ଚେତନା ଫେରି

ଆସିଲା ସେତେବେଳେ ସେ ଦେଖିଲେ ଯେ ଠାକୁର ତାଙ୍କ ବକ୍ଷରେ ହାତ ବୁଲାଉଛନ୍ତି ଓ ତାଙ୍କୁ ପ୍ରକୃତସ୍ଥ ଦେଖି ମୃଦୁ ମଧୁର ହାସ୍ୟ କରୁଛନ୍ତି ।

ପରବର୍ତ୍ତୀ କାଳରେ କଥା-ପ୍ରସଙ୍ଗରେ ଠାକୁର ଦିନେ ଏହି ଘଟଣାର ଉଲ୍ଲେଖ କରି କହିଥିଲେ, "ବାହ୍ୟ ସଂଜ୍ଞା ଲୋପ ହେବାପରେ ନରେନ୍‌କୁ ସେଦିନ ବହୁକଥା ପଚାରିଥିଲି—ସେ କିଏ ? କେଉଁଠାରୁ ଆସିଛି ? କାହିଁକି ଆସିଛି ? କେତେଦିନ ସେ ଏ ପୃଥିବୀରେ ରହିବ....ଏହିପରି କେତେ କଥା ! ସେ ମଧ୍ୟ ସେହି ଅବସ୍ଥାରେ ନିଜ ଅନ୍ତର ଭିତରକୁ ପ୍ରବେଶ କରି ଏହିସବୁ ପ୍ରଶ୍ନର ଯଥାଯଥ ଉତ୍ତର ଦେଇଥିଲା । ତା' ସମ୍ବନ୍ଧରେ ଯାହା ଦେଖିଥିଲି ଓ ଭାବିଥିଲି, ତା'ର ଏହି ବେଳର ଉତ୍ତରଗୁଡ଼ିକ ତାହା ହିଁ ପ୍ରମାଣ କରିଥିଲା । ସେସବୁ କଥା କହିବାକୁ ନିଷେଧ ଅଛି । ଏଥିରୁ କିନ୍ତୁ ଜାଣିଛି ଯେ ସେ ଯେଉଁ ଦିନ ଜାଣିପାରିବ ଯେ ସେ କିଏ, ସେଦିନ ସେ ଆଉ ଇହଲୋକରେ ରହିବ ନାହିଁ । ଦୃଢ଼ସଂକଳ୍ପ ସହାୟତାରେ ଯୋଗମାର୍ଗରେ ତତ୍‌କ୍ଷଣାତ୍ ଶରୀର ପରିତ୍ୟାଗ କରିବ ! ନରେନ୍ଦ୍ର ଧ୍ୟାନସିଦ୍ଧ ମହାପୁରୁଷ ।"

ଏହି ଦୁଇଟି ଦିନର ଘଟଣା ଫଳରେ ନରେନ୍ଦ୍ରନାଥଙ୍କର ଧାରଣା ହୋଇଥିଲା—ବିରଳ ହେଲେ ମଧ୍ୟ ବାସ୍ତବିକ ଏପରି ମହାପୁରୁଷମାନେ ଏ ଜଗତରେ ଜନ୍ମ ପରିଗ୍ରହ କରନ୍ତି, ଯେଉଁମାନଙ୍କର ଅଲୌକିକ ତ୍ୟାଗ, ତପସ୍ୟା, ପ୍ରେମ ଓ ପବିତ୍ରତା ସାଧାରଣ ମଣିଷର କ୍ଷୁଦ୍ର ମନବୁଦ୍ଧି-ପ୍ରସୂତ ଈଶ୍ୱର-ସମ୍ବନ୍ଧୀୟ ଧାରଣାକୁ ବହୁଦୂର ଅତିକ୍ରମ କରିଯାଏ । ସୁତରାଂ ଏପରି ମହାତ୍ମାମାନଙ୍କୁ ଗୁରୁରୂପେ ଗ୍ରହଣ କଲେ ସାଧାରଣ ମଣିଷମାନଙ୍କର ପରମ ମଙ୍ଗଳ ସାଧିତ ହୋଇଥାଏ । ଯାହାହେଉ, ସେହିଦିନଠାରୁ ସେ ଆଧ୍ୟାତ୍ମିକ ଜଗତର ଅଦୃଷ୍ଟପୂର୍ବ ତତ୍ତ୍ୱଗୁଡ଼ିକୁ ଗ୍ରହଣ କରିବା ନିମିତ୍ତ ମନକୁ ସର୍ବଦା ପ୍ରସ୍ତୁତ ରଖିବା ଲାଗି ଗୋଟିଏ ଦିଗରେ ଯେପରି ଯତ୍ନଶୀଳ ହୋଇ ପଡ଼ିଲେ, ଅନ୍ୟ ଦିଗରେ ସେହିଭଳି ପୁଣି ଠାକୁରଙ୍କର ପ୍ରତ୍ୟେକ ଅଦ୍‌ଭୁତ ଦର୍ଶନ ଓ ବ୍ୟବହାରର ବିଚାରରେ ନିଜକୁ ନିଯୁକ୍ତ କରି ରଖିଲେ ।

## ବିଂଶ ଅଧ୍ୟାୟ

# ଶ୍ରୀରାମକୃଷ୍ଣ ଓ ନରେନ୍ଦ୍ରନାଥଙ୍କ ଅଲୌକିକ ସମ୍ବନ୍ଧ

ପ୍ରଥମ ଦର୍ଶନ ଦିନଠାରୁ ଠାକୁର ନରେନ୍ଦ୍ରନାଥଙ୍କୁ କେତେ ତନ୍ମୟ ଭାବରେ ଭଲ ପାଉଥିଲେ ଓ କେତେ ନିକଟ ଆତ୍ମୀୟ ଜ୍ଞାନ କରୁଥିଲେ, ତା'ର ଆଭାସ ଦେବା ମଧ୍ୟ ସାଧ୍ୟାତୀତ । କୌଣସି କାରଣ ନ ଥାଇ ଜଣେ ଯେ ଅନ୍ୟ ଜଣକୁ ଏତେଦୂର ଭଲ ପାଇପାରେ, ଏ କଥା ଠାକୁର ଓ ନରେନ୍ଙ୍କ ପ୍ରୀତି ନ ଦେଖିଲେ କେହି ଧାରଣା କରିପାରିବେ ନାହିଁ । ଏହି ଅହଂ-ତାଡ଼ିତ ସଂସାରରେ ହୁଏତ ଏପରି ଏକ ଦିନ ଆସିବ, ଯେତେବେଳେ ମଣିଷ ମଣିଷ ଭିତରେ ଈଶ୍ୱର-ପ୍ରକାଶ ଉପଲବ୍ଧି କରି ସମସ୍ତଙ୍କୁ ଯେତେ ଏଭଳି ନିଷ୍କାମ ପ୍ରୀତି ସମ୍ଭବ ହୋଇପାରିବ । ଏଭଳି ପ୍ରୀତି ଅନ୍ୟକୁ ଦେଇପାରିଲେ ଓ ଅନ୍ୟଠାରୁ ପାଇପାରିଲେ ଏହି ମନୁଷ୍ୟ-ଜନ୍ମ କୃତାର୍ଥ ହୋଇଯାଏ ।

ଠାକୁରଙ୍କ ପାଖକୁ ନରେନ୍ଙ୍କ ଆଗମନର କିଛି ଦିନ ପରେ ସ୍ୱାମୀ ପ୍ରେମାନନ୍ଦ ଦକ୍ଷିଣେଶ୍ୱରରେ ପ୍ରଥମେ ଉପସ୍ଥିତ ହେଲେ । ଇତି ମଧ୍ୟରେ ନରେନ୍ଦ୍ରନାଥ ସପ୍ତାହେ କାଳ ବା କିଞ୍ଚିତ୍ ଅଧିକକାଳ ଦକ୍ଷିଣେଶ୍ୱର ନ ଆସିଥିବାରୁ ଠାକୁର ତାଙ୍କ ପାଇଁ କିଭଳି ଉତ୍କଣ୍ଠିତ ଚିତ୍ତରେ କାଳାତିପାତ କରୁଥିଲେ, ସ୍ୱାମୀ ପ୍ରେମାନନ୍ଦ ତାହା ଲକ୍ଷ୍ୟ କରି ମୋହିତ ହୋଇ ସେ ସମ୍ବନ୍ଧରେ ଅନେକ ଥର ବିଭିନ୍ନ ସ୍ଥଳରେ କହିଛନ୍ତି । ଏହାର ବର୍ଣ୍ଣନା ତାଙ୍କର ଭାଷାରେ ଶୁଣାଯାଉ—

"ସ୍ୱାମୀ ବ୍ରହ୍ମାନନ୍ଦଙ୍କ ସହିତ ହାଟଖୋଲା ଘାଟରେ ନୌକା ଉପରକୁ ଉଠୁ ଉଠୁ ସେଦିନ ରାମଦୟାଲବାବୁଙ୍କୁ ସେଠାରେ ଦେଖିବାକୁ ପାଇଲୁ । ସେ ମଧ୍ୟ ଦକ୍ଷିଣେଶ୍ୱର ଯାଉଛନ୍ତି ଜାଣି ଆମେ ଏକାଠି ସେହି ନୌକାରେ ଉଠିଲୁ ଏବଂ ପ୍ରାୟ ସନ୍ଧ୍ୟାବେଳକୁ ରାଣୀ ରାସମଣୀଙ୍କ କାଳୀବାଡ଼ିରେ ପହଞ୍ଚିଗଲୁ । ଠାକୁରଙ୍କ ଘରକୁ ଆସି ଶୁଣିଲୁ, ସେ ଜଗଦମ୍ବାଙ୍କୁ ଦର୍ଶନ କରିବାକୁ ମନ୍ଦିର

ଆଡ଼େ ଯାଇଛନ୍ତି । ସ୍ୱାମୀ ବ୍ରହ୍ମାନନ୍ଦ ଆମକୁ ସେହି ସ୍ଥାନରେ ଅପେକ୍ଷା କରିବାକୁ କହି ଠାକୁରଙ୍କୁ ଆଣିବା ଲାଗି ମନ୍ଦିର ଆଡ଼କୁ ଗଲେ । କିଛିସମୟ ପରେ ବ୍ରହ୍ମାନନ୍ଦ ଠାକୁରଙ୍କୁ ଧରାଧରି କରି ଆଣୁଥିବାର ଦେଖିଲୁ । ଆମେ ଲକ୍ଷ୍ୟ କଲୁ ସ୍ୱାମୀ ବ୍ରହ୍ମାନନ୍ଦ ତାଙ୍କୁ ଖୁବ୍ ସନ୍ତର୍ପଣରେ ଧରିଥାଆନ୍ତି । ଖୁବ୍ ସତର୍କ କଣ୍ଠରେ କହୁଥାଆନ୍ତି—'ଏଠି ପାହାଚ, ଧୀରେ ଉଠନ୍ତୁ । ଏଠି ଧୀରେ ଧୀରେ ଓହ୍ଲାନ୍ତୁ ।' ଠାକୁରଙ୍କର କିନ୍ତୁ ବାହ୍ୟ ଜ୍ଞାନ ନ ଥିବା ଭଳି ଲାଗୁଥାଏ । ଆମେ ଆଗରୁ ଠାକୁରଙ୍କ ବାହ୍ୟଜ୍ଞାନଲୁପ୍ତ ଭାବ-ସମାଧି କଥା ଶୁଣିଥିଲୁ । ସେଥିପାଇଁ ବର୍ତ୍ତମାନ ଠାକୁର ଏପରି ମାତାଲଙ୍କ ଭଳି ଟଳି ଟଳି ଆସୁଥିବାର ଦେଖି ବୁଝିଲୁ ଯେ ସେ ଭାବାବେଶରେ ରହିଛନ୍ତି । ସେହିପରିଭାବରେ ସେ ଘର ଭିତରକୁ ଆସିଲେ ଓ ଗ୍ରେଟ ଖଟଟି ଉପରେ ବସିଲେ । କିଛି ସମୟ ପରେ ପ୍ରକୃତସ୍ଥ ହୋଇ ସେ ମୋର ପରିଚୟ ପଚାରିଲେ ଏବଂ ମୋର ମୁହଁ ଓ ହାତପାଦ ଆଦିର ଲକ୍ଷଣ ପରୀକ୍ଷା କରିବାକୁ ଲାଗିଲେ । କହୁଣୀରୁ ଅଙ୍ଗୁଳି ପର୍ଯ୍ୟନ୍ତ ମୋର ହାତଟିର ଓଜନ ପରୀକ୍ଷା କରିବା ପାଇଁ ସେ କିଛି ସମୟ ମୋର ହାତଟିକୁ ନିଜ ହାତରେ ଧାରଣ କଲେ । ତା'ପରେ କହିଲେ— ବେଶ୍ । ଏହି ଭାବରେ ସେ କ'ଣ ବୁଝିଲେ ତାହା ତାଙ୍କୁ ଜଣା । ଏହାପରେ ସେ ରାମଦୟାଲବାବୁଙ୍କୁ 'ନରେନ୍ କିପରି ଅଛି' ବୋଲି ପଚାରିଲେ ଏବଂ ସେ ଭଲ ଅଛନ୍ତି ବୋଲି ଶୁଣି କହିଲେ, 'ଅନେକ ଦିନ ହେଲା, ସେ ଏଠାକୁ ଆସି ନାହିଁ । ତାକୁ ଦେଖିବାକୁ ଭାରି ଇଚ୍ଛା ହେଉଛି । ଥରେ ତାକୁ ଏଠାକୁ ଆସିବା ପାଇଁ କହି ।' ଧର୍ମ ବିଷୟକ ନାନା କଥାବାର୍ତ୍ତାରେ କେତେ ଘଣ୍ଟା ଖୁବ୍ ଆନନ୍ଦରେ କଟିଗଲା । କ୍ରମେ ଦଶଟା ବାଜିଲା; ଆମେ ସବୁ ଆହାର କଲୁ ଓ ଠାକୁରଙ୍କ ଘରର ପୂର୍ବ ଦିଗକୁ ଯେଉଁ ବାରଣ୍ଡାଟି ଅଛି ସେଠାରେ ଶୋଇଲୁ । ଠାକୁର ଆଉ ସ୍ୱାମୀ ବ୍ରହ୍ମାନନ୍ଦଙ୍କ ପାଇଁ ଘର ଭିତରେ ବିଛଣା ପ୍ରସ୍ତୁତ ହେଲା । ଶୋଇବା ପରେ ଘଣ୍ଟାଏ ଖଣ୍ଡେ ଯାଇଛି କି ନାହିଁ, ଠାକୁର ପିନ୍ଧିବା ଲୁଗା ଖଣ୍ଡିକ ପିଲାଙ୍କ ଭଳି ହାତରେ ଧରି ଘର ଭିତରୁ ବାହାରିଆସି ଆମ ପାଖରେ ପହଞ୍ଚିଲେ । ରାମଦୟାଲବାବୁଙ୍କୁ ସମ୍ବୋଧନ କରି କହିଲେ, 'ଆହେ, ଶୋଇଲଣି କି ?' ଆମେ ଉଭୟେ ଅସ୍ତବ୍ୟସ୍ତ ହୋଇ ବିଛଣାରେ

ଉଠି ବସିଲୁ । କହିଲୁ, 'ଆଜ୍ଞା ! ନା ! ଶୋଇନାହୁଁ ।' ଏହା ଶୁଣି ଠାକୁର କହିଲେ, 'ଦେଖ ! ନରେନ୍ଦ୍ର ଲାଗି ପ୍ରାଣ ଭିତରଟା ଯେପରି ଗାମୁଛା ଚପୁଡ଼ି ଦେଲା ଭଳି କିଏ ଚପୁଡ଼ି ଦେଉଛି ! ଯେପରି ହେଲେ ଆସି ମୋତେ ଥରେ ଦେଖା କରିବାକୁ ତାକୁ କହ । ସେ ଶୁଦ୍ଧସତ୍ତ୍ୱଗୁଣର ଆଧାର, ସାକ୍ଷାତ୍ ନାରାୟଣ । ତାକୁ ମଝିରେ ମଝିରେ ନ ଦେଖିଲେ ରହିପାରୁ ନାହିଁ ।' ରାମଦୟାଲବାବୁ କିଛିଦିନ ଆଗରୁ ଦକ୍ଷିଣେଶ୍ୱର ଯିବା ଆସିବା କରୁଥିଲେ । ସେଥିପାଇଁ ଠାକୁରଙ୍କର ବାଳକସୁଲଭ ଆଚରଣ କଥା ତାଙ୍କୁ ଅଜଣା ନ ଥିଲା । ସେ ଠାକୁରଙ୍କର ଏଭଳି ବାଳକସଦୃଶ ବ୍ୟବହାର ଦେଖି ବୁଝି-ପାରିଲେ ଯେ ଠାକୁର ଭାବାବିଷ୍ଟ ହୋଇଛନ୍ତି । ସେ ଠାକୁରଙ୍କୁ କହିଲେ, 'ରାତି ପାହିଲେ ମୁଁ ଯାଇ ନରେନ୍‌କୁ କହିବି—ସେ ନିଶ୍ଚୟ ଖୁବ୍ ଶୀଘ୍ର ଆସି ଆପଣଙ୍କୁ ଦେଖା କରିବ ।' ଏପରି କେତେ କଥା କହି ସେ ଠାକୁରଙ୍କୁ ଶାନ୍ତ କଲେ । କିନ୍ତୁ ସେହି ରାତିରେ ଠାକୁରଙ୍କର ଉକ୍ତ ଭାବ କୌଣସି ପ୍ରକାରେ ଶାନ୍ତ ହେଲା ନାହିଁ ।··· ତାଙ୍କର ଏଭଳି କାତରତା ଦେଖି ବିସ୍ମିତ ହୋଇ ମୁଁ ଭାବିଲି—ଠାକୁରଙ୍କର କି ଅଦ୍‌ଭୁତ ଭଲପାଇବା ! ଆଉ ଯାହାଙ୍କ ପାଇଁ ଏହାଙ୍କର ପ୍ରାଣ ଏପରି ଛଟପଟ ହେଉଛି, ସେ କେଡ଼େ କଠୋର ! ସେହି ରାତିଟା ଏହି ଭାବରେ କଟିଗଲା । ସକାଳ ହେବାରୁ ଆମେ ନିତ୍ୟକର୍ମ ସାରି ଜଗଦମ୍ବାଙ୍କୁ ଦର୍ଶନ କରି, ଠାକୁରଙ୍କ ଚରଣରେ ପ୍ରଣତ ହୋଇ ବିଦାୟ ନେଇ କଲିକତା ଫେରିଆସିଲୁ ।

୧୮୮୩ ମସିହା । ଦିନେ ଶ୍ରୀଯୁକ୍ତ ବୈକୁଣ୍ଠନାଥ ସାନ୍ୟାଲ ଦକ୍ଷିଣେ-ଶ୍ୱରରେ ଉପସ୍ଥିତ ହୋଇ ଦେଖିଲେ ଯେ ନରେନ୍ଦ୍ରନାଥ କିଛି ଦିନ ହେଲା ଆସିନାହାନ୍ତି ବୋଲି ଠାକୁର ଖୁବ୍ ଉତ୍କଣ୍ଠିତ ହୋଇ ରହିଛନ୍ତି । ବୈକୁଣ୍ଠନାଥଙ୍କ ବର୍ଣ୍ଣନା ଅନୁସାରେ—"ସେଦିନ ଠାକୁରଙ୍କର ମନ ସତେଜ ନରେନ୍ଦ୍ରମୟ ହୋଇ ରହିଛି । ପାଟିରେ ନରେନ୍ଦ୍ରନାଥଙ୍କର ଗୁଣ-କୀର୍ତ୍ତନ ଛଡ଼ା ଆଉ କିଛି କଥା ନାହିଁ । ମୋତେ ସମ୍ବୋଧନ କରି କହିଲେ, 'ଦେଖ ! ନରେନ୍ଦ୍ର ଶୁଦ୍ଧସତ୍ତ୍ୱଗୁଣୀ । ମୁଁ ଦେଖିଛି—ସେ ଅଖଣ୍ଡଙ୍କ ଘରେ ଚାରିଜଣରୁ ଜଣେ ଏବଂ ସପ୍ତର୍ଷିଙ୍କ ମଧ୍ୟରୁ ଜଣେ । ତା'ର କେତେ ଯେ ଗୁଣ,

ତାହାର ଇୟତ୍ତା ନାହିଁ । ଏହିପରି ଗୁଣ ଗାଇ ଗାଇ ଠାକୁର ନରେନ୍‌ଙ୍କୁ ଦେଖିବା ଲାଗି ଖୁବ୍ ବ୍ୟାକୁଳ ହୋଇ ଉଠିଲେ । ପୁତ୍ରର ବିରହରେ ମାତା ଯେପରି କାତର ହୋଇପଡ଼େ, ସେହିପରି ଅଜସ୍ର ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ । ଏହି ଘଟଣାର କିଛିକାଳ ପରେ, ଠାକୁର ମୋତେ ନରେନ୍ଦ୍ରଙ୍କ ସହିତ ପରିଚିତ କରାଇଦେଇଥିଲେ । ଠାକୁରଙ୍କ ସାନ୍ନିଧ୍ୟରେ ରହି ନରେନ୍ଦ୍ର ତାଙ୍କର ଯେଉଁ ଦେବଦୁର୍ଲଭ ପ୍ରେମର ଅଧିକାରୀ ହୋଇଥିଲେ, ତାହା ଭାବିଲେ ବିସ୍ମିତ ହେବାକୁ ହୁଏ । ଏଥିରେ ଅବିଚଳିତ ରହି ସେ ଯେ ଯଥାର୍ଥ ସତ୍ୟଲାଭର ଆଶାରେ ଠାକୁରଙ୍କୁ ପରୀକ୍ଷା କରି ନେବାକୁ ଅଗ୍ରସର ହୋଇ-ଥିଲେ, ଏଥିରୁ ବୁଝାଯାଏ ଯେ ସତ୍ୟାନୁରାଗ ତାଙ୍କ ଭିତରେ କେତେ ଦୂର ପ୍ରବଳ ଥିଲା ।''

ନରେନ୍ଦ୍ର ଯେତେବେଳେ ଦକ୍ଷିଣେଶ୍ୱର ଆସନ୍ତି ଠାକୁର ପ୍ରାୟ ତାଙ୍କୁ ଦେଖିବାକ୍ଷଣି ଭାବାବିଷ୍ଟ ହୋଇପଡ଼ନ୍ତି । ଏହି ଅବସ୍ଥାରେ ତାଙ୍କର ଭଜନ ଶୁଣିବାର ସ୍ପୃହା ହୁଏ । ନରେନ୍ଦ୍ରଙ୍କର ସୁମଧୁର କଣ୍ଠ ଶୁଣିବା ମାତ୍ରେ ହଠାତ୍ ପୁଣି ସମାଧିସ୍ଥ ହୋଇ ପଡ଼ନ୍ତି । ସବଶେଷରେ ନରେନ୍ଦ୍ରଙ୍କର ମୁଖରୁ "ଯୋ କୁଛ ହାୟ ସୋ ତୁହି ହାୟ" ସଙ୍ଗୀତଟି ନ ଶୁଣିବା ପର୍ଯ୍ୟନ୍ତ ତାଙ୍କର ପୂର୍ଣ୍ଣ ପରିତୃପ୍ତି ଆସେ ନାହିଁ । ଠାକୁର ଦିନେ ନରେନ୍ଦ୍ରନାଥଙ୍କୁ ଅଦ୍ୱୈତ ଦର୍ଶନର ପ୍ରତିପାଦିତ ଜୀବବ୍ରହ୍ମର ଐକ୍ୟସୂଚକ ଅନେକ କଥା କହିଥିଲେ । ନରେନ୍ଦ୍ର ଏସବୁ କଥା ମନୋନିବେଶପୂର୍ବକ ଶୁଣିଲା ପରେ ମଧ୍ୟ ହୃଦୟଙ୍ଗମ କରିପାରିଲେ ନାହିଁ । ଠାକୁରଙ୍କ କଥା ସମାପ୍ତ ହେବା ପରେ ହାଜରା ମହାଶୟଙ୍କ* ପାଖରେ ବସି ନରେନ୍ଦ୍ର ଧୂମ୍ରପାନ କରୁ କରୁ ପୁଣି ଥରେ

* ଏହି ହାଜରା ମହାଶୟ ହେଲେ ଶ୍ରୀପ୍ରତାପଚନ୍ଦ୍ର ହାଜରା । ସେ ଥିଲେ ଜଣେ ଶୁଷ୍କ ବେଦାନ୍ତବାଦୀ । ସେ ଦକ୍ଷିଣେଶ୍ୱର ଉଦ୍ୟାନରେ ଅବସ୍ଥାନ କରୁଥିଲେ । ତାଙ୍କର ଧର୍ମ ପ୍ରତି ଯେପରି ଆଗ୍ରହ ଥିଲା, ଅର୍ଥକାମନା ମଧ୍ୟ ସେହିପରି କିଛି କମ୍ ନ ଥିଲା । ତାଙ୍କର ଗୋଟିଏ ସ୍ୱଭାବ ଥିଲା ଯେ ସେ ସର୍ବଦା ନିଷ୍କାମଭାବରେ ଉପାସନା ସମ୍ବନ୍ଧୀୟ ବଡ଼ବଡ଼ କଥା ଲୋକଙ୍କ ଆଗରେ କହି ପ୍ରଶଂସା ପାଇବାକୁ ଉଦ୍ୟମ କରୁଥିଲେ ।

ଏହିସବୁ କଥାର ଆଲୋଚନା ପ୍ରସଙ୍ଗରେ କହିଲେ, "ଏହା କ'ଣ କେବେ ସମ୍ଭବ ହୋଇପାରେ ? ମାଠିଆଟା ଈଶ୍ୱର, କଂସାଟା ଈଶ୍ୱର ଏବଂ ଆମେ ଯାହା ସବୁ ଦେଖୁଛୁ ସବୁ ଈଶ୍ୱର—ଶେଷରେ ଆମେ ସମସ୍ତେ ଈଶ୍ୱର !" ହାଜରା ମହାଶୟ ମଧ୍ୟ ନରେନ୍ଦ୍ରଙ୍କ ସଙ୍ଗେ ଏକମତ ହେଲେ ଏବଂ ଦୁହିଁଙ୍କ ମଧ୍ୟରେ ହାସ୍ୟର ରୋଳ ଉଠିଲା ।

ଏହି ହାଜରା ମହାଶୟଙ୍କ ସହିତ ନରେନ୍ଦ୍ରନାଥ ଈଶ୍ୱରଙ୍କ ସମ୍ବନ୍ଧରେ କଥା କହି ହୋହୋ ହସୁଥିବାର ଶବ୍ଦ ତେଣେ ଠାକୁରଙ୍କର କର୍ଣ୍ଣପଥାରୂଢ଼ ହେଲା । ଶ୍ରୀଶ୍ରୀଠାକୁର ସେତେବେଳେ ଅର୍ଦ୍ଧବାହ୍ୟଦଶାରେ ରହିଥିଲେ । ନରେନ୍ଦ୍ରଙ୍କୁ ହସୁଥିବାର ଶୁଣି ପିଲାଙ୍କ ଭଳି ପିନ୍ଧିଥିବା ଲୁଗାଟିକୁ କାଖରେ ଜାକି ସେ ଘର ଭିତରୁ ବାହାରି ଆସିଲେ । ତା'ପରେ ନିଜେ ହସି ହସି ପଚାରିଲେ—

"ତୁମେ ସବୁ କ'ଣ କଥା ହେଉଥିଲ ରେ ?" ଏତିକି କହି ସେ ନରେନ୍ଦ୍ରଙ୍କୁ ସ୍ପର୍ଶ କରି ସମାଧିସ୍ଥ ହୋଇଗଲେ ।

ସେଦିନର ଘଟଣା ସମ୍ପର୍କରେ ନରେନ୍ଦ୍ର ପରେ କହୁଥିଲେ—"ସେଦିନ ଠାକୁରଙ୍କର ଅଦ୍‌ଭୁତ ସ୍ପର୍ଶରେ ମୁହୂର୍ତ୍ତକ ମଧ୍ୟରେ ମୋର ଭାବାନ୍ତର ହୋଇଗଲା । ସ୍ତମ୍ଭିତ ହୋଇ ସତକୁ ସତ ଦେଖିଲି —ବିଶ୍ୱବ୍ରହ୍ମାଣ୍ଡରେ ଈଶ୍ୱର ଭିନ୍ନ ଆଉ କିଛି ନାହିଁ । ଏଭଳି ଦେଖି ମଧ୍ୟ ନୀରବ ରହିଲି । ଭାବିଲି— ଦେଖାଯାଉ କେତେବେଳ ଯାଏ ଏହି ଭାବ ରହୁଛି ! କିନ୍ତୁ ସେହି ଭାବର ଘୋର ସେଦିନ ସାମାନ୍ୟତମ ମଧ୍ୟ କମିଲା ନାହିଁ । ଘରକୁ ଫେରିଲି । ସେଠାରେ ମଧ୍ୟ ସେହି ଏକା କଥା । ଯାହା କିଛି ଆଖିରେ ପଡ଼ିଲା ସେସବୁ ସେହି ଏକା ଭଳି ବୋଧ ହେଲା । ଖାଇବାକୁ ବସିଲି । ଦେଖିଲି—ଅନ୍ନ, ଥାଳି, ଯେ ପରିବେଷଣ କରୁଛନ୍ତି, ସେ, ସମସ୍ତ ଏବଂ ମୁଁ ନିଜେ ମଧ୍ୟ ତାଙ୍କ ବ୍ୟତୀତ ଅନ୍ୟ କିଛି ନୁହେଁ । ଗୁଣ୍ଡାଏ ଦୁଇଗୁଣ୍ଡା ପାଟିକୁ ନେଇ ସ୍ଥିର ହୋଇ ବସି ରହିଲି । ... ସବୁବେଳେ ଅଦ୍‌ଭୁତ ଏକ ଅନୁଭୂତିର ନିଶାରେ ଆଚ୍ଛନ୍ନ ହୋଇ ରହିଲି । ରାସ୍ତାରେ ଚାଲୁଛି, ଗାଡ଼ିଟିଏ ଆସିବାର ଦେଖୁଛି, କିନ୍ତୁ ଅନ୍ୟ ସମୟରେ ଯେପରି ଗାଡ଼ିଟା କାଳେ ମୋ ଆଡ଼କୁ ମାଡ଼ି ଆସିବ

ବା ମୋ ଉପରକୁ ମାଡ଼ିଯିବ ବୋଲି ଆଶଙ୍କା ହୁଏ, ମନରେ ସେପରି କିଛି ହେଲ ନାହିଁ; ଛୁଇଁ ଯିବାକୁ ମଧ୍ୟ ପ୍ରବୃତ୍ତି ହେଲ ନାହିଁ । ମନେ ହେଉଥାଏ— ଗାଡ଼ି ଯାହା ମୁଁ ବି ତାହା... ଏହି ଭାବରେ କିଛିଦିନ ପର୍ଯ୍ୟନ୍ତ ଏହି ବିଷମ ଭାବର ଆବେଶ ଓ ଆଚ୍ଛନ୍ନତାର ହାତରୁ ପରିତ୍ରାଣ ପାଇଲି ନାହିଁ । ଯେତେବେଳେ ପ୍ରକୃତିସ୍ଥ ହେଲି, ସେତେବେଳେ ଭାବିଲି, ଏହା ହିଁ ଅଦ୍ୱୈତ-ବିଜ୍ଞାନର ଆଭାସ । ତେବେ ତ ଶାସ୍ତ୍ରରେ ଏ ସମ୍ବନ୍ଧରେ ଯାହା ଲେଖା ହୋଇଛି, ତାହା ମିଥ୍ୟା ନୁହେଁ । ତଦବଧି ଅଦ୍ୱୈତତତ୍ତ୍ୱ ଉପରେ ଆଉ କେବେ ହେଲେ ସନ୍ଦେହାନ ହୋଇପାରି ନାହିଁ ।

୧୮୮୪ ଖ୍ରୀଷ୍ଟାବ୍ଦର ପ୍ରଥମ ଭାଗରେ ବି. ଏ. ପରୀକ୍ଷାର ଫଳାଫଳ ଜାଣିବାର କିଛିଦିନ ପୂର୍ବରୁ ହଠାତ୍ ଦିନେ ରାତି ପ୍ରାୟ ଦଶଟା ବେଳେ ନରେନ୍ଦ୍ରନାଥଙ୍କ ପିତା ବିଶ୍ୱନାଥ ହୃଦ୍-ବେଗରେ ପ୍ରାଣତ୍ୟାଗ କଲେ । ନରେନ୍ଦ୍ରନାଥ ଅନୁସନ୍ଧାନ କରି ବୁଝିଲେ ଯେ ସେମାନଙ୍କର ସାଂସାରିକ ଅବସ୍ଥା ଖୁବ୍ ଶୋଚନୀୟ । ବାପା କିଛି ରଖିଯିବା ଦୂରେ ଥାଉ, ଆୟ ଅପେକ୍ଷା ନିତ୍ୟ ଅଧିକ ବ୍ୟୟ କରି କରି କିଛି ଋଣ କରି ଯାଇଛନ୍ତି । ସେତିକି ଶୁଝିପାରି ନାହାନ୍ତି । ଆତ୍ମୀୟବର୍ଗ ତାଙ୍କ ବାପାଙ୍କ ସହାୟତାରେ ନିଜ ନିଜର ଉନ୍ନତିସାଧନା କରିସାରି ବର୍ତ୍ତମାନ ଏହି ଅସହାୟ ଦୁଃସମୟର ସୁଯୋଗ ନେଇ ଶତ୍ରୁତା କରୁଛନ୍ତି ଏବଂ ତାଙ୍କର ଭିଟାବାଡ଼ିରୁ ସେମାନଙ୍କୁ ଉଚ୍ଛେଦ କରିବାର ଉଦ୍ୟମ ମଧ୍ୟ କରୁଛନ୍ତି । ସେ ଦେଖିଲେ ଯେ ଦୁଇଦିନ ପୂର୍ବରୁ ଯେଉଁମାନେ ତାଙ୍କୁ କୌଣସି ବିଷୟରେ କିଛିମାତ୍ର ସହାୟତା କରିବାର ଅବସର ପାଇଲେ ନିଜକୁ ଧନ୍ୟ ମନେ କରୁଥିଲେ, ସେମାନେହିଁ ବର୍ତ୍ତମାନ ତାଙ୍କୁ ଦେଖିବା ମାତ୍ରେ ମୁହଁ ଫେରାଇ ନେଉଛନ୍ତି ଏବଂ କ୍ଷମତା ଥିଲେ ସୁଦ୍ଧା ସାହାଯ୍ୟ କରିବାକୁ ପଶ୍ଚାତ୍‌ପଦ ହେଉଛନ୍ତି ।

ନରେନ୍ଦ୍ରନାଥ ନିଜ ମୁହଁରେ ସେହି ସମୟର କଥା କହିଛନ୍ତି— "ଏତେ ଦୁଃଖକଷ୍ଟରେ ମଧ୍ୟ ଏତେ ଦିନ ଆସ୍ତିକ୍ୟବୁଦ୍ଧିର ବିଲୋପ ହୋଇନାହିଁ ଅଥବା 'ଈଶ୍ୱର ମଙ୍ଗଳମୟ' ଏ କଥାରେ ସନ୍ଦେହାନ ହୋଇନାହିଁ । ସକାଳେ ନିଦ ଭାଙ୍ଗିଲେ ତାଙ୍କୁ ସ୍ମରଣମନନପୂର୍ବକ ତାଙ୍କର ନାମ କରିକରି

ଶଯ୍ୟାତ୍ୟାଗ କରେ ଏବଂ ଅନ୍ତରରେ ଆଶା ପୋଷଣ କରି ଉପାର୍ଜନର ଉପାୟ ଅନ୍ୱେଷଣରେ ଏଣେତେଣେ ଘୂରିବୁଲେ । ଦିନେ ଏହିପରି ସକାଳେ ନିଦରୁ ଉଠୁଥାଏ, ପାଖ ଘରୁ ମୋର ମାଆ ( ନରେନ୍ଦ୍ରଙ୍କର ଜନନୀ ଭୁବନେଶ୍ୱରୀ ଦେବୀ) କହିଉଠିଲେ— 'ଚୁପ୍ କର ଟୋକା ! ପିଲାଦିନୁ ଖାଲି ଭଗବାନ ଭଗବାନ !··· ଭଗବାନ ତ ଆମର ସବୁ କରିଦେଲେ !!' ମାଆଙ୍କର କଥା ଶୁଣି ମନରେ ବିଷମ ଆଘାତ ହେଲା । ସ୍ତମ୍ଭିତ ହୋଇ ଭାବି ଲାଗିଲି—ଭଗବାନ କ'ଣ ସତରେ ଅଛନ୍ତି ? ଯଦି ବା ଥାଆନ୍ତି, ସେ କ'ଣ ମଣିଷର ସକରୁଣ ପ୍ରାର୍ଥନା ଶୁଣନ୍ତି ? ... ଭଗବାନ ଯଦି ଦୟାମୟ ଏବଂ ମଙ୍ଗଳମୟ, ତେବେ ଦୁର୍ଭିକ୍ଷର କରାଳ କବଳରେ ପଡ଼ି ଲକ୍ଷ ଲକ୍ଷ ଲୋକ ମୁଠାଏ ଅନ୍ନ ନ ପାଇ ମରନ୍ତି କାହିଁକି ?··· ଈଶ୍ୱରଙ୍କ ପ୍ରତି ପ୍ରଚଣ୍ଡ ଅଭିମାନରେ ହୃଦୟ ପୂର୍ଣ୍ଣ ହୋଇଗଲା । ସେହି ଅବସରରେ ସନ୍ଦେହ ମଧ୍ୟ ଆସି ହୃଦୟକୁ ଅଧିକାର କରି ବସିଲା ।··· ଏହି ଭାବରେ ଦିନ ପରେ ଦିନ ଗଡ଼ି ଚାଲିଲା ଏବଂ ଚିତ୍ତ ନିରନ୍ତର ସଂଶୟରେ ଦୋଳାୟମାନ ହେବାରୁ ଶାନ୍ତି ସୁଦୂରପରାହତ ହୋଇ ରହିଲା; ସାଂସାରିକ ଅଭାବର ମଧ୍ୟ ହ୍ରାସ ହେଲା ନାହିଁ ।

"ଗ୍ରୀଷ୍ମ ପରେ ଆସିଲା ବର୍ଷା । ଏବେ ମଧ୍ୟ ପୂର୍ବଭଳି କର୍ମର ଅନୁସନ୍ଧାନରେ ଘୂରି ବୁଲୁଥାଏ । ଦିନେ ସକାଳୁ ସନ୍ଧ୍ୟା ପର୍ଯ୍ୟନ୍ତ ଉପବାସରେ ବୃଷ୍ଟିରେ ଭିଜି ଭିଜି ରାତିରେ ଅବସନ୍ନ ପଦରେ ଓ ତତୋଽଧିକ ଅବସନ୍ନ ମନ ନେଇ ଘରକୁ ଫେରୁଥାଏ । ବାଟ ମଝିରେ ସହସା ଶରୀରରେ ଏତେ କ୍ଲାନ୍ତି ଅନୁଭବ କଲି ଯେ ଆଉ ଗୋଟାଏ ପାଦ ମଧ୍ୟ ଅଗ୍ରସର ହୋଇ ନ ପାରି ପାଖ ଘରର ଦାଣ୍ଡ ଚଟାଣରେ ଜଡ଼ ପଦାର୍ଥଟିଏ ଭଳି ପଡ଼ି ରହିଲି । ....(ଅଳ୍ପ କେତୋଟି ମୁହୂର୍ତ୍ତ ପରେ) ହଠାତ୍ ଉପଲବ୍ଧି କଲି— କୌଣସି ଏକ ଦୈବଶକ୍ତି ପ୍ରଭାବରେ ଗୋଟିକ ପରେ ଗୋଟିଏ ହୋଇ ଭିତରର ଅନେକଗୁଡ଼ିଏ ପର୍ଦ୍ଦା ସତେ ଯେପରି ଉତ୍ତୋଳିତ ହୋଇଗଲା ଏବଂ ଶିବ (ମଙ୍ଗଳାଙ୍କ) ସଂସାରରେ ଅଶିବ (ଅମଙ୍ଗଳ) କାହିଁକି, ଈଶ୍ୱରଙ୍କର କଠୋର ନ୍ୟାୟପରାୟଣତା ଓ ଅପାର-କରୁଣାର ସାମଞ୍ଜସ୍ୟ ପ୍ରଭୃତି ଯେଉଁସବୁ ବିଷୟ

ନିର୍ଣ୍ଣୟ କରି ନ ପାରି ମନ ଏତେ ଦିନ ଧରି ନାନା ସନ୍ଦେହରେ ଅକୁଳ ହେଉଥିଲା, ସେହିସବୁ ବିଷୟର ସ୍ଥିର ମୀମାଂସା ମୋର ଅନ୍ତରର ନିବିଡ଼ତମ ପ୍ରଦେଶରେ ଦେଖିବାକୁ ପାଇଲି । ଆନନ୍ଦରେ ଉତ୍ଫୁଲ୍ଲ ହୋଇ ଉଠିଲି ।... ସେଡିକବେଳୁ ସଂସାରର ପ୍ରଶଂସା ଓ ନିନ୍ଦାବାଦରେ ସମାନ ଉଦାସୀନ ରହିଲି ଏବଂ ଇତର ସାଧାରଣଙ୍କ ସଦୃଶ ଅର୍ଥୋପାର୍ଜନ କରି ପରିବାରବର୍ଗଙ୍କର ସେବା ଓ ଭୋଗସୁଖରେ କାଳଯାପନ କରିବା ନିମିତ୍ତ ଯେ ମୋର ଜନ୍ମ ହୋଇ ନାହିଁ—ଏକଥାରେ ଦୃଢ଼ ବିଶ୍ୱାସୀ ହୋଇ ପିତାମହଙ୍କ* ପରି ସଂସାର-ତ୍ୟାଗ ନିମିତ୍ତ ଗୋପନରେ ପ୍ରସ୍ତୁତ ହେବାକୁ ଲାଗିଲି । ଯିବାର ଦିନ ସ୍ଥିର ହେବାପରେ ସମ୍ବାଦ ପାଇଲି ଯେ ଠାକୁର ସେହିଦିନ କଲିକତାର ଜଣେ ଭକ୍ତଙ୍କ ଗୃହକୁ ଆସୁଛନ୍ତି । ଭାବିଲି—ଭଲ ହେଲା, ଗୁରୁଦର୍ଶନ କରି ଚିରକାଳ ପାଇଁ ଗୃହତ୍ୟାଗ କରିବି । ଠାକୁରଙ୍କ ସଙ୍ଗେ ସାକ୍ଷାତ ହେବା ମାତ୍ରେ ସେ ଜିଦ୍ଧରି ବସିଲେ—'ତୋତେ ଆଜି ମୋ ସହିତ ଦକ୍ଷିଣେଶ୍ୱର ଯିବାକୁ ହେବ ।' ଅଗତ୍ୟା ତାଙ୍କ ସହିତ ଗଲି । ଗାଡ଼ି ଭିତରେ ତାଙ୍କ ସହିତ ବିଶେଷ କିଛି କଥାବାର୍ତ୍ତା ହେଲା ନାହିଁ । ଦକ୍ଷିଣେଶ୍ୱରରେ ପହଞ୍ଚି ଅନ୍ୟ ସମସ୍ତଙ୍କ ସହିତ କିଛି ସମୟ ତାଙ୍କ ଘର ଭିତରେ ବସିଥାଏ—ଏହି ସମୟରେ ଠାକୁରଙ୍କର ଭାବାବେଶ ହୋଇଗଲା । ଦେଖୁ ଦେଖୁ ସେ ସହସା ମୋ ନିକଟକୁ ଆସି ମୋତେ ସସ୍ନେହରେ ଧାରଣ କରି ସଜଳ ନୟନରେ ଗାଇ ଉଠିଲେ—

'କଥା କହିତେ ଡରାଇ ନା କହିତେ ଓ ଡରାଇ
(ଆମାର) ମନେ ସନ୍ଦ ହୟ,
ବୁଝି ତୋମାୟ ହାରାଇ—ହା—ରାଇ !'

(ହାୟ ସର୍ଖା ! କଥା କହିବାକୁ ଡର ମାଡ଼େ । ପୁଣି ନ କହିବାକୁ ମଧ୍ୟ ଡର ମାଡ଼େ । ମୋର ମନରେ ସନ୍ଦେହ ହୁଏ—କାଳେ ତୁମକୁ ହରାଇବି ! )

---

* ଶ୍ରୀଦୁର୍ଗାଚରଣ ଦତ୍ତ । ସେ ପଚିଶବର୍ଷ ବୟସରେ ସଂସାର ତ୍ୟାଗ କରି ସନ୍ନ୍ୟାସଧର୍ମ ଅବଲମ୍ବନ କରିଥିଲେ ।

"ଅନ୍ତରର ପ୍ରବଳ ଭାବରାଶି ଏତେ ବେଳଯାଏ ସଯତ୍ନ ରୁଦ୍ଧ କରି ରଖିଥିଲି । ଆଉ ବେଗ ସମ୍ବରଣ କରିପାରିଲି ନାହିଁ । ଠାକୁରଙ୍କ ସଦୃଶ ମୋର ବକ୍ଷ ମଧ୍ୟ ନୟନର ଧାରରେ ପ୍ଳାବିତ ହେବାକୁ ଲାଗିଲା । ନିଶ୍ଚିତ ଭାବରେ ବୁଝିଲି ଯେ ଠାକୁର ସବୁକଥା ଜାଣିପାରିଛନ୍ତି ।... ପରେ ରାତିରେ ଅନ୍ୟ ସମସ୍ତଙ୍କୁ ଆଡ଼େଇ ଦେଇ ମତେ ନିକଟକୁ ଡାକି କହିଲେ, ମୁଁ ଜାଣେ, ତୁ ମା'ଙ୍କ କାର୍ଯ୍ୟ ପାଇଁ ଆସିଛୁ । ସଂସାରରେ କେବେ ହେଲେ ରହିପାରିବୁ ନାହିଁ । କିନ୍ତୁ ମୁଁ ଯେତେଦିନ ଅଛି, ସେତେଦିନ ମୋ ପାଇଁ ରହିଥା ।' ଏତିକି କହି ଠାକୁର ହୃଦୟର ଆବେଗରେ ରୁଦ୍ଧକଣ୍ଠରେ ପୁନରାୟ ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

"ଠାକୁରଙ୍କ ନିକଟରୁ ବିଦାୟ ଗ୍ରହଣ କରି ତା' ପରଦିନ ଘରକୁ ଫେରିଲି । ସଙ୍ଗେ ସଙ୍ଗେ ପୁଣି ସଂସାରର ଶତ ଚିନ୍ତା ଆସି ମନକୁ ଅଧିକାର କଲା । କିଛିକାଳ ପରେ ମନେ ହେଲା—ଠାକୁରଙ୍କ କଥା ତ ଈଶ୍ୱର ଶୁଣନ୍ତି । ତାଙ୍କୁ ଅନୁରୋଧ କରି ମୋର ମାଆ ଓ ଭାଇ ଇତ୍ୟାଦିଙ୍କର ଯେପରି ଅନ୍ନବସ୍ତ୍ରର କଷ୍ଟ ଦୂର ହୋଇପାରିବ, ସେଥିପାଇଁ ପ୍ରାର୍ଥନା କରାଇ ନେବି । ମୋ ଲାଗି ଏପରି କରିବାକୁ ସେ କେବେ ହେଲେ ଅସ୍ୱୀକାର କରିବେ ନାହିଁ । ଏପରି ସ୍ଥିର କରି ଦକ୍ଷିଣେଶ୍ୱରକୁ ଗଲି । ନଛୋଡ଼ବନ୍ଧା ହୋଇ ଠାକୁରଙ୍କୁ ଧରି ବସିଲି—'ମୋ ମାଆଭାଇଙ୍କର ଆର୍ଥିକ କଷ୍ଟ ନିବାରଣ ନିମିତ୍ତ ଆପଣ ନିଶ୍ଚୟ ମାଆଙ୍କୁ ଜଣାଇବେ ।' ଠାକୁର କହିଲେ—'ଆରେ ! ମୁଁ ଯେ ଏସବୁ କଥା କହିପାରେ ନାହିଁ । ତୁ ଜଣାଉନୁ କାହିଁକି ? ମା'ଙ୍କୁ ମାନୁନୁ—ସେଥିପାଇଁ ତୋର ଏତେ କଷ୍ଟ ।' ମୁଁ କହିଲି—'ମୁଁ ତ ମା'ଙ୍କୁ ଜାଣେନା । ଆପଣ ମୋ ଲାଗି ମା'ଙ୍କୁ ଜଣାନ୍ତୁ । ଜଣାଇବାକୁ ହିଁ ହେବ । ମୁଁ କୌଣସି ପ୍ରକାରେ ଆପଣଙ୍କୁ ଛାଡ଼ିବି ନାହିଁ ।' ଠାକୁର ସସ୍ନେହରେ କହିଲେ, ଆରେ, ମୁଁ ଯେ କେତେଥର କହିଛି—ମା ! ନରେନ୍ଦ୍ରର ଦୁଃଖ କଷ୍ଟ ଦୂର କର । ତୁ ମା'ଙ୍କୁ ମାନୁନାହୁଁ । ସେଇଥିପାଇଁ ତ ମା' ଶୁଣୁନାହାନ୍ତି । ଆଚ୍ଛା, ଆଜି ମଙ୍ଗଳବାର, ମୁଁ କହୁଛି—ଆଜି ରାତିରେ 'କାଳୀ-ଘର'କୁ ମା'ଙ୍କୁ ପ୍ରଣାମ କରି ତୁ ଯାହା ଚାହିଁବୁ ମା' ତୋତେ ତାହା

ଦେବେ । ମା' ମୋର ଚିନ୍ମୟୀ ବ୍ରହ୍ମଶକ୍ତି, ଇଚ୍ଛାରେ ଜଗତ ପ୍ରସବ କରିଛନ୍ତି । ସେ ଇଚ୍ଛା କଲେ କ'ଣ ନ କରିପାରନ୍ତି !'

"ଦୃଢ଼ ବିଶ୍ୱାସ ହେଲା, ଠାକୁର ଯେତେବେଳେ ଏପରି କହୁଛନ୍ତି, ମାଆଙ୍କୁ ପ୍ରାର୍ଥନା କଲେ ନିଶ୍ଚୟ ମୋର ସମସ୍ତ ଦୁଃଖର ଅବସାନ ହେବ । ପ୍ରବଳ ଉତ୍କଣ୍ଠାରେ ରାତିର ପ୍ରତୀକ୍ଷା କରିବାକୁ ଲାଗିଲି । କ୍ରମେ ରାତି ହେଲା । ରାତି ପ୍ରହରକ ପରେ ଠାକୁର ମୋତେ ଶ୍ରୀମନ୍ଦିରକୁ ଯିବାକୁ ନିର୍ଦ୍ଦେଶ ଦେଲେ । ଯାଉ ଯାଉ ଯେପରି ଏକ ପ୍ରଗାଢ଼ ନିଶାରେ ସମାଚ୍ଛନ୍ନ ହୋଇ ପଡ଼ିଲି । ପାଦ ଟଳିବାକୁ ଲାଗିଲା । ମା'ଙ୍କୁ ସତକୁ ସତ ଦେଖିବି ଓ ତାଙ୍କର ଶ୍ରୀମୁଖରୁ ବାଣୀ ଶୁଣିବାକୁ ପାଇବି, ଏହିଭଳି ସ୍ଥିର ବିଶ୍ୱାସରେ ମନ ଅନ୍ୟ ସମସ୍ତ ବିଷୟ ଭୁଲି ଏକାନ୍ତ ଏକାଗ୍ର ଓ ତନ୍ମୟ ହୋଇ ଏହି କଥା ହିଁ ଭାବି-ଲାଗିଲା । ମନ୍ଦିରରେ ଉପସ୍ଥିତ ହୋଇ ଦେଖିଲି—ସତକୁ ସତ ମା' ଚିନ୍ମୟୀ, ବାସ୍ତବିକ ଜୀବିତା ଏବଂ ଅନନ୍ତ ପ୍ରେମ ଓ ସୌନ୍ଦର୍ଯ୍ୟର ପ୍ରସ୍ରବଣସ୍ୱରୂପିଣୀ । ଭକ୍ତି ଓ ପ୍ରେମରେ ହୃଦୟ ଉଚ୍ଛ୍ୱସିତ ହୋଇଗଲା । ବିହ୍ୱଳ ହୋଇ ବାରମ୍ବାର ପ୍ରଣାମ କରୁ କରୁ କହିବାକୁ ଲାଗିଲି, 'ମା, ବିବେକ ଦିଅ, ବୈରାଗ୍ୟ ଦିଅ, ଜ୍ଞାନ ଦିଅ, ଭକ୍ତି ଦିଅ—ଯଦ୍ଦ୍ୱାରା ମୁଁ ତୁମର ନିତ୍ୟ ଅବାଧ ଦର୍ଶନ ଲାଭ କରିପାରିବି, ସେହିପରି କରିଦିଅ ମା !' ଶାନ୍ତିରେ ପ୍ରାଣ ଆପ୍ଲୁତ ହୋଇଗଲା, ଜଗତ-ସଂସାର ନିଃଶେଷରେ ଅନ୍ତର୍ହିତ ହୋଇ ଏକମାତ୍ର ମା' ହିଁ ହୃଦୟକୁ ପୂର୍ଣ୍ଣ କରି ରହିଲେ ।

"ଠାକୁରଙ୍କ ପାଖକୁ ଫେରିବା ମାତ୍ରେ ସେ ପଚାରିଲେ, 'କିରେ ! ମା'ଙ୍କ ପାଖରେ ସାଂସାରିକ ଅଭାବ ଦୂର କରିବା ପାଇଁ ପ୍ରାର୍ଥନା କଲୁ ତ ? ତାଙ୍କ ପ୍ରଶ୍ନରେ ଚମକିତ ହୋଇ କହିଲି, 'ନାହିଁ ଆଜ୍ଞା ! ଭୁଲି ଗଲି । କ'ଣ ହେବ ! ବର୍ତ୍ତମାନ ପୁଣି କ'ଣ କରିବି ?' ସେ କହିଲେ, 'ଯା ଯା, ଫେରି ଯା । ମାଆଙ୍କୁ ଏଇ କଥା ଜଣେଇଆ ।'

"ପୁଣି ଥରେ ମନ୍ଦିରକୁ ଗଲି ଏବଂ ମା'ଙ୍କ ସମ୍ମୁଖରେ ଉପସ୍ଥିତ ହେଲାମାତ୍ରେ ପୁଣିଥରେ ମୋହିତ ହୋଇଗଲି । ସବୁକଥା ଭୁଲିଗଲି । ବାରମ୍ବାର ପ୍ରଣାମ କରି ସେହି ଗୋଟିଏ କଥା ପ୍ରାର୍ଥନା କରିବସିଲି—'ମା ! ମା ! ମୋତେ ଜ୍ଞାନ ଦିଅ, ବିବେକ ଦିଅ ।'

"ମା'ଙ୍କୁ ଏହିପରି ପ୍ରାର୍ଥନା କରି ଠାକୁରଙ୍କ ପାଖକୁ ଫେରିଲି । ଠାକୁର ହସି ହସି ପଚାରିଲେ, 'କିରେ ! ଏଥର କହିଲୁ ତ ?' ପୁଣି ଥରେ ଚମତ୍କୃତ ହୋଇ କହିଲି, 'ନାହିଁ ଆଜ୍ଞା ! ମା'ଙ୍କୁ ଦେଖିବା ମାତ୍ରେ କିପରି ଏକ ଦୈବଶକ୍ତି ପ୍ରଭାବରେ ସବୁକଥା ଭୁଲି କେବଳ ଜ୍ଞାନଭକ୍ତିଲାଭର କଥା ହିଁ କହିଲି । ଏବେ କ'ଣ ହେବ ?'

"ଠାକୁର କହିଲେ, 'ଦୂର୍ ଟୋକା ! ନିଜକୁ ଟିକିଏ ସମ୍ଭାଳି ନେଇ ଏତିକି ପ୍ରାର୍ଥନା କରିପାରୁନୁ ? ଯା, ଆଉ ଥରେ ଯାଇ ମା'ଙ୍କୁ ଏ କଥାଟି ଜଣେଇ ଦେଇ ଆ । ଯା—ଯା—ଶୀଘ୍ର ଯା ।'

"ଆଉ ଥରେ ଗଲି; କିନ୍ତୁ ମନ୍ଦିରଟିରେ ପ୍ରବେଶ କରିବା ମାତ୍ରେ ଦାରୁଣ ଲଜ୍ଜା ଆସି ହୃଦୟକୁ ଅଧିକାର କଲା । ଭାବିଲି, ଏ କି ତୁଚ୍ଛ କଥା ମୁଁ ମା'ଙ୍କୁ କହିବାକୁ ଆସିଛି ! ଠାକୁର ଯେପରି କହନ୍ତି —ରାଜାଙ୍କ ପ୍ରସନ୍ନତା ଲାଭ କରିବା ପରେ ତାଙ୍କ ପାଖରେ ଲାଉ କଖାରୁ ଭିକ୍ଷା କରିବା କେଡ଼େ ନିର୍ବୁଦ୍ଧିତା ! ଏପରି ହୀନ ବୁଦ୍ଧି ମୋର ! ଲଜ୍ଜାରେ, ଘୃଣାରେ ପୁନଃ ପୁନଃ ପ୍ରଣାମ କରୁକରୁ କହିବାକୁ ଲାଗିଲି—'ଅନ୍ୟ କିଛି ଚାହେଁ ନାହିଁ ମା ! କେବଳ ଜ୍ଞାନ ଭକ୍ତି ଦିଅ ।'

"ମନ୍ଦିର ବାହାରକୁ ଆସି ମନେ ହେଲା—ଏହା ନିଶ୍ଚୟ ଠାକୁରଙ୍କ ଖେଳ । ନଚେତ୍ ତିନି ତିନିଥର ମା'ଙ୍କ ନିକଟକୁ ଆସି ମଧ୍ୟ କିଛି କହିପାରିଲି ନାହିଁ କାହିଁକି ? ଅତଃପର ତାଙ୍କୁ ଧରି ବସିଲି—ଆପଣ ହିଁ ନିଶ୍ଚିତଭାବରେ ମୋତେ ଏପରି ଭୁଲାଇ ଦେଇଛନ୍ତି । ବର୍ତ୍ତମାନ ଆପଣଙ୍କୁ ହିଁ କହିବାକୁ ହେବ—ଯେପରି ମୋର ମା' ଆଉ ଭାଇମାନଙ୍କର ଖାଇବାପିନ୍ଧିବାର ଅଭାବ ନ ରହେ !' ସେ କହିଲେ, 'ଆରେ ! ମୁଁ ଯେ କାହା ପାଇଁ ଏପରି ପ୍ରାର୍ଥନା କେବେହେଲେ କରିପାରି ନାହିଁ । ମୋର ମୁହଁରୁ ଏପରି କଥା ଯେ ଆଦୌ ବାହାରିପାରିବ ନାହିଁ । ତୋତେ କହିଲି—ମା'ଙ୍କ ପାଖରୁ ଯାହା ଚାହିଁବୁ ତାହା ହିଁ ପାଇବୁ । ତୁ ତ ମାଗିପାରିଲୁ ନାହିଁ ! ତୋର ଅଦୃଷ୍ଟରେ ସଂସାରସୁଖ ନାହିଁ । ମୁଁ ଆଉ କ'ଣ କରିବି କହ !' ସେହି କଥା ଶୁଣି ମୁଁ କହିଲି, ଏକଥା ହୋଇପାରିବ ନାହିଁ ଆଜ୍ଞା ! ଆପଣଙ୍କୁ ମୋ ପାଇଁ ଏତିକି

କଥା କହିବାକୁ ପଡ଼ିବ । ମୋର ଦୃଢ଼ବିଶ୍ୱାସ—ଆପଣ ଯଦି କହିବେ, ସେମାନଙ୍କର ତା'ହେଲେ ଆଉ ଏ କଷ୍ଟ ରହିବ ନାହିଁ ।' ଏହିପରି ଯେତେ-ବେଳେ ତାଙ୍କୁ କୌଣସି ପ୍ରକାରେ ଛାଡ଼ିଲି ନାହିଁ, ସେତେବେଳେ ସେ କହିଲେ, 'ଆଚ୍ଛା ଯା, ସେମାନଙ୍କର ମୋଟା ଭାତ ଆଉ ଲୁଗାର ଅଭାବ କେବେ ହେବ ନାହିଁ ।'

ନରେନ୍ଦ୍ରଙ୍କ ଜୀବନରେ ଏହା ଯେ ଗୋଟିଏ ବିଶେଷ ଘଟଣା, ତାହା କହିବା ବାହୁଲ୍ୟ ମାତ୍ର । ଈଶ୍ୱରଙ୍କୁ ମାତୃଭାବରେ ଓଁ ପ୍ରତୀକ ବା ପ୍ରତିମା ଭିତରେ ଉପାସନା କରିବାର ଗୂଢ଼ ମର୍ମ ଏତେଦିନ ପର୍ଯ୍ୟନ୍ତ ତାଙ୍କର ହୃଦୟଙ୍ଗମ ହୋଇ ନ ଥିଲା । ମନ୍ଦିର ଭିତରେ ପ୍ରତିଷ୍ଠିତ ଦେବଦେବୀ ମୂର୍ତ୍ତିଗୁଡ଼ିକୁ ସେ ଏହା ପୂର୍ବରୁ ଅବଜ୍ଞା କରିବା ଛଡ଼ା କେବେହେଲେ ଭକ୍ତି ସହକାରେ ଦର୍ଶନ କରିପାରି ନ ଥିଲେ । ବର୍ତ୍ତମାନଠାରୁ ଏଭଳି ଉପାସନାର ସମ୍ୟକ୍ ରହସ୍ୟ ତାଙ୍କ ହୃଦୟରେ ପ୍ରତିଭାସିତ ହୋଇ ତାଙ୍କର ଆଧ୍ୟାତ୍ମିକ ଜୀବନରେ ଅଧିକତର ପୂର୍ଣ୍ଣତା ଓ ପ୍ରସାର ଆନୟନ କଲା ।

ଠାକୁର ଯୋଗଦୃଷ୍ଟି ସହାୟତାରେ ଯେଉଁସବୁ ଭକ୍ତମାନଙ୍କର ଦକ୍ଷିଣେଶ୍ୱରକୁ ଆସିବା କଥା ବହୁ ପୂର୍ବରୁ ଜାଣିପାରିଥିଲେ, ସେମାନେ ସମସ୍ତେ ୧୮୮୪ ମସିହା ଅତୀତ ହେବା ପୂର୍ବରୁ ତାଙ୍କ ନିକଟକୁ ଆସିଯାଇ-ଥିଲେ । ପୂର୍ବୋକ୍ତ ଶ୍ରେଣୀସ୍ଥ ଭକ୍ତମାନଙ୍କ ମଧ୍ୟରେ ଅନେକେ ୧୮୮୩ ଖ୍ରୀଷ୍ଟାବ୍ଦର ମଧ୍ୟଭାଗରୁ ୧୮୮୪ ଖ୍ରୀଷ୍ଟାବ୍ଦର ମଧ୍ୟଭାଗ ଭିତରେ ଠାକୁରଙ୍କ ନିକଟରେ ଉପସ୍ଥିତ ହୋଇଥିଲେ । ନରେନ୍ଦ୍ର ସେତେବେଳେ ସାଂସାରିକ ଅଭାବ ଅନାଟନ ସହିତ ସଂଗ୍ରାମରେ ବ୍ୟସ୍ତ ଏବଂ ରାଖାଲ କିଛିକାଳ ପର୍ଯ୍ୟନ୍ତ ଶ୍ରୀବୃନ୍ଦାବନ ଦର୍ଶନରେ ଯାଇଥିଲେ । ପୂର୍ବପରିଦୃଷ୍ଟ ଭକ୍ତମାନଙ୍କ ମଧ୍ୟରେ ବାଳକ ଓ ବୃଦ୍ଧ, ସଂସାରୀ ଓ ଅସଂସାରୀ, ସାକାର ଓ ନିରାକାରର ଉପାସକ, ଶାକ୍ତ ବୈଷ୍ଣବ ଓ ଅନ୍ୟ ଧର୍ମସମ୍ପ୍ରଦାୟଭୁକ୍ତ ବିଭିନ୍ନ ଭାବର ଲୋକ ବିଦ୍ୟମାନ ଥିଲେ । ଏହିଭଳି ପ୍ରଭେଦ ବିଦ୍ୟମାନ ଥିଲେ ମଧ୍ୟ ଗୋଟିଏ ବିଷୟରେ ସେମାନେ ସମସ୍ତେ ସମଭାବାପନ୍ନ ଥିଲେ । ପ୍ରତ୍ୟେକେ ହିଁ ନିଜନିଜ ମତ ଓ ପଥରେ ଆନ୍ତରିକ ଶ୍ରଦ୍ଧାସମ୍ପନ୍ନ ଓ ନିଷ୍ଠାବାନ ରହି ଈଶ୍ୱରଲାଭ ନିମିତ୍ତ ଅଶେଷ ତ୍ୟାଗ ସ୍ୱୀକାର

କରିବା ଲାଗି ସର୍ବଦା ପ୍ରସ୍ତୁତ ରହୁଥିଲେ । ଠାକୁରଙ୍କର ସଙ୍ଗଗୁଣରେ ଏବଂ ଶିକ୍ଷାଦୀକ୍ଷାର ପ୍ରଭାବରେ ସଙ୍କୀର୍ଣ୍ଣତାର ଗଣ୍ଡିଗୁଡ଼ିକୁ ଗୋଟି ଗୋଟି କରି ଅତିକ୍ରମପୂର୍ବକ ଉଦାରଭାବସମ୍ପନ୍ନ ହେବାମାତ୍ରେ, ସେଥିରେ ଏହି ଭାବର ପୂର୍ଣ୍ଣତା ଦେଖିବାକୁ ପାଇ ସେମାନେ ପ୍ରତ୍ୟେକେ ବିସ୍ମିତ ଓ ମୁଗ୍ଧ ହୋଇଥିଲେ । କଲିକତାର ବାଗ୍‌ବଜାର ନିବାସୀ ଶ୍ରୀଯୁକ୍ତ ବଲରାମ ବସୁ ବୈଷ୍ଣବ ବଂଶରେ ଜନ୍ମ ପରିଗ୍ରହ କରିଥିଲେ ଏବଂ ସେ ନିଜେ ଥିଲେ ଜଣେ ପରମ ବୈଷ୍ଣବ । ଠାକୁର ତାଙ୍କୁ ଦେଖିବା ମାତ୍ରେ ପୂର୍ବପରିଚିତ ଭଳି ସାଦରେ ଗ୍ରହଣପୂର୍ବକ କହିଥିଲେ, "ଏ ହେଉଛନ୍ତି ମହାପ୍ରଭୁ ଶ୍ରୀଚୈତନ୍ୟ-ଦେବଙ୍କର ସାଙ୍ଗୋପାଙ୍ଗଙ୍କ ଭିତରେ ଅନ୍ୟତମ— ଏହି ଜାଗାର ଲୋକ ।" ଠାକୁରଙ୍କର ପୁଣ୍ୟଦର୍ଶନ ଲାଭ କରି ବଲରାମଙ୍କ ମନ ନାନାରୂପରେ ପରି-ବର୍ତ୍ତିତ ହୋଇ ଆଧ୍ୟାତ୍ମିକ ରାଜ୍ୟରେ ଦ୍ରୁତପଦରେ ଅଗ୍ରସର ହୋଇଥିଲା ।

ପୂର୍ବପରିଦୃଷ୍ଟ ଭକ୍ତମାନଙ୍କ ଭିତରେ ଠାକୁର ନରେନ୍ଦ୍ରନାଥଙ୍କୁ କେତେ ଉଚ୍ଚାସନ ପ୍ରଦାନ କରିଥିଲେ, ତାହା ଭାଷାରେ ପ୍ରକାଶ କରିହେବ ନାହିଁ । ଏକଦା ଠାକୁର କହିଥିଲେ, "ଏତେ ସବୁ ଲୋକ ଏଠାକୁ ଆସିଲେ, କିନ୍ତୁ ନରେନ୍ଦ୍ର ଭଳି ଆଉ ଜଣେ କେହି ଆସିଲା ନାହିଁ ।" ଏହା ମଧ୍ୟ ଦେଖା ଯାଇଛି ଯେ ଠାକୁରଙ୍କ ଅଦ୍ଭୁତ ଜୀବନର ଅଲୌକିକ କାର୍ଯ୍ୟାବଳୀର ଏବଂ ପ୍ରତ୍ୟେକ କଥାର ଯଥାଯଥ ମର୍ମ ଗ୍ରହଣ ଓ ପ୍ରକାଶ କରିବାରେ ସେ ଯେତେଦୂର ସମର୍ଥ ଥିଲେ, ଅନ୍ୟ କେହି ସେପରି ନ ଥିଲେ । ଦୃଷ୍ଟାନ୍ତସ୍ୱରୂପ, ଗୋଟିଏ କଥାର ଉଲ୍ଲେଖ କରାଯାଉ । ୧୮୮୪ ଖ୍ରୀଷ୍ଟାବ୍ଦର କୌଣସି ସମୟରେ ଶ୍ରୀଯୁକ୍ତ ନରେନ୍ଦ୍ର ଦକ୍ଷିଣେଶ୍ୱରରେ ଉପସ୍ଥିତ ଥାଆନ୍ତି । ନାନା ସଦାଳାପ ଏବଂ ମଝିରେ ମଝିରେ ନିର୍ଦ୍ଦୋଷ ରଙ୍ଗରସର କଥାବାର୍ତ୍ତା ମଧ୍ୟ ଚାଲିଥାଏ । କଥାପ୍ରସଙ୍ଗରେ ବୈଷ୍ଣବଧର୍ମ କଥା ଉଠିଲା ଏବଂ ଏହି ମତର ସାରମର୍ମ ସମବେତ ସମସ୍ତଙ୍କୁ ସଂକ୍ଷେପରେ ବୁଝାଇସାରି ଠାକୁର କହିଲେ, "ତିନୋଟି ବିଷୟ ପାଳନ କରିବାରେ ନିରନ୍ତର ଯତ୍ନବାନ ରହିବାକୁ ଏହି ମତରେ ଉପଦେଶ ଦିଆଯାଇଛି—ନାମେ ରୁଚି ଜୀବେ ଦୟା ଓ ବୈଷ୍ଣବ-ପୂଜନ । ଯେ ନାମ ସେହି ଈଶ୍ୱର । ନାମ ଓ ନାମୀଙ୍କୁ ଅଭେଦ ଜାଣି

ସର୍ବଦା ଅନୁରାଗର ସହିତ ନାମ କରିବାକୁ ହେବ । ପୁନଶ୍ଚ ଏହି ଜଗତ-ସଂସାର ଶ୍ରୀକୃଷ୍ଣଙ୍କର— ଏହି କଥା ହୃଦୟରେ ଧାରଣା କରି ସର୍ବଜୀବରେ ଦୟା (ପ୍ରକାଶ କରିବାକୁ ହେବ) ।'' 'ସର୍ବ ଜୀବରେ ଦୟା' ପଦକ କହୁ-କହୁ ସେ ସହସା ସମାଧିସ୍ଥ ହୋଇପଡ଼ିଲେ । କେତେକ୍ଷଣ ପରେ ଅର୍ଦ୍ଧବାହ୍ୟ-ଦଶାରେ ଉପନୀତ ହୋଇ କହିବାକୁ ଲାଗିଲେ, ''ଜୀବେ ଦୟା— ଜୀବେ ଦୟା ?··· କୀଟାନୁକୀଟ ତୁ ଜୀବକୁ ଦୟା କରିବୁ ? ଦୟା କରିବାକୁ ତୁ କିଏ ? ନା, ନା—ଜୀବେ ଦୟା ନୁହେଁ—ଶିବ-ଜ୍ଞାନରେ ଜୀବର ସେବା ।'' ଭାବାବିଷ୍ଟ ଠାକୁରଙ୍କର ଏହି କଥା ସମସ୍ତେ ଶୁଣିଲେ ସତ, କିନ୍ତୁ ଏହାର ଗୂଢ଼ ମର୍ମ ସେତେବେଳେ କେହି ବୁଝିପାରିଲେ ନାହିଁ କି ଧାରଣା କରି-ପାରିଲେ ନାହିଁ । ଏକମାତ୍ର ନରେନ୍ଦ୍ରନାଥ ହିଁ ସେଦିନ ଠାକୁରଙ୍କର ଭାବଭଙ୍ଗ ହେବାପରେ ବାହାରକୁ ଆସି କହିଲେ, ''କି ଅଦ୍‌ଭୁତ ଆଲୋକ ଆଜି ଠାକୁରଙ୍କ କଥାରେ ଦେଖିବାକୁ ପାଇଲି ! ଶୁଷ୍କ, କଠୋର ଓ ନିର୍ମମ ବୋଲି ପ୍ରସିଦ୍ଧ ବେଦାନ୍ତଜ୍ଞାନକୁ ଭକ୍ତି ସହିତ ସମ୍ମିଳିତ କରି କି ସହଜ, ସରସ ଓ ମଧୁର ଆଲୋକ ସେ ଆଜି ପ୍ରଦର୍ଶନ କଲେ ! ଅଦ୍ୱୈତଜ୍ଞାନ ଲାଭ କରିବାକୁ ହେଲେ ସଂସାର ଏବଂ ଲୋକସଙ୍ଗ ସର୍ବତୋଭାବେ ବର୍ଜନ କରି ବଣକୁ ଯିବାକୁ ହେବ ଏବଂ ଭକ୍ତି ପ୍ରେମ ପ୍ରଭୃତି କୋମଳ ଭାବଗୁଡ଼ିକୁ ହୃଦୟରୁ ବଳାତ୍କାରେ ଉତ୍ପାଟିତ କରି ଚିରଦିନ ପାଇଁ ଦୂରକୁ ନିକ୍ଷେପ କରିବାକୁ ହେବ -- ଏହି କଥା ହିଁ ଏତେଦିନ ଶୁଣି ଆସିଛୁ; କିନ୍ତୁ ଠାକୁର ଆଜି ଭାବା-ବେଶରେ ଯାହା କହିଲେ—ସେଥିରୁ ବୁଝାଗଲା ଯେ ଅରଣ୍ୟର ବେଦାନ୍ତକୁ ଘରକୁ ଅଣାଯାଇପାରେ । ସଂସାରର ସବୁ କାର୍ଯ୍ୟରେ ଏହାକୁ ଅବଲମ୍ବନ କରାଯାଇପାରେ । ମଣିଷ ଯାହା କରୁଛି, ସେସବୁ କରୁ, ସେଥିରେ କ୍ଷତି ନାହିଁ । କେବଳ ପ୍ରାଣର ସହିତ ଏହି କଥା ସର୍ବାଗ୍ରେ ବିଶ୍ୱାସ ଓ ଧାରଣା କଲେ ହେଲା ଯେ ଈଶ୍ୱର ସ୍ୱୟଂ ଜୀବ ଓ ଜଗତରୂପେ ତା'ର ସମ୍ମୁଖରେ ପ୍ରକାଶିତ ହୋଇଅଛନ୍ତି । ଜୀବନର ପ୍ରତିଟି ମୁହୂର୍ତ୍ତରେ ଆମେ ଯେଉଁମାନଙ୍କର ସମ୍ପର୍କରେ ଆସୁଛୁ, ଯେଉଁମାନଙ୍କୁ ଭଲ ପାଉଛୁ, ଯେଉଁମାନଙ୍କୁ ଶ୍ରଦ୍ଧା, ସମ୍ମାନ କିମ୍ବା ଦୟା କରୁଛୁ, ସେମାନେ ସମସ୍ତେ ତାଙ୍କର ଅଂଶ । ସଂସାରର

ସମସ୍ତ ବ୍ୟକ୍ତିଙ୍କୁ ଯଦି ସେ ଏହିଭାବରେ ଶିବଜ୍ଞାନ କରିପାରେ, ତା'ହେଲେ ଆପଣାକୁ ବଡ଼ ଭାବି ସେମାନଙ୍କ ପ୍ରତି ରାଗ, ଦ୍ୱେଷ, ଦମ୍ଭ ଅଥବା ଦୟା କରିବାର ଅବକାଶ ତା'ର ରହିବ ନାହିଁ । ଏହି ରୂପେ ଶିବ-ଜ୍ଞାନରେ ଜୀବର ସେବା କରିକରି ଚିତ୍ତ ଶୁଦ୍ଧ ହେଲେ, ସେ ଅଳ୍ପ କାଳ ମଧ୍ୟରେ ଆପଣାକୁ ଚିଦାନନ୍ଦମୟ ଈଶ୍ୱରଙ୍କର ଅଂଶ, ଶୁଦ୍ଧବୁଦ୍ଧମୁକ୍ତସ୍ୱଭାବ ବୋଲି ଧାରଣା କରିପାରିବ ।''

"ଠାକୁରଙ୍କର ଏହି କଥାରେ ଭକ୍ତିପଥରେ ମଧ୍ୟ ବିଶେଷ ଆଲୋକ ଦେଖିବାକୁ ମିଳେ । ସର୍ବଭୂତରେ ଯେତେଦିନ ପର୍ଯ୍ୟନ୍ତ ଈଶ୍ୱରଙ୍କୁ ପ୍ରତ୍ୟକ୍ଷ କରି ନ ଯାଇଛି, ସେତେଦିନ ଯଥାର୍ଥ ଭକ୍ତି ବା ପରାଭକ୍ତିଲାଭ ସାଧକ ପକ୍ଷରେ ସୁଦୂରପରାହତ । ଶିବ ବା ନାରାୟଣଜ୍ଞାନରେ ଜୀବର ସେବା କଲେ ଈଶ୍ୱରଙ୍କୁ ସମସ୍ତଙ୍କ ମଧ୍ୟରେ ଦର୍ଶନପୂର୍ବକ ଯଥାର୍ଥ ଭକ୍ତିଲାଭରେ ଭକ୍ତ ସାଧକ ସ୍ୱଳ୍ପକାଳ ଭିତରେ ଯେ କୃତକୃତାର୍ଥ ହେବ, ଏହା କହିବା ବାହୁଲ୍ୟ ମାତ୍ର । କର୍ମ ଓ ରାଜଯୋଗ ଅବଲମ୍ବନ କରି ଯେଉଁସବୁ ସାଧକ ଅଗ୍ରସର ହେଉଛନ୍ତି, ସେମାନେ ମଧ୍ୟ ଏହି କଥାରେ ବିଶେଷ ଆଲୋକ ପାଇପାରିବେ । ଯାହା ହେଉ, ଭଗବାନ ଯଦି କେବେ ମୋତେ ସୁଯୋଗ ଦିଅନ୍ତି, ତା' ହେଲେ ଆଜି ଯାହା ଶୁଣିବାକୁ ପାଇଲି, ଏହି ଅଦ୍ଭୁତ ସତ୍ୟ ସଂସାରରେ ସର୍ବତ୍ର ପ୍ରଚାର କରିବି—ପଣ୍ଡିତ-ମୂର୍ଖ, ଧନୀ-ଦରିଦ୍ର, ବ୍ରାହ୍ମଣ-ଚଣ୍ଡାଳ ସମସ୍ତଙ୍କୁ ଶୁଣାଇ ମୋହିତ କରିବି ।'' ଲୋକୋତ୍ତର ଠାକୁର ଜ୍ଞାନ, ପ୍ରେମ, ଯୋଗ ଓ କର୍ମ ସମ୍ବନ୍ଧରେ ଅଦୃଷ୍ଟପୂର୍ବ ଆଲୋକ ଆନୟନ କରି ମନୁଷ୍ୟର ଜୀବନପଥ ସମୁଜ୍ଜ୍ୱଳ କରିଛନ୍ତି । ମନସ୍ୱୀ ନରେନ୍ଦ୍ରନାଥ ହିଁ କେବଳ ଏହି ସମସ୍ତ ଦେବବାଣୀ ଯଥାର୍ଥ ହୃଦୟଙ୍ଗମ କରି ସମୟ ସମୟରେ ପ୍ରକାଶପୂର୍ବକ ସମସ୍ତଙ୍କୁ ସ୍ତମ୍ଭିତ କରି ଯାଇଛନ୍ତି ।

## ଏକବିଂଶ ଅଧ୍ୟାୟ

# ଶ୍ରୀରାମକୃଷ୍ଣଙ୍କ ସାନ୍ନିଧରେ ବଙ୍କିମ, ଶଶଧର, ଈଶାନ ଓ ଗୋପାଳମା'

୧୮୮୪ ଖ୍ରୀଷ୍ଟାବ୍ଦର ଡିସେମ୍ବର ୬ ତାରିଖ ଶନିବାର ଶ୍ରୀରାମକୃଷ୍ଣ ଶୋଭାବଜାରର ଭକ୍ତପ୍ରବର ଶ୍ରୀ ଅଧର ସେନଙ୍କ ଗୃହରେ ପଦାର୍ପଣ କରି ଥାଆନ୍ତି । ଅଧର ଡେପୁଟୀ ମାଜିଷ୍ଟ୍ରେଟ୍ । ୨୯-୩୦ ବର୍ଷ ବୟସ ହେବ । ଠାକୁରଙ୍କ ଆଗମନରେ ଅଧରଙ୍କ ଆନନ୍ଦର ସୀମା ନାହିଁ । ସେ ତାଙ୍କର କେତେକ ଡେପୁଟୀ ମାଜିଷ୍ଟ୍ରେଟ୍ ବନ୍ଧୁଙ୍କୁ ନିମନ୍ତ୍ରଣ କରି ଆଣିଥାଆନ୍ତି । ଏମାନଙ୍କ ଭିତରେ ଉପସ୍ଥିତ ଥାଆନ୍ତି ସୁପ୍ରସିଦ୍ଧ ସାହିତ୍ୟିକ ଶ୍ରୀଯୁକ୍ତ ବଙ୍କିମଚନ୍ଦ୍ର ଚଟ୍ଟୋପାଧ୍ୟାୟ । ସେ ମଧ୍ୟ ଥିଲେ ଜଣେ ଡେପୁଟୀ ମାଜିଷ୍ଟ୍ରେଟ୍ । ଠାକୁରଙ୍କ ସଙ୍ଗରେ ପରିଚୟ ହେବା ପରେ ଉଭୟଙ୍କ ମଧ୍ୟରେ ନାନା ବିଷୟରେ କଥାବାର୍ତ୍ତା ହେଲା ।

ଠାକୁର ବଙ୍କିମଚନ୍ଦ୍ରଙ୍କୁ ନାନାବିଧ ସଦୁପଦେଶ ଦେଇ ଅବଶେଷରେ କର୍ମଯୋଗର ମର୍ମାର୍ଥ ବିଶ୍ଲେଷଣପୂର୍ବକ କହିଲେ, "ସଂସାରୀ ବ୍ୟକ୍ତି ନିଷ୍କାମ ଭାବରେ ଯଦି କାହାକୁ ଦାନ କରନ୍ତି, ସେ ନିଜର ଉପକାର ପାଇଁ, 'ପରୋପକାର' ପାଇଁ ନୁହେଁ । ସର୍ବଭୂତରେ ଯେଉଁ ହରି ଅଛନ୍ତି, ତାଙ୍କର ହିଁ ସେବା କରାଯାଏ । ହରିସେବା ହେଲେ ନିଜର ହିଁ ଉପକାର ହୁଏ, 'ପରୋପକାର' ନୁହେଁ । ଏହି ସର୍ବଭୂତରେ ହରିଙ୍କ ସେବା—କେବଳ ମଣିଷ ଭିତରେ ନୁହେଁ, ଜୀବଜନ୍ତୁଙ୍କ ଭିତରେ ମଧ୍ୟ ଯଦି କେହି ହରିଙ୍କ ସେବା କରେ ଏବଂ ଯଦି ସେ ତା' ବଦଳରେ ମାନ ନ ଚାହେଁ, ଯଶ ନ ଚାହେଁ, ମରିବା ପରେ ସ୍ୱର୍ଗ ନ ଚାହେଁ, ଯେଉଁମାନଙ୍କର ସେବା କରୁଛି, ସେମାନଙ୍କ ପାଖରୁ ପ୍ରତ୍ୟୁପକାର ନ ଚାହେଁ, ଏପରିଭାବରେ ଯଦି ସେବା କରେ, ତା' ହେଲେ ତା'ର ଯଥାର୍ଥ ନିଷ୍କାମ କର୍ମ ବା ଅନାସକ୍ତ କର୍ମ କରା ହେଲା ।

ଏହି ଭାବରେ ନିଷ୍କାମ କର୍ମ କଲେ ତା'ର ନିଜର କଲ୍ୟାଣ ହୁଏ । ଏହାର ନାମ କର୍ମଯୋଗ । ଏହି କର୍ମଯୋଗ ହିଁ ଈଶ୍ୱରଲାଭର ଗୋଟିଏ ପଥ ।... ସେଥିପାଇଁ କହୁଛି, ଯେ ଅନାସକ୍ତ ହୋଇ ଏଭଳି କର୍ମ କରେ— ଦୟା, ଦାନ କରେ, ସେ ନିଜର ହିଁ ମଙ୍ଗଳ କରେ ।... ବାପା ମାଆଙ୍କ ଭିତରେ ଯେଉଁ ସ୍ନେହ ଦେଖୁଛ, ତାହା ମଧ୍ୟ ସେହି ଭଗବାନଙ୍କର— ଜୀବର ରକ୍ଷା ଲାଗି ତାହା ଆମକୁ ଦିଆଯାଇଛି । ଦୟାଳୁ ଭିତରେ ଯେଉଁ ଦୟା ଦେଖୁଛ, ସେ ତାଙ୍କର ହିଁ ଦୟା— ନିଃସହାୟ ଜୀବର ରକ୍ଷା ଲାଗି ତାହା ଆମକୁ ଦିଆ ଯାଇଛି । ତୁମେ ଦୟା କର ବା ନ କର, ସେ କୌଣସି ନା କୌଣସି ସୂତ୍ରରେ ତାଙ୍କର କାର୍ଯ୍ୟ କରିବେ । ତାଙ୍କର କାର୍ଯ୍ୟ ଅଟକି ଯିବ ନାହିଁ । ତେଣୁ ଜୀବର କର୍ତ୍ତବ୍ୟ କ'ଣ ?... ତାଙ୍କର ଶରଣାଗତ ହେବା ଏବଂ ତାଙ୍କୁ ଯେପରି ପାଇ ହେବ, ଦର୍ଶନ କରିହେବ, ସେଥିନିମିତ୍ତ ବ୍ୟାକୁଳ ହୋଇ ତାଙ୍କ ନିକଟରେ ପ୍ରାର୍ଥନା କରିବା ।'' ଆହୁରି କିଛି ସମୟ ଏହି ପ୍ରକାର ଧର୍ମପ୍ରସଙ୍ଗ ପରେ ବଙ୍କିମଚନ୍ଦ୍ର ବିଦାୟ ଗ୍ରହଣ କଲେ । କିଛିଦିନ ପରେ ଶ୍ରୀଯୁକ୍ତ ଗିରିଶ ଓ ମାଷ୍ଟରଙ୍କୁ ଶ୍ରୀରାମକୃଷ୍ଣ ବଙ୍କିମଚନ୍ଦ୍ରଙ୍କର ସାନ୍ଲାଲଭଙ୍ଗାର ବସାଘରକୁ ପଠାଇଥିଲେ । ସେମାନଙ୍କ ସହିତ ଶ୍ରୀରାମକୃଷ୍ଣଙ୍କ ସମ୍ବନ୍ଧରେ ବହୁ ଆଲୋଚନା ହୋଇଥିଲା । ଆଉଥରେ ଠାକୁରଙ୍କୁ ଦର୍ଶନ କରିବାକୁ ଯିବା ଲାଗି ବଙ୍କିମଚନ୍ଦ୍ର ଅଭିଳାଷ ପ୍ରକାଶ କରିଥିଲେ, କିନ୍ତୁ କାର୍ଯ୍ୟବ୍ୟସ୍ତତା ଭିତରେ ସେ ଆଉ ଠାକୁରଙ୍କ ପାଖକୁ ଆସିପାରି ନ ଥିଲେ । ଅତଃପର ଡିସେମ୍ବର ୨୭ ତାରିଖ ଶନିବାର ଦିନ ଠାକୁର ପଞ୍ଚବଟୀମୂଳରେ ଦକ୍ଷିଣେଶ୍ୱରରେ ଭକ୍ତମାନଙ୍କ ସଙ୍ଗେ ବଙ୍କିମଚନ୍ଦ୍ରଙ୍କ ପ୍ରଣୀତ 'ଦେବୀ ଚୌଧୁରାଣୀ'ର କେତେକ ଅଂଶ ପାଠ ଶୁଣିଥିଲେ ଏବଂ ଗୀତୋକ୍ତ ନିଷ୍କାମ କର୍ମ ବିଷୟରେ ଅନେକ କଥା କହିଥିଲେ ।*

ଯେତେବେଳେ ନବ-ବିଧାନ ବ୍ରାହ୍ମସମାଜ ଠାକୁରଙ୍କ ସଙ୍ଗଲାଭ ଦ୍ୱାରା ତାଙ୍କ ଭାବରେ ବିଶେଷ ଅନୁପ୍ରାଣିତ ହୋଇଥିଲା, ସେହି ସମୟରେ ହିଁ

* ଶ୍ରୀମ-କଥିତ ଶ୍ରୀରାମକୃଷ୍ଣକଥାମୃତ ପଞ୍ଚମଭାଗସ୍ଥ ପରିଶିଷ୍ଟାନ୍ତର୍ଗତ 'ଶ୍ରୀରାମକୃଷ୍ଣ ଓ ଶ୍ରୀଯୁକ୍ତ ବଙ୍କିମ' ପ୍ରସଙ୍ଗରୁ ସଂକଳିତ ।

ପଣ୍ଡିତ ଶଶଧର ହିନ୍ଦୁଧର୍ମର ବ୍ୟାଖ୍ୟା କରିବା ଲାଗି କଲିକତା ଆଗମନ କରିଥିଲେ । ସର୍ବତ୍ର ସେତେବେଳେ ଗୋଟିଏ ଆଲୋଚନା—ଶଶଧର ପଣ୍ଡିତଙ୍କର ଧର୍ମବ୍ୟାଖ୍ୟା । ଠାକୁର ମଧ୍ୟ ପଣ୍ଡିତଙ୍କୁ ଦେଖିବାର ଇଚ୍ଛା ଭକ୍ତ-ଗଣଙ୍କ ନିକଟରେ ପ୍ରକାଶ କଲେ । ୧୮୮୪ ଖ୍ରୀଷ୍ଟାବ୍ଦରେ ରଥଯାତ୍ରା ଉପଲକ୍ଷେ ଠାକୁର ଯେଉଁ ଦିନ ଠନ୍‌ଠନିଆରେ ଶ୍ରୀଯୁକ୍ତ ଈଶାନଚନ୍ଦ୍ର ମୁଖୋପାଧ୍ୟାୟଙ୍କ ଘରେ ନିମନ୍ତ୍ରଣ ରକ୍ଷା ଲାଗି ଗଲେ, ସେହିଦିନ ଅପରାହ୍ଣରେ ସେ ସେଠାରୁ କଲେଜଷ୍ଟ୍ରିଟ୍‌ସ୍ଥ ବାସଭବନରେ ପଣ୍ଡିତ ଶଶଧରଙ୍କୁ ଦେଖି-ବାକୁ ଯାଇଥିଲେ । ଏହାର କେତେଦିନ ପରେ ପୁଣି ପଣ୍ଡିତ ଶଶଧର ଆଲମ୍‌ବଜାର ବା ଉତ୍ତର ବରାହନଗରର ଏକ ସ୍ଥାନରେ ଧର୍ମସମ୍ବନ୍ଧୀୟ ବକ୍ତୃତା ଦେବାକୁ ଆସି ସେଠାରୁ ଠାକୁରଙ୍କୁ ଦର୍ଶନ କରିବା ଲାଗି ଦକ୍ଷିଣେଶ୍ୱର କାଳୀବାଡ଼ିକୁ ଆଗମନ କରିଥିଲେ । ପଣ୍ଡିତ ଶଶଧରଙ୍କୁ ଦେଖୁ ଦେଖୁ ଠାକୁରଙ୍କର ଅର୍ଦ୍ଧବାହ୍ୟଦଶା ଭଳି ଅବସ୍ଥା ହେଲା । ସେ ପଣ୍ଡିତଙ୍କୁ ସମ୍ବୋଧନ କରି କହିଲେ, "ଆଗୋ, ତୁମେ ପଣ୍ଡିତ, ତୁମେ କିଛି କୁହ ।"

ଶଶଧର କହିଲେ, "ମହାଶୟ ! ଦର୍ଶନଶାସ୍ତ୍ର ପଢ଼ି ମୋର ହୃଦୟ ଶୁଷ୍କ ହୋଇ ଯାଇଅଛି । ତେଣୁ ଆପଣଙ୍କ ନିକଟକୁ ଆସିଛି ଭକ୍ତିରସ ପାନ କରିବା ଲାଗି । ତେଣୁ ମୁଁ ଶୁଣେ, ଆପଣ କିଛି କୁହନ୍ତୁ ।"

ଠାକୁର କହିଲେ, "ମୁଁ ଆଉ କ'ଣ କହିବି, ବାବୁ ! ସଚ୍ଚିଦାନନ୍ଦ ଯେ କି ପଦାର୍ଥ ତାହା କେହି କହିପାରିବେ ନାହିଁ । ତେଣୁ ସେ ପ୍ରଥମେ ହେଲେ ଅର୍ଦ୍ଧନାରୀଶ୍ୱର । କାହିଁକି ?—ନା, ପୁରୁଷ ପ୍ରକୃତି ଦୁଇଟି ନୁହେଁ, ଗୋଟିଏ; ଆଉ ମୁଁ ଏକା ସେହି ଉଭୟ—ଏହି କଥା ଦେଖାଇବେ ବୋଲି । ତା'ପରେ ସେଥିରୁ ଆଉ ଗୋଟିଏ ଥାକ ତଳକୁ ଆସି ଅଲଗା ଅଲଗା ପୁରୁଷ ଓ ଅଲଗା ଅଲଗା ପ୍ରକୃତି ହେଲେ । ସଚ୍ଚିଦାନନ୍ଦରେ ମନ ଯେତେ-ଦିନ ଲୀନ ନ ହୋଇଛି, ସେତେଦିନ ତାଙ୍କୁ ଡାକିବା ଓ ସଂସାରର କାର୍ଯ୍ୟ କରିବା ଦୁଇଟି ହିଁ ରହିବ । ତା' ପରେ ସେଥିରେ ମନ ଲୀନ ହୋଇଗଲେ ଆଉ କୌଣସି କାର୍ଯ୍ୟ କରିବାର ପ୍ରୟୋଜନ ରହେ ନାହିଁ ।..."

ଏହି କଥା କହୁ କହୁ ଠାକୁର ଭାବାବେଶରେ ନୀବାକ୍ ନିଷ୍ପନ୍ଦ ହୋଇଗଲେ । ଭାବାବସାନରେ ପୁଣି ଶଶଧରଙ୍କୁ ସମ୍ବୋଧନ କରି କହିଲେ, "ଆହେ ପଣ୍ଡିତେ ! ତୁମକୁ ଦେଖିଲି । ତୁମେ ବେଶ୍ ଲୋକ । ଗୃହିଣୀ ଯେତେବେଳେ ରାନ୍ଧବାଢ଼ି ସମସ୍ତଙ୍କୁ ଖୁଆଇ ପିଆଇ ଗାମୁଛାଟିକୁ କାନ୍ଧରେ ପକାଇ ପୋଖରୀଘାଟକୁ ଗାଧୋଇବାକୁ ଓ ଲୁଗା କାଚିବାକୁ ଯାଏ, ସେତେବେଳେ ଆଉ ସେ ହାଣ୍ଡିଶାଳକୁ ଫେରେ ନାହିଁ । ତୁମେ ସେହିପରି ସମସ୍ତଙ୍କୁ ତାଙ୍କ କଥା କହି ବୋଲିସାରି ଯେ ଯିବ, ଆଉ ଫେରିବ ନାହିଁ !"

ପଣ୍ଡିତ ଶଶଧର ଠାକୁରଙ୍କ ମୁଖରୁ ଏକଥା ଶୁଣି କହିଲେ, "ସେ ଆପଣଙ୍କର ଅନୁଗ୍ରହ ।" କହିସାରି ସେ ଠାକୁରଙ୍କ ପଦଧୂଳି ବାରମ୍ବାର ଗ୍ରହଣ କରିବାକୁ ଲାଗିଲେ ଏବଂ ତାଙ୍କଠାରୁ ଏସବୁ କଥା ଶୁଣି ସ୍ତମ୍ଭିତ ଓ ଆର୍ଦ୍ର ହୃଦୟରେ ଭଗବଦ୍‌ବସ୍ତୁ ଜୀବନରେ ଲାଭ ହେଲା ନାହିଁ ଭାବି ଅଶ୍ରୁ ବିସର୍ଜନ କରିବାକୁ ଲାଗିଲେ ।

ତା'ପରେ ବାହୁଡ଼ା ରଥ ଦିନ ଠାକୁର ଯେତେବେଳେ ବାଗ୍‌ବଜାରରେ ବଳରାମବାବୁଙ୍କ ଘରକୁ ଆଗମନ କରିଥିଲେ ସେତେବେଳେ ପଣ୍ଡିତ ଶଶଧର ମଧ୍ୟ ଠାକୁରଙ୍କୁ ଦର୍ଶନ କରିବା ଲାଗି ବଳରାମବାବୁଙ୍କ ଘରକୁ ସ୍ୱୟଂ ଆସିଥିଲେ ଏବଂ ସଜଳ ନୟନରେ କରଯୋଡ଼ ହୋଇ ଠାକୁରଙ୍କୁ ପୁନରାୟ ନିବେଦନ କଲେ—"ଦର୍ଶନଚର୍ଚ୍ଚା କରିକରି ମୋର ହୃଦୟ ଶୁଷ୍କ ହୋଇ ଯାଇଛି । ମୋତେ ଏକ ବିନ୍ଦୁ ଭକ୍ତି ଦାନ କରନ୍ତୁ ।" ଠାକୁର ମଧ୍ୟ ଭାବାବିଷ୍ଟ ହୋଇ ସେଦିନ ପଣ୍ଡିତଜୀଙ୍କର ହୃଦୟ ସ୍ପର୍ଶ କରିଥିଲେ । ଠାକୁରଙ୍କର ଜ୍ୱଳନ୍ତ ଶକ୍ତିପୂର୍ଣ୍ଣ ମହାବାକ୍ୟ ଫଳରେ ଯେ ପଣ୍ଡିତଜୀ କିଛିକାଳପରେ ପ୍ରଚାରକାର୍ଯ୍ୟ ଛାଡ଼ି କାମାକ୍ଷାପୀଠକୁ ତପସ୍ୟା ଲାଗି ଗମନ କଲେ, ଏହା ଆଉ କହିବାକୁ ହେବ ନାହିଁ ।

ଜାପକ ଈଶାନ୍ ନାମକ ଜନୈକ ଭଦ୍ରବ୍ୟକ୍ତି ଠାକୁରଙ୍କର ବିଶେଷ ପ୍ରିୟ ଓ ଅନୁଗ୍ରହପାତ୍ର ଥିଲେ । ଜପ ଶେଷ କରିସାରି ଈଶାନ୍ ଯେତେବେଳେ ଠାକୁରଙ୍କ ଶ୍ରୀଚରଣରେ ନିବେଦନ ସନ୍ଧ୍ୟାବେଳେ ପ୍ରଣାମ କରିବାକୁ ଆସିଲେ ସେତେବେଳେ ଠାକୁର ଭାବାବିଷ୍ଟ ହୋଇ ତାଙ୍କର ଶ୍ରୀଚରଣ

ଈଶାନଙ୍କର ମସ୍ତକ ଉପରେ ସ୍ଥାପନ କଲେ । ପରେ ବାହ୍ୟଦଶା ପ୍ରାପ୍ତ ହୋଇ ବଡ଼ ପାଟିରେ ଈଶାନଙ୍କୁ କହିବାକୁ ଲଗିଲେ— "ଆରେ ବ୍ରାହ୍ମଣ ! ବୁଡ଼ିଯା ।" (ଅର୍ଥାତ୍ କେବଳ ଉପରେ ଭାସିଲା ଭଳି ଜପ ନ କରି ଶ୍ରୀଭଗବାନଙ୍କ ନାମରେ ତନ୍ମୟ ହୋଇଯାଅ । ) ଠାକୁର ଈଶାନଙ୍କ ଘରକୁ ମଝିରେ ମଝିରେ ଶୁଭାଗମନ କରନ୍ତି ଏବଂ ଈଶାନ୍ ମଧ୍ୟ କଲିକତାରେ ଥିଲେ ପ୍ରାୟ ଦକ୍ଷିଣେଶ୍ୱରକୁ ଆସନ୍ତି ଠାକୁରଙ୍କର ଦର୍ଶନାଭିଳାଷୀ ହୋଇ । ତା' ନ ହେଲେ ପବିତ୍ର ଦେବସ୍ଥାନ ଓ ତୀର୍ଥାଦି ଦର୍ଶନରେ ଯାଇ ତପସ୍ୟାରେ ସମୟ କଟାନ୍ତି । ଶ୍ରୀଯୁକ୍ତ ଈଶାନଙ୍କ ସଦୃଶ ଦୟାଳୁ, ଦାନଶୀଳ ଓ ଭଗବଦ୍‌ବିଶ୍ୱାସୀ ଭକ୍ତ ସଂସାରରେ ଖୁବ୍ ବିରଳ । ଈଶାନଙ୍କର ଦୟାର ବିଷୟ ଉଲ୍ଲେଖ କରି ସ୍ୱାମୀ ବିବେକାନନ୍ଦ ଥରେ ଗୁରୁଭାଇମାନଙ୍କୁ କହିଥିଲେ ଯେ—ତାଙ୍କର ଦାନ ପଣ୍ଡିତ ଈଶ୍ୱରଚନ୍ଦ୍ର ବିଦ୍ୟାସାଗରଙ୍କଠାରୁ କୌଣସି ଗୁଣରେ କମ୍ ନ ଥିଲା ।

[ପୂର୍ବୋକ୍ତ ଉଦାହୃତ ମନୀଷୀ ଓ ଭକ୍ତଗଣଙ୍କ ବ୍ୟତୀତ ଯେଉଁସବୁ ଭକ୍ତିମତୀ ନାରୀ ଏହି ସମୟରେ ଦକ୍ଷିଣେଶ୍ୱର ଆସି ଠାକୁରଙ୍କର ଦର୍ଶନ ଓ କୃପାଲଭ କରି ଧନ୍ୟ ହୋଇଥିଲେ, ସେମାନଙ୍କ ମଧ୍ୟରେ ଗୋପାଳ-ମା' (ଶ୍ରୀମତୀ ଅଘୋରମଣି ଦେବୀ) ଯୋଗୀନ୍ ମା' (ଶ୍ରୀମତୀ ଯୋଗୀନ୍ଦ୍ରମୋହିନୀ ବିଶ୍ୱାସ) ଗୋଲାପ ମା' (ଶ୍ରୀମତୀ ଗୋଲାପ ସୁନ୍ଦରୀ ଦେବୀ) ଗୌରୀ ମା' (ଶ୍ରୀମତୀ ମୃଡ଼ାନୀ ଦେବୀ) ଲକ୍ଷ୍ମୀଦିଦି (ଶ୍ରୀମତୀ ଲକ୍ଷ୍ମୀମଣି ଦେବୀ) ପ୍ରଭୃତିଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ଦିବ୍ୟ ଭାବମୁଖରେ ଅବସ୍ଥିତ ଠାକୁର ବିଶିଷ୍ଟ ସାଧକ ଭକ୍ତଗଣଙ୍କ ସହିତ କିଭଳି ଲୀଳା କରିଯାଇଛନ୍ତି, ତାହାର ଅନ୍ୟତମ ଦୃଷ୍ଟାନ୍ତସ୍ୱରୂପ ଆମେ ଗୋପାଳ-ମା'ଙ୍କ ଅଦ୍‌ଭୁତ ଦର୍ଶନାଦିର କଥା ପାଠକ-ପାଠିକାଙ୍କ ନିକଟରେ ବର୍ତ୍ତମାନ ସଂକ୍ଷେପରେ ଉପସ୍ଥାପନ କରିବୁ ।]

ପଟଲଡାଙ୍ଗାର ଗୋବିନ୍ଦଚନ୍ଦ୍ର ଦତ୍ତ କଲିକତାର କୌଣସି ଏକ ବିଖ୍ୟାତ ସଉଦାଗରୀ ଅଫିସ୍‌ରେ ମୁତ୍‌ସଦ୍ଦି ଥିଲେ । କାମାରହାଟିରେ ଗଙ୍ଗାକୂଳରେ ତାଙ୍କର ଯେଉଁ ଠାକୁରବାଡ଼ି ଓ ଉଦ୍ୟାନ ଥିଲା, ଗୋବିନ୍ଦ-

ବାବୁଙ୍କ ତିରୋଧାନ ପରେ ତାଙ୍କର ବିଧବା ପତ୍ନୀ ଉକ୍ତ ଉଦ୍ୟାନବାଡ଼ିରେ ଶ୍ରୀବିଗ୍ରହଙ୍କର ସେବା, ଜପ, ଧ୍ୟାନ ଇତ୍ୟାଦିରେ ସମୟ ଅତିବାହିତ କରୁଥିଲେ । କାମାରହାଟିର ଠାକୁରବାଡ଼ିର ଅତି ନିକଟରେ ଗୋବିନ୍ଦ-ବାବୁଙ୍କ ପୁରୋହିତମାନେ ରହୁଥିଲେ । ପୁରୋହିତ ନୀଳମାଧବ ବନ୍ଦୋପାଧ୍ୟାୟ ମହାଶୟ ସେକାଳର ଜଣେ ଗଣ୍ୟମାନ୍ୟ ବ୍ୟକ୍ତି ଥିଲେ । 'ଗୋପାଳଙ୍କ ମାତା'—ଏହି ପୁରୋହିତଙ୍କର ଭଗ୍ନୀ । ତାଙ୍କର ପୂର୍ବନାମ ଅଘୋରମଣି ଦେବୀ । ବାଳିକା ବୟସରେ ବିଧବା ହେବାରୁ ଶାଶୁଘର ଛାଡ଼ି ସେ ଆସି ବାପଘରେ ରହିଲେ । ଗୋବିନ୍ଦବାବୁଙ୍କ ପତ୍ନୀଙ୍କ ସହିତ ବିଶେଷ ଘନିଷ୍ଠତା ହେବା ପରଠାରୁ ଉକ୍ତ ଉଦ୍ୟାନବାଡ଼ିରେ ହିଁ ଠାକୁର-ସେବାରେ ଅଘୋରମଣିଙ୍କର ସମୟ ଅତିବାହିତ ହେଉଥିଲା । କ୍ରମେ ଅନୁରାଗ ବୃଦ୍ଧି ପାଇଲା । ସେହି ସୁଯୋଗରେ ସେ ତାଙ୍କର ଗଙ୍ଗାତୀରସ୍ଥ ଠାକୁରବାଡ଼ିରେ ବାସ କରିବାର ପ୍ରବଳ ଇଚ୍ଛା ଗୋବିନ୍ଦବାବୁଙ୍କ ପତ୍ନୀଙ୍କୁ ଜଣାଇଲେ । ତାଙ୍କର ଅନୁମତି ପାଇ ସେ ନାଗମହଲର ଗୋଟିଏ କୋଠରୀରେ ଆସି ବସବାସ କଲେ । ଗୋବିନ୍ଦବାବୁଙ୍କ ସହଧର୍ମିଣୀଙ୍କର ଯେପରି କଠୋର ବ୍ରହ୍ମଚର୍ଯ୍ୟ ଓ ତପାନୁଷ୍ଠାନରେ ଅନୁରାଗ, ଅଘୋରମଣିଙ୍କର ମଧ୍ୟ ତଦ୍ରୂପ । ସେଥିପାଇଁ ଉଭୟଙ୍କ ମଧ୍ୟରେ ମାନସିକ ଚିନ୍ତା ଓ ଭାବାନୁ-ଭୂତିରେ ଅନେକ ବିଷୟରେ ସାଦୃଶ୍ୟ ଥିଲା । ଅଘୋରମଣିଙ୍କ ସମ୍ବଳ ମଧ୍ୟରେ ଅଳଙ୍କାରାଦି ସ୍ତ୍ରୀଧନ-ବିକ୍ରୟଲବ୍ଧ ପାଞ୍ଚ ଛଅ ଶହ ମାତ୍ର ଟଙ୍କା । ସେତିକ ମଧ୍ୟ କମ୍ପାନୀର କାଗଜ କରି ଗୋବିନ୍ଦବାବୁଙ୍କର ବିଧବା ପତ୍ନୀଙ୍କ ନିକଟରେ ଗଚ୍ଛିତ ଥାଏ । ଏହାର ସୁଧ ନେଇ ଏବଂ ସମୟ ସମୟରେ ବିଶେଷ ଅଭାବଗ୍ରସ୍ତ ହେଲେ, ମୂଳଧନରେ ଯେତେଦୂର ସମ୍ଭବ ଅଳ୍ପ ହସ୍ତକ୍ଷେପ କରି ଅଘୋରମଣିଙ୍କ ଜୀବନ କଟୁଥିଲା ।

ଅଘୋରମଣି ଥିଲେ ବାଳବିଧବା । ଜୀବନରେ ସ୍ୱାମୀ-ସୁଖ କ'ଣ ଆଦୌ ଜାଣନ୍ତି ନାହିଁ । ଯେଉଁ ଘରେ ସେ ରହୁଥିଲେ ତାହା ଉଦ୍ୟାନର ଶେଷ ଦକ୍ଷିଣପ୍ରାନ୍ତରେ ଥିଲା । ଘରର ଦକ୍ଷିଣପଟେ ଥିବା ଗୋଟିଏ ଝରକାରେ ସୁନ୍ଦର ଗଙ୍ଗାଦର୍ଶନ ହୋଇପାରୁଥିଲା । ଉତ୍ତର ଆଉ ପଶ୍ଚିମପଟରେ ମଧ୍ୟ

ଦୁଇଟି କବାଟ ଥିଲା । ବ୍ରାହ୍ମଣୀ ଏହି ଘରେ ବସି ଗଙ୍ଗାଦର୍ଶନ କରୁଥିଲେ ଏବଂ ଦିନରାତି ଜପ କରୁଥିଲେ । ତାଙ୍କର ଥିଲା ଆନ୍ତରିକ ବୈଷ୍ଣବପଦାନୁଗା ଭକ୍ତି । ସେ ଗୁରୁଙ୍କ ନିକଟରୁ ଗୋପାଳମନ୍ତ୍ର ଗ୍ରହଣ କରିଥିଲେ । ବାତ୍ସଲ୍ୟ-ଭାବରେ ଅତ୍ୟଧିକ ନିଷ୍ଠାବଶତଃ ସେ ଭଗବାନଙ୍କୁ ପୁତ୍ରସ୍ଥାନୀୟ କରି ଗୋପାଳ ଭାବରେ ଆରାଧନା କରୁଥିଲେ ।

୧୮୮୪ ଖ୍ରୀଷ୍ଟାବ୍ଦର ମାର୍ଗଶୀର ମାସ । ସେତେବେଳକୁ ଶ୍ରୀରାମକୃଷ୍ଣଙ୍କ ନାମ କଲିକତାର ଅନେକଙ୍କ ନିକଟରେ ପରିଚିତ ହୋଇଗଲାଣି । ଏହି ଅଲୌକିକ ଭକ୍ତ ସାଧୁଙ୍କ କଥା ଶୁଣି କାମାରହାଟିର ସେହି ବିଧବା ଭଦ୍ର-ମହିଳା ଦିନେ ତାଙ୍କର ଦର୍ଶନଲାଭ ମାନସରେ ରାଣୀ ରାସମଣିଙ୍କ କାଳୀବାଡ଼ିରେ ଆସି ଉପସ୍ଥିତ ହେଲେ । ତାଙ୍କ ସହିତ ଥିଲେ କାମିନୀନାମ୍ନୀ ତାଙ୍କର ଏକ ଦୂରସମ୍ପର୍କୀୟା ଆତ୍ମୀୟା ଏବଂ ଏହି ଗୋପାଳ-ମା' ଓରଫ୍ ଅଘୋରମଣି । ଠାକୁର ସେଦିନ ସେମାନଙ୍କୁ ଆଦର କରି ନିଜ ଘରେ ବସାଇ ଭକ୍ତିତତ୍ତ୍ୱର ଅନେକ ଉପଦେଶ ଦେଲେ । ଭଜନ ଗାଇ ଶୁଣାଇଲେ ଏବଂ ଆଉ ଥରେ ଆସିବାକୁ କହି ବିଦାୟ ଦେଲେ । ଏହି ପ୍ରଥମ ଦର୍ଶନରେ ହିଁ କାମାରହାଟିର ବ୍ରାହ୍ମଣୀ ଶ୍ରୀରାମକୃଷ୍ଣଦେବଙ୍କ ପ୍ରତି ବିଶେଷ ଭାବରେ ଆକୃଷ୍ଟ ହୋଇପଡ଼ିଲେ । ସୁତରାଂ ଦୁଇଚାରି ମାସ ଘନଘନ ଦକ୍ଷିଣେଶ୍ୱର ଯାତାୟାତ କଲେ । ଇତିମଧ୍ୟରେ ଶ୍ରୀରାମକୃଷ୍ଣଦେବ ମଧ୍ୟ ଥରେ କାମାର-ହାଟିର ଗୋବିନ୍ଦବାବୁଙ୍କ ଉଦ୍ୟାନଗୃହକୁ ଗଲେ । ସେଠାରେ ଶ୍ରୀବିଗ୍ରହଙ୍କ ସମ୍ମୁଖରେ କୀର୍ତ୍ତିନାଦି ହେଲା । ତା'ପରେ ଠାକୁର ଫେରି ଆସିଲେ ଦକ୍ଷିଣେଶ୍ୱର ।

୧୮୮୪ ଖ୍ରୀଷ୍ଟାବ୍ଦ । ଶୀତଋତୁର ପ୍ରତ୍ୟାବର୍ତ୍ତନ ପରେ କୁସୁମାକର ସରସ ବସନ୍ତଋତୁ ପୃଥିବୀରେ ପଦାର୍ପଣ କରିଅଛୁ । ପତ୍ରପୁଷ୍ପଗୀତମୂର୍ତ୍ତି ବସୁନ୍ଧରା ଏକ ଅପୂର୍ବ ଉନ୍ମତ୍ତତାରେ ଜାଗରିତା । ଏହି ସମୟରେ କାମାର-ହାଟିର ବ୍ରାହ୍ମଣୀ ଦିନେ ରାତି ତିନିଟା ସମୟରେ ଜପରେ ବସିଥାଆନ୍ତି । ଜପଶେଷରେ ପ୍ରାଣାୟାମ କରିବାକୁ ଆରମ୍ଭ କରିଛନ୍ତି, ସହସା ଦେଖିଲେ ଯେ ଶ୍ରୀଶ୍ରୀରାମକୃଷ୍ଣଦେବ ତାଙ୍କ ନିକଟରେ ବାମପଟକୁ ବସିଛନ୍ତି । ଏହା

ଦେଖି ସେ ଭାବିଲେ—'ଏ କ'ଣ ? ଏ ଅସମୟରେ ସେ କେଉଁଠାରୁ କପରି ଆସି ଏଠାରେ ପହଞ୍ଚିଲେ ?'' ଗୋପାଳ-ମା' ସେହିସବୁ ଅନୁଭୂତି ତାଙ୍କ ନିଜ ମୁଖରେ ବର୍ଣ୍ଣନା କରିଛନ୍ତି—

"...ସାହସରେ ସହିତ ମୋ ବାମ ହାତରେ ଗୋପାଳର (ଶ୍ରୀରାମକୃଷ୍ଣ-ଦେବଙ୍କର) ବାମ ହାତଟିକୁ ଯେମିତି ଧରିଛି ସେମିତି ସେ ମୂର୍ତ୍ତି କେଉଁଆଡ଼େ ମିଳାଇଗଲେ ଏବଂ ତାଙ୍କ ଭିତରୁ ଦଶ ମାସର ସତକୁସତ ଗୋପାଳ (ହାତରେ ଦେଖାଇ) ଏତେ ବଡ଼ ପିଲା ବାହାରି ଆସି ଗୁରୁଣ୍ଡି ଗୁରୁଣ୍ଡି ଗୋଟେ ହାତ ଟେକି ମୋ ମୁହଁକୁ ଚାହିଁ (ସେ କି ରୂପ ! ଆଉ କି ଚାହାଁଣୀ ! ) କହିଲା—'ମା ! ମତେ ଲବଣୀ ଦେ··· ।' ତା'କଥା ଶୁଣି ଚିତ୍କାର କରି କାନ୍ଦିଉଠିଲି । ·· କାନ୍ଦି କାନ୍ଦି କହିଲି —'ବାବା ! ମୁଁ ଦୁଃଖିନୀ, କାଙ୍ଗାଳିନୀ, ମୁଁ ତତେ କ'ଣ ଖୁଆଇପାରିବି ? ଲବଣୀ କ୍ଷୀର ଆଦି ମୁଁ କାହୁଁ ପାଇବି, ବାବା ?' କିନ୍ତୁ ସେ ଅଦ୍‌ଭୁତ ଗୋପାଳ କ'ଣ ସେ କଥା ଶୁଣେ ? କେବଳ 'ଖାଇବାକୁ ଦେ, ଖାଇବାକୁ ଦେ' କହୁଥାଏ । କ'ଣ କରିବି ? କାନ୍ଦି କାନ୍ଦି ଉଠିଲି, ଶିକାରୁ ଶୁଖିଲା ନଡ଼ିଆ ଲଡ଼ୁ ଦି'ଟା ଆଣି ତା'ହାତରେ ଦେଲି । କହିଲି—'ବାପା ଗୋପାଳ ! ମୁଁ ତୋତେ ଏହି କଦର୍ଯ୍ୟ ଜିନିଷ ଖାଇବାକୁ ଦେଲି ବୋଲି ତୁ ଯେପରି ମୋତେ ଏଭଳି ଖାଇବାକୁ ନ ଦେଉ !'

"ତା'ପରେ—ତା'ପରେ ଆଉ କିଏ ଜପ କରେ ? ଜପ କ'ଣ କରି-ପାରେ ? ଗୋପାଳ ଆସି କୋଳରେ ବସୁଥାଏ, ମାଳା କାଢ଼ି ନେଉଥାଏ, କାନ୍ଧରେ ଚଢ଼ି ଘରମୟ ଘୂରି ବୁଲୁଥାଏ । ଯେମିତି ସକାଳ ହେଲା, ପାଗଳିନୀ ଭଳି ଛୁଟିଲି ଦକ୍ଷିଣେଶ୍ୱର । ଗୋପାଳକୁ ବି କାଖେଇ କରି ସାଙ୍ଗରେ ନେଲି । ମୋ କାନ୍ଧରେ ସେ ମୁଣ୍ଡଟି ରଖିଥାଏ । ତାକୁ ସେମିତି କୋଳେଇ କାଖେଇ ଧରି ବାଟ ଚାଲିଲି । ଗୋପାଳର ଲାଲ୍ ଟୁକ୍‌ଟୁକ୍ ପାଦଦୁଇଟି ମୋ ଛାତି ଉପରେ ଝୁଲୁଥିବାର ମୁଁ ସ୍ପଷ୍ଟ ଦେଖିପାରୁଥାଏ ।''

ଏହି ଭାବରେ ସେଦିନ ଅଘୋରମଣି ଦକ୍ଷିଣେଶ୍ୱରରେ ଉପସ୍ଥିତ ହୋଇ ଭାବାବେଗରେ ଅଶ୍ରୁ ବିସର୍ଜନ କରିକରି ଶ୍ରୀରାମକୃଷ୍ଣଦେବଙ୍କୁ କେତେ

କଥା କହୁଗଲେ । "ଏଇ ଯେ ଗୋପାଳ, ମୋ କୋଳରେ"—"ଏଇ ଯେ ତୁମ (ଶ୍ରୀରାମକୃଷ୍ଣ) ଭିତରକୁ ପଶିଗଲା ।"—"ଏଇ ଦେଖ, ପୁଣି ବାହାରି ଆସିଲା"—"ଆ ବାବା ! ଦୁଃଖିନୀ ମାଆର କୋଳକୁ ଆ"—ଏହିପରି କହୁ କହୁ ଦେଖନ୍ତି ଯେ ଚପଳ ଗୋପାଳ କେତେବେଳେ ଶ୍ରୀଶ୍ରୀଠାକୁରଙ୍କ ଶ୍ରୀଅଙ୍ଗରେ ମିଳାଇ ଯାଉଛି, ପୁଣି କେତେବେଳେ ବା ଉଜ୍ଜ୍ୱଳ ବାଳକ ମୂର୍ତ୍ତିରେ ତାଙ୍କ ନିକଟକୁ ଆସି ଅଦୃଷ୍ଟପୂର୍ବ ବାଲ୍ୟଲୀଳାର ତରଙ୍ଗ ତୋଫାନ୍ ତୋଳି ତାଙ୍କୁ ଆତ୍ମହରା କରି ଦେଉଛି ! ସେହି ପ୍ରବଳ ଭାବତରଙ୍ଗରେ ପଡ଼ିଲେ କେହି କ'ଣ ଆପଣାକୁ ସମ୍ଭାଳିପାରେ !

ସମସ୍ତ ଦିନ ପାଖରେ ରଖି, ସ୍ନାନାହାର କରାଇ କିଛି ପରିମାଣରେ ଶାନ୍ତ କରି ସନ୍ଧ୍ୟାର କିଛି ପୂର୍ବରୁ ଶ୍ରୀରାମକୃଷ୍ଣଦେବ ଗୋପାଳ-ମା'ଙ୍କୁ କାମାରହାଟି ପଠାଇଦେଲେ । ଫେରିବା ବେଳେ ମଧ୍ୟ ସେହି ଭାବଦୃଷ୍ଟ ବାଳକ ଗୋପାଳ ପୂର୍ବଭଳି ବ୍ରାହ୍ମଣୀଙ୍କ କୋଳରେ ଯାଇ ଉଠିଲା । ଘରକୁ ଫେରି ଗୋପାଳ-ମା' ପୂର୍ବ ଅଭ୍ୟାସାନୁସାରେ ଜପ କରିବାକୁ ବସିଲେ । କିନ୍ତୁ ସେଦିନ କ'ଣ ଆଉ ଜପ ହୁଏ ? ଯାହା ପାଇଁ ଜପ, ଯାହାଙ୍କୁ ଏତେ-ଦିନ ଧରି ଭାବୁ ହେଉଛନ୍ତି, ସେ ନିଜେ ଯେ ସମ୍ମୁଖରେ ନାନା ରଙ୍ଗ ନାନା ଅଳି କରି ବୁଲୁଛି ! ଶେଷରେ ବ୍ରାହ୍ମଣୀ ଜପରୁ ଉଠି ଗୋପାଳକୁ କୋଳରେ ଧରି ଖଟ ଉପରେ ଶୋଇଲେ । ଏହି ଘଟଣାର ପରଦିନ ସକାଳୁ ସକାଳୁ ସାକ୍ଷାତ୍ ଗୋପାଳକୁ ରନ୍ଧନ କରି ଖୁଆଇବା ପାଇଁ ବଗିଚାରୁ ସେ ଶୁଖିଲା କାଠ ଗୋଟାଇବାକୁ ଗଲେ । କିନ୍ତୁ ଏ କ'ଣ ? ସେ ଦେଖିଲେ ଯେ ଗୋପାଳ ମଧ୍ୟ ତାଙ୍କ ସଙ୍ଗେ ସଙ୍ଗେ ବଗିଚାକୁ ଯାଇ କାଠିକୁଟା ଗୋଟାଉଛି ଏବଂ ରୋଷେଇଘରେ ଆଣି ଜମା କରୁଛି । ଏହିପରି ଭାବରେ ମାଆପୁଅଙ୍କର ଜାଳେଣୀ କାଠ ସଂଗ୍ରହ ଶେଷ ହେଲା । ତା'ପରେ ଚାଲିଲା ରାନ୍ଧଣା । ରାନ୍ଧିଲା ବେଳେ ମଧ୍ୟ ଦୁଷ୍ଟ ଗୋପାଳ କେତେବେଳେ ଆସି ପାଖରେ ବସୁଥାଏ, କେତେବେଳେ ପୁଣି ପିଠିରେ ଲଦି ହୋଇ ପଡୁଥାଏ; କେତେ କ'ଣ ସବୁ କହି ଯାଉଥାଏ, କେତେ କ'ଣ ଅଳି କରି ବୁଲୁଥାଏ !

ଏହାପରେ କିଛୁଦିନ ବିତିଗଲା । ଦିନେ ଗୋପାଳ-ମା' ଦକ୍ଷିଣେଶ୍ୱର ଆସିଥାଆନ୍ତି । ଠାକୁର ତାଙ୍କୁ ଦେଖି କହିଲେ, "ତୁମେ ବର୍ତ୍ତମାନ ମଧ୍ୟ ଏତେ ଜପତପ କାହିଁକି କରୁଛ ? ତୁମର ତ ଖୁବ୍ ହୋଇଗଲାଣି (ମାନେ ଦିବ୍ୟ ଦର୍ଶନାଦି) !"

ଗୋପାଳ-ମା' କହିଲେ—ଜପ କରିବି ନାହିଁ ? ମୋର କ'ଣ ସବୁ ହୋଇ ଯାଇଛି ? ଠାକୁର କହିଲେ—ତୁମର ସବୁ ହୋଇଗଲାଣି ।

ଗୋପାଳ-ମା' କରୁଣ ଆଗ୍ରହରେ ପୁନଶ୍ଚ ପଚାରିଲେ—ସବୁ ହୋଇଛି ? ମାନେ ? ଠାକୁର ଦୃଢ଼ ନିଶ୍ଚିତ କଣ୍ଠରେ ଉତ୍ତର ଦେଲେ—ହଁ ! ସବୁ ହୋଇଗଲାଣି ତୁମର । ଗୋପାଳ-ମା' ଅଳି କଲାଭଳି କହିଲେ—କୁହ ତ ! କ'ଣ ସବୁ ହୋଇଛି ? ଠାକୁର ଆଶ୍ୱାସନା ଦେଇ କହିଲେ—ହଁ ତୁମ ନିଜ ପାଇଁ ସବୁ ଜପତପ ଶେଷ ହୋଇଯାଇଛି । ତେବେ (ନିଜର ଶରୀର ଦେଖାଇ) ଏହି ଶରୀରଟା ଭଲ ରହିବ ବୋଲି ଯଦି ଇଚ୍ଛା ହୁଏ ତା'ହେଲେ କରିପାର ।

ଗୋପାଳ-ମା' ଆବେଗପୂର୍ଣ୍ଣ କଣ୍ଠରେ କହି ଉଠିଲେ—ତେବେ ବର୍ତ୍ତମାନଠାରୁ ଯାହା କିଛି କରିବି ତୁମରି ପାଇଁ—ସବୁ ତୁମରି ପାଇଁ—ତୁମରି ପାଇଁ ।

ଶ୍ରୀରାମକୃଷ୍ଣଦେବଙ୍କଠାରେ ଇଷ୍ଟବୁଦ୍ଧି ଦୃଢ଼ ହେବା ପରଠାରୁ ତାଙ୍କର ଆଉ ସବୁ ସମୟରେ ଗୋପାଳମୂର୍ତ୍ତିର ଦର୍ଶନ ହେଉ ନ ଥିଲା । ତେବେ ଯେତେବେଳେ ଦେଖିବା ପାଇଁ ପ୍ରାଣ ବ୍ୟାକୁଳ ହୁଏ, ସେତେବେଳେ ସେ ଗୋପାଳଙ୍କର ଭାବଦର୍ଶନ ପାଇ ପାରୁଥିଲେ । ସେହି ସମୟରେ ଦିନେ ଗୋପାଳ-ମା' ଓ ଶ୍ରୀନରେନ୍ଦ୍ରନାଥ (ସ୍ୱାମୀ ବିବେକାନନ୍ଦ) ଉଭୟେ ଦକ୍ଷିଣେଶ୍ୱରରେ ଉପସ୍ଥିତ ଥାଆନ୍ତି । ଦୁହିଁଙ୍କୁ ଏକାଠି ପାଇ ଠାକୁର ଦିନେ ଗୋଟିଏ ମଜା କଥା ଘଟାଇ ବସିଲେ । ଗୋପାଳ ଯେପରି ଭାବରେ ତାଙ୍କ ସହିତ ଲୀଳାବିଳାସ କରୁଥିଲେ, ସେହି ସମସ୍ତ କଥା ନରେନ୍ଦ୍ର (ବିବେକାନନ୍ଦ)ଙ୍କ ଆଗରେ ବର୍ଣ୍ଣନା କରିବା ଲାଗି ସେ ଗୋପାଳ-ମା'ଙ୍କୁ କହିଲେ । ଠାକୁରଙ୍କ ଆଦେଶ ପାଇ ଗୋପାଳ-ମା' ଅଶ୍ରୁବିଜଡ଼ିତ

ଗଦ୍‌ଗଦ୍‌ସ୍ୱରରେ ଗୋପାଳରୂପୀ ଶ୍ରୀଭଗବାନଙ୍କ ସହିତ ତାଙ୍କର ଲୀଳା-ବିଳାସର କଥା ଆଦ୍ୟପ୍ରାନ୍ତ କହିଗଲେ । ନରେନ୍ଦ୍ରନାଥଙ୍କର ବାହାରେ କଠୋର ଜ୍ଞାନ-ବିଚାରର ଆବରଣ ଥିଲେ ମଧ୍ୟ ତାଙ୍କର ଅନ୍ତର ଭକ୍ତି ଏବଂ ପ୍ରେମରେ ପରିପୂର୍ଣ୍ଣ ଥିଲା । ସେ ବୃଦ୍ଧାଙ୍କର ଏ ପ୍ରକାର ଭାବାବସ୍ଥା ଓ ଦର୍ଶନାଦିର କଥା ଶୁଣି ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ ।

ଗୋପାଳ-ମା' ଦକ୍ଷିଣେଶ୍ୱର ଆସିଲେ ଠାକୁର ତାଙ୍କୁ ଖୁବ୍ ଭଲ ଭଲ ଜିନିଷ ଖୁଆନ୍ତି । ଦିନେ ଗୋପାଳର ମାଆ କହିଲେ, "ଗୋପାଳ ! ତୁମେ ମୋତେ ଏତେ ଖୁଆଇବାକୁ ଭଲପାଅ, କାହିଁକି ?" ଶ୍ରୀରାମକୃଷ୍ଣ କହିଲେ, "ତୁମେ ଯେ ମୋତେ ଆଗେ କେତେ ଖୁଆଇଛ ।" ଗୋପାଳ-ମା' ଆଶ୍ଚର୍ଯ୍ୟ ହୋଇ ପଚାରିଲେ, "ଆଗେ କେବେ ଭଲ ଖୁଆଇଛି ?" ଶ୍ରୀରାମକୃଷ୍ଣ ଉତ୍ତର ଦେଲେ, "ଜନ୍ମାନ୍ତରରେ ।" (ଅର୍ଥାତ୍ ପୂର୍ବ ଜନ୍ମରେ)

ଠାକୁରଙ୍କର ଅଦର୍ଶନ ପରେ ଗୋପାଳ-ମା'ଙ୍କର ଅଶାନ୍ତିର ଆଉ ସୀମା ରହିଲା ନାହିଁ । ସେହିଦିନଠାରୁ ସେ ବରାହନଗର ମଠକୁ ଠାକୁରଙ୍କର ସନ୍ନ୍ୟାସୀ ଭକ୍ତମାନଙ୍କ ନିକଟକୁ ଆସୁଥିଲେ ଏବଂ ଆସିଲାମାତ୍ରେ ଶାନ୍ତିଲାଭ କରୁଥିଲେ । ଗୋପାଳ-ମା'ଙ୍କର ଅଦ୍ଭୁତ ଜୀବନକଥା ଶୁଣି ଭଗିନୀ ନିବେଦିତା ଏତେ ମୋହିତ ହୋଇଯାଇଥିଲେ ଯେ ୧୯୦୪ ଖ୍ରୀଷ୍ଟାବ୍ଦରେ ଗୋପାଳ-ମା'ଙ୍କୁ ଅସୁସ୍ଥ ଶରୀର ଓ ଚଳତ୍‌ଶକ୍ତିବିହୀନ ଅବସ୍ଥାରେ ଯେତେ-ବେଳେ ବାଗ୍‌ବଜାରସ୍ଥ ବଳରାମବାବୁଙ୍କ ଘରକୁ ଅଣାଯାଇଥିଲା, ସେତେ-ବେଳେ ସେ ତାଙ୍କୁ ବାଗ୍‌ବଜାରର ନିଜ ଘରେ ନେଇ ରଖିବାର ଆଗ୍ରହ ପ୍ରକାଶ କରିଥିଲେ । ଗୋପାଳ-ମା' ସେଥିରେ ସମ୍ମତ ହୋଇ ନିବେଦିତାଙ୍କ ଭବନରେ ଯାଇ ରହିଥିଲେ । ଏହି ଭାବରେ ପ୍ରାୟ ଦୁଇବର୍ଷ ଅତିବାହିତ କରି ୧୯୦୬ ମସିହା ଜୁଲାଇ ୮ ତାରିଖରେ ଗୋପାଳ-ମା' ଗଙ୍ଗାକୂଳରେ ଅର୍ଦ୍ଧନିମଜ୍ଜିତାବସ୍ଥାରେ ଶ୍ରୀଭଗବାନଙ୍କ ଅଭୟପଦରେ ମିଳିତ ହୋଇଥିଲେ ।

## ଦ୍ୱାତ୍ରିଂଶ ଅଧ୍ୟାୟ

# ପାନିହାଟିର ମହୋତ୍ସବ ଓ ବଲରାମଙ୍କ ମନ୍ଦିରରେ

୧୮୮୫ ମସିହାର କଥା । ସେହି ବର୍ଷ ଗ୍ରୀଷ୍ମ କାଳରେ ପ୍ରବଳ ଗରମ ଅନୁଭୂତ ହେଲା । ଏହି ଗରମରେ ଠାକୁର ଖୁବ୍ କଷ୍ଟ ପାଇବାର ଦେଖି କେତେକ ଭକ୍ତ ତାଙ୍କୁ ବରଫ ବ୍ୟବହାର କରିବାକୁ ଅନୁରୋଧ କଲେ । ବରଫ ଆସିଲା । ସର୍ବତରେ ବରଫ ପକାଇ ପାନ କରି ଠାକୁର ଶ୍ରେଷ୍ଠ ପିଲାଭଳି ଖୁବ୍ ଆନନ୍ଦ ଅନୁଭବ କଲେ; କିନ୍ତୁ ମାସେ ଦୁଇମାସ ଏହିପରି ବରଫ ବ୍ୟବହାର କରିବା ଫଳରେ ତାଙ୍କର ଗଳାରେ ବେଦନା ଆରମ୍ଭ ହେଲା । ଅଣ୍ଡା ଲାଗି ତାଙ୍କର କଣ୍ଠ ଓ ତାଳୁ ଦେଶ ଈଷତ୍ ଫୁଲିଛି ବୋଲି ଭାବି ପ୍ରଥମେ ସାମାନ୍ୟ ପ୍ରଲେପର ବ୍ୟବସ୍ଥା ହେଲା; କିନ୍ତୁ କିଛି ଦିନ ଧରି ଔଷଧ ପ୍ରୟୋଗରେ ମଧ୍ୟ କିଛି ଫଳ ମିଳିଲା ନାହିଁ ଦେଖି ଜଣେ ଭକ୍ତ ବହୁବଜାରର ଡାକ୍ତର ରାଖାଲବାବୁଙ୍କୁ ଡାକି ଆଣିଲେ । ତାଙ୍କର ଏପ୍ରକାର ରୋଗ ଭଲ କରିବାର ଦକ୍ଷତା ଥିଲା । ଡାକ୍ତର ରୋଗ ନିର୍ଣ୍ଣୟ କରି ଗଳା ଭିତରେ ଓ ବାହାରେ ଲଗାଇବା ପାଇଁ ଔଷଧ ମାଲିଶର ବନ୍ଦୋବସ୍ତ କରିଦେଲେ ଏବଂ ଠାକୁର ଯେପରି କିଛିଦିନ ପାଇଁ କଥା ନ କହନ୍ତି ଓ ବାରମ୍ବାର ସମାଧିସ୍ଥ ନ ହୁଅନ୍ତି, ସେ ବିଷୟରେ ସମସ୍ତଙ୍କୁ ଯଥାସମ୍ଭବ ଲକ୍ଷ୍ୟ ରଖିବାକୁ ତାଗିଦ୍ କରିଗଲେ ।

କ୍ରମେ ଜ୍ୟେଷ୍ଠ ମାସର ଶୁକ୍ଳା ତ୍ରୟୋଦଶୀ ତିଥି ଆସିଲା । କଲିକତାର କେତେକ ମାଇଲ ଉତ୍ତରକୁ ଗଙ୍ଗାତୀରବର୍ତ୍ତୀ ପାନିହାଟି ଗ୍ରାମରେ ପ୍ରତିବର୍ଷ ଏହିଦିନ ବୈଷ୍ଣବ ସଂପ୍ରଦାୟର ଗୋଟିଏ ବିଶେଷ ମେଳା ଅନୁଷ୍ଠିତ ହୁଏ । ଶ୍ରୀଗୌରାଙ୍ଗ ମହାପ୍ରଭୁ ସନ୍ନ୍ୟାସ ଗ୍ରହଣ କରି ଯେତେବେଳେ ନୀଳାଚଳରେ ବାସ କଲେ, ସେତେବେଳେ ଶ୍ରୀନିତ୍ୟାନନ୍ଦ ପ୍ରଭୁପାଦ ବୈଷ୍ଣବ ଧର୍ମ ପ୍ରଚାରର ଦାୟିତ୍ୱ ବହନ କରି ଗଙ୍ଗାତୀରବର୍ତ୍ତୀ ଖଡ଼ଦହ ଗ୍ରାମକୁ

ପ୍ରଧାନ କେନ୍ଦ୍ର କରି ବଙ୍ଗଳାର ନାନା ସ୍ଥାନରେ ପରିଭ୍ରମଣ କରିବାକୁ ଲାଗିଲେ । ସାଙ୍ଗୋପାଙ୍ଗପରିବୃତ ଶ୍ରୀନିତ୍ୟାନନ୍ଦ ଏକ ସମୟରେ ପାନିହାଟି ଗ୍ରାମରେ ଅବସ୍ଥାନ କରିବା ବେଳେ ଭକ୍ତପ୍ରବର ରଘୁନାଥଦାସ ଗୋସ୍ୱାମୀ ଚୁଡ଼ା, ଦଧି, ଦୁଗ୍ଧ, ଶର୍କରା, କଦଳୀ ପ୍ରଭୃତି ଦେବତାଙ୍କୁ ନିବେଦନ-ପୂର୍ବକ ଭକ୍ତମଣ୍ଡଳୀ ସହ ତାଙ୍କୁ ଓ ସମାଗତ ଶତଶତ ବ୍ୟକ୍ତିଙ୍କୁ ସେଦିନ ଭାଗୀରଥୀତୀରରେ ଭୂରି ଭୋଜନ ଦେଇ ପରିତୃପ୍ତ କରାଇଥିଲେ । ନିତ୍ୟାନନ୍ଦ ପ୍ରଭୁପାଦଙ୍କ ଆଦେଶରେ ଅନତିକାଳପରେ ସେ ଚିରକାଳ ପାଇଁ ସଂସାର ତ୍ୟାଗ କରି ନୀଳାଚଳକୁ ଗମନ କଲେ । ବୈଷ୍ଣବ ଭକ୍ତଗଣ ତାଙ୍କର କଥା ସ୍ମରଣ ରଖି ତଦବଧି ପ୍ରତିବର୍ଷ ଏହି ଦିନ ପାନିହାଟି ଗ୍ରାମରେ ଗଙ୍ଗାକୂଳରେ ସମବେତ ହୋଇ ତାଙ୍କ ସଦୃଶ ଭଗବତ୍‌-ପ୍ରସନ୍ନତାଲାଭ ନିମିତ୍ତ ଶ୍ରୀଗୌରାଙ୍ଗ ଓ ନିତ୍ୟାନନ୍ଦ ପ୍ରଭୁପାଦଙ୍କ ଉଦ୍ଦେଶ୍ୟରେ ଏହିଭଳି ଉତ୍ସବ ସମ୍ପନ୍ନ କରି-ଆସୁଅଛନ୍ତି । କାଳକ୍ରମେ ଏହା ପାନିହାଟିର "ଚୁଡ଼ା ମହୋତ୍ସବ" ନାମରେ ଭକ୍ତସମାଜରେ ସୁଖ୍ୟାତ ହୋଇଥିଲା ।

ଠାକୁର ଏହା ପୂର୍ବରୁ ପାନିହାଟିର ମହୋତ୍ସବରେ ଅନେକ ଥର ଯୋଗଦାନ କରିଥିଲେ; କିନ୍ତୁ ତାଙ୍କର ଇଂରେଜୀଶିକ୍ଷିତ ଭକ୍ତମାନଙ୍କ ଆଗମନ ପରଠାରୁ ନାନା କାରଣବଶତଃ ସେ କେତେବର୍ଷ ପାଇଁ ସେଠାରେ ଯୋଗ ଦେଇପାରି ନ ଥିଲେ । ଠାକୁର ଏହି ବର୍ଷ ଏହି ଉତ୍ସବକୁ ଯିବା ଲାଗି ଇଚ୍ଛା ପ୍ରକାଶ କଲେ । ତାହା ଶୁଣି ରାମଚନ୍ଦ୍ର ପ୍ରମୁଖ ପ୍ରାୟ ପଚିଶି ଜଣ ଭକ୍ତ ଦୁଇଟି ନୌକା ଭଡ଼ା କରି ସକାଳ ନଅଟା ଭିତରେ ଆସି ଦକ୍ଷିଣେଶ୍ୱରରେ ପହଞ୍ଚିଲେ । ଦଶଟା ଭିତରେ ସମସ୍ତେ ଭୋଜନ ଶେଷ କରି ଯିବା ଲାଗି ପ୍ରସ୍ତୁତ ହୋଇଗଲେ । ବୁଦ୍ଧିମତୀ ଶ୍ରୀଶ୍ରୀମାତା-ଠାକୁରାଣୀ କିନ୍ତୁ ନାନା ଦିଗରୁ ଚିନ୍ତା କରି ଯିବାର ସଙ୍କଳ୍ପ ତ୍ୟାଗ କଲେ ।

ପ୍ରାୟ ଦ୍ୱିପ୍ରହର ବେଳକୁ ସମସ୍ତେ ପାନିହାଟିରେ ପହଞ୍ଚିଲେ । ନୌକାରୁ ଓହ୍ଲାଇ ଠାକୁର ଭକ୍ତମାନଙ୍କ ସହିତ ସିଧା ଯାଇ ମଣିସେନଙ୍କ ଘରେ ପହଞ୍ଚିଲେ । ତାଙ୍କୁ ଦେଖିବା ମାତ୍ରେ ଘରର ସମସ୍ତେ ପ୍ରଣାମ କରି ବୈଠକଖାନାକୁ ନେଇଗଲେ । ବୈଠକଖାନା ପାଖରେ ଠାକୁରଘର ।

ମନ୍ଦିରସଂଲଗ୍ନ ନାଟମନ୍ଦିର ଉପରେ ଉପସ୍ଥିତ ହୋଇ ଠାକୁର ଓ ଭକ୍ତଗଣ ଯୁଗଲବିଗ୍ରହ ମୂର୍ତ୍ତି ଦର୍ଶନ କଲେ । ଠାକୁର ଯେତେବେଳେ ପ୍ରଣାମ କରୁଥିଲେ, ସେତେବେଳେ ଦଳେ କୀର୍ତ୍ତନୀୟା ମନ୍ଦିର ଅଗଣାକୁ ଆସି କୀର୍ତ୍ତନ ଆରମ୍ଭ କଲେ । ଠାକୁର ନାଟମନ୍ଦିରର ଗୋଟିଏ ପାର୍ଶ୍ୱରେ ଦଣ୍ଡାୟମାନ ହୋଇ କୀର୍ତ୍ତନ ଶୁଣୁଥିଲେ । ହଠାତ୍ କେତେବେଳେ ସେଠାରୁ ଦଉଡ଼ିଯାଇ କୀର୍ତ୍ତନଦଳର ମଧ୍ୟଭାଗରେ ଅବତୀର୍ଣ୍ଣ ହୋଇ ଅର୍ଦ୍ଧବାହ୍ୟ-ଦଶାରେ ସିଂହବିକ୍ରମରେ ନୃତ୍ୟ କରିବାକୁ ଲାଗିଲେ । ପ୍ରାୟ ଅଧଘଣ୍ଟାଏ ପରେ ଠାକୁରଙ୍କୁ କିଞ୍ଚିତ୍ ପ୍ରକୃତିସ୍ଥ ଦେଖି ଭକ୍ତଗଣ ତାଙ୍କୁ କୀର୍ତ୍ତନ-ସଂପ୍ରଦାୟ ଭିତରୁ ଖସେଇ ନେବା ପାଇଁ ଚେଷ୍ଟା କଲେ । ସ୍ଥିର ହେଲା—ଅଳ୍ପ ଦୂରରେ ଅବସ୍ଥିତ ମହାପ୍ରଭୁଙ୍କ ପାର୍ଷଦ ରାଘବ ପଣ୍ଡିତଙ୍କ ଘରକୁ ଯାଇ ଯୁଗଲବିଗ୍ରହ ଓ ଶାଳଗ୍ରାମଶିଳା ଦର୍ଶନ କରି ସମସ୍ତେ ନୌକାକୁ ଫେରିଯିବେ । କୀର୍ତ୍ତନ-ସଂପ୍ରଦାୟ କିନ୍ତୁ ତାଙ୍କର ସଙ୍ଗ ଛାଡ଼ିଲେ ନାହିଁ; ମହାଉତ୍ସାହରେ ନାମଗାନ କରିକରି ତାଙ୍କ ପଛେ ପଛେ ଯିବାକୁ ଲାଗିଲେ । ଠାକୁର ସେତେବେଳେ ଦୁଇ ଚାରିପାଦ ଅଗ୍ରସର ହୋଇ ଭାବାବେଶରେ ସ୍ଥିର ହୋଇ ରହିଗଲେ । ବାରମ୍ବାର ଏପରି ହେବାରୁ ଭକ୍ତଗଣ ଅତି ଧୀରେ ଧୀରେ ଅଗ୍ରସର ହେବାକୁ ବାଧ୍ୟ ହେଲେ । ଭାବାବିଷ୍ଟ ଠାକୁରଙ୍କ ଦେବଦେହରେ ସେଦିନ ଯେଉଁ ଅପୂର୍ବ ଶ୍ରୀ ଫୁଟି ଉଠିଥିଲା, ତାହା ଯଥାଯଥ ବର୍ଣ୍ଣନା କରିବା ମନୁଷ୍ୟ-ଶକ୍ତି ପକ୍ଷରେ ଅସମ୍ଭବ । ତାଙ୍କର ଉନ୍ନତ ଶରୀର ଆହୁରି ଦୀର୍ଘ ଏବଂ ସ୍ୱପ୍ନଦୃଷ୍ଟ ଶରୀରସଦୃଶ ଲଘୁ ପ୍ରତୀତ ହେଉଥିଲା । ଦେହର ରଙ୍ଗ ଉଜ୍ଜ୍ୱଳ ଗୌର-ବର୍ଣ୍ଣରେ ପରିଣତ ହୋଇ ଯାଇଥିଲା । ଭାବପ୍ରଦୀପ୍ତ ମୁଖମଣ୍ଡଳ ଦିବ୍ୟଜ୍ୟୋତି ବିକୀର୍ଣ୍ଣ କରି ଚତୁଃପାର୍ଶ୍ୱ ଆଲୋକିତ କରୁଥିଲା । ଶାନ୍ତ ଓ ଆନନ୍ଦପୂର୍ଣ୍ଣ ମୁଖମଣ୍ଡଳର ସେହି ଅନୁପମ ସ୍ୱର୍ଗୀୟ ହସଟିକିକ ଦୃଷ୍ଟିପଥରେ ପଡ଼ିବାମାତ୍ରେ ମନ୍ତ୍ରମୁଗ୍ଧ ଭଳି ଜନସାଧାରଣ କିଛି ସମୟ ପର୍ଯ୍ୟନ୍ତ ସମସ୍ତ କଥା ଭୁଲିଯାଇ ତାଙ୍କର ପଦାନୁସରଣ କରିବାକୁ ଲାଗିଲେ । ଉଜ୍ଜ୍ୱଳ ଗୈରିକବର୍ଣ୍ଣର ପରି-ଧେୟ ମଠାଖଣ୍ଡିକ ଏହି ଅପୂର୍ବ ଅଙ୍ଗକାନ୍ତି ସହିତ ପୂର୍ଣ୍ଣ ସାମଞ୍ଜସ୍ୟରେ ମିଳିତ ହୋଇ ତାଙ୍କୁ ଅଗ୍ନିଶିଖା ପରିବ୍ୟାପ୍ତ ବୋଲି ଭ୍ରମ ସୃଷ୍ଟି କରୁଥିଲା ।

କ୍ରମେ ଏକ ବିରାଟ ଜନସଙ୍ଘ ଭାବାବିଷ୍ଟ ଠାକୁରଙ୍କୁ ବେଷ୍ଟନ କରି ରାଘବ ପଣ୍ଡିତଙ୍କ କୁଟୀରାଭିମୁଖେ ଧୀରପଦରେ ଅଗ୍ରସର ହେବାକୁ ଲାଗିଲା । ସେଠାରେ ପହଞ୍ଚିବାକୁ ପ୍ରାୟ ତିନି ଘଣ୍ଟା ଲାଗିଗଲା । ଏଠାକୁ ଆସି ମନ୍ଦିର ମଧ୍ୟରେ ଦର୍ଶନ, ସ୍ପର୍ଶନ ଓ ବିଶ୍ରାମାଦିରେ ଠାକୁରଙ୍କର ଅର୍ଦ୍ଧଘଣ୍ଟାକାଳ ଅତୀତ ହେଲା ଏବଂ ତାଙ୍କ ସହିତ ଆସିଥିବା ସେହି ବିରାଟ ଜନସଙ୍ଘ ଧୀରେ ଧୀରେ ଇତଃସ୍ତତଃ ଖେଳେଇ ହୋଇଗଲେ । ଭିଡ଼ କମିବାର ଦେଖି ଭକ୍ତଗଣ ତାଙ୍କୁ ନୌକାକୁ ଘେନି ଆସିଲେ । ନୌକା କୂଳ ଛାଡ଼ି ଗଙ୍ଗା ମଧ୍ୟକୁ ପ୍ରବେଶ କଲା । ରାତି ପ୍ରାୟ ସାଢ଼େ ଆଠଟା ବେଳକୁ ସମସ୍ତେ ଦକ୍ଷିଣେଶ୍ୱର କାଳୀବାଡ଼ିରେ ପହଞ୍ଚିଗଲେ ।

ପାନିହାଟି ମହୋତ୍ସବରେ ଯୋଗଦାନ କରି ଠାକୁରଙ୍କ ଗଳାର ବେଦନା ବଢ଼ିଗଲା । ଡାକ୍ତରମାନେ ପରୀକ୍ଷାପୂର୍ବକ ସ୍ଥିର କଲେ ଯେ ତାଙ୍କର "କ୍ଲର୍ଜିମ୍ୟାନ୍ସୋର୍‌ଥ୍ରୋଟ୍" ବା "ଧର୍ମପ୍ରଚାରକଙ୍କ ଗଳାବ୍ୟାଧି" ହୋଇଛି । ଏ ପ୍ରକାର ଗଳାବ୍ୟଥା ଧର୍ମପ୍ରଚାରକମାନଙ୍କର ହୋଇଥାଏ । ରୋଗ ନିର୍ଣ୍ଣୟ କରି ଡାକ୍ତରମାନେ ଔଷଧ ପଥ୍ୟାଦିର ବ୍ୟବସ୍ଥା କରିଦେଲେ । ମାତ୍ର ପ୍ରଗାଢ଼ ଈଶ୍ୱରପ୍ରେମ ଏବଂ ସଂସାରତପ୍ତ ଜନଗଣଙ୍କ ପ୍ରତି ଅପାର କରୁଣାବଶତଃ ଠାକୁର ନିଷେଧ ସତ୍ତ୍ୱେ ସମାଧି ଓ ବାକ୍ୟସଂଯମ ଦିଗରେ ଯଥାଯଥ ଲକ୍ଷ୍ୟ ରଖିବାକୁ ସମର୍ଥ ହେଲେ ନାହିଁ । ଶ୍ରାବଣ ମାସ ଯାଇ ଭାଦ୍ରବର ମଧ୍ୟ କିଛିଦିନ ଗତ ହୋଇଗଲା; କିନ୍ତୁ ଠାକୁରଙ୍କ ଗଳାର ବେଦନା କ୍ରମଶଃ ବୃଦ୍ଧି ପାଇଲା ସିନା, କମିବାର କୌଣସି ଲକ୍ଷଣ ଦେଖାଗଲା ନାହିଁ । ଠାକୁରଙ୍କର କଣ୍ଠ ଓ ତାଳୁଦେଶରୁ ରକ୍ତ ପଡ଼ିବାର ସମ୍ବାଦ ପାଇ ନରେନ୍ଦ୍ରନାଥ, ରାମ, ଗିରିଶ, ଦେବେନ୍ଦ୍ର, ମାଷ୍ଟର (ମହେନ୍ଦ୍ର) ପ୍ରଭୃତି ସମସ୍ତେ ସ୍ଥିର କଲେ ଯେ କଲିକତାରେ ଗୋଟିଏ ଘର ଭଡ଼ା କରି ଖୁବ୍ ଶୀଘ୍ର ଠାକୁରଙ୍କୁ ସେଠାକୁ ଆଣି ଚିକିତ୍ସା କରାଇବାକୁ ପଡ଼ିବ । ନରେନ୍ଦ୍ରନାଥ ଜଣେ ଯୁବକଙ୍କୁ କହିଲେ—"ଯାହାଙ୍କୁ ନେଇ ଏତେ ଆନନ୍ଦ, ସେ ବୋଧହୁଏ ଏଥର ଆମଠାରୁ ଖସିଯିବେ । ମୁଁ ଡାକ୍ତରୀଗ୍ରନ୍ଥ ପଢ଼ି ଏବଂ ଡାକ୍ତର ବନ୍ଧୁମାନଙ୍କୁ ପଚାରି ଜାଣିଛି—ଏହି ପ୍ରକାର କଣ୍ଠରୋଗ କ୍ରମେ କର୍କଟ ରୋଗରେ

(cancer) ପରିଣତ ହୋଇଯାଏ । ଆଜି ରକ୍ତ ପଡ଼ିବା କଥା ଶୁଣି ଏହି ରୋଗ ବୋଲି ମୋର ସନ୍ଦେହ ହେଉଛି । ଏ ରୋଗର ଔଷଧ ଆଜି ପର୍ଯ୍ୟନ୍ତ ଆବିଷ୍କୃତ ହୋଇନାହିଁ ।"

ତା'ପରଦିନ କେତେଜଣ ପ୍ରବୀଣ ଭକ୍ତ ଦକ୍ଷିଣେଶ୍ୱର ଯାଇ କଲିକତାରେ ରହି ଚିକିତ୍ସିତ ହେବାକୁ ଅନୁରୋଧ ଜଣାଇଲେ । ଠାକୁର ଏଥିରେ ସମ୍ମତ ହେଲେ । ବାଗ୍‌ବଜାର ଦୁର୍ଗାଚରଣ ମୁଖାର୍ଜି ଷ୍ଟ୍ରିଟର ଗୋଟିଏ ଗ୍ରେଟ ଘର, ଛାତ ଉପରେ ଠିଆ ହେଲେ ଗଙ୍ଗାଦର୍ଶନ କରିହୁଏ । ଭକ୍ତମାନେ ସେହି ଘରଟିକୁ ଭଡ଼ାରେ ନେଇଗଲେ । ଅଳ୍ପକାଳ ପରେ (ଅର୍ଥାତ୍ ୧୮୮୫ ମସିହାରେ) ଅକ୍ଟୋବର ମାସର ପ୍ରଥମାର୍ଦ୍ଧରେ ଠାକୁରଙ୍କୁ କଲିକତା ଅଣାଗଲା; କିନ୍ତୁ ଠାକୁର ସେହି ଗ୍ରେଟ ରୁଦ୍ଧ ପରିବେଶରେ ରହିପାରିଲେ ନାହିଁ । ଗଙ୍ଗାକୂଳରେ କାଳୀବାଡ଼ିର ପ୍ରଶସ୍ତ ଉଦ୍ୟାନର ମୁକ୍ତ ବାୟୁରେ ରହିବାରେ ଅଭ୍ୟସ୍ତ ଠାକୁର ଏହି ସ୍ୱଳ୍ପପରିସର ଘରେ ପ୍ରବେଶ କଲା ମାତ୍ରେ ଏସ୍ଥାନରେ ବାସ କରିପାରିବେ ନାହିଁ ବୋଲି କହି ତତ୍‌କ୍ଷଣାତ୍ ପଦବ୍ରଜରେ ରାମକାନ୍ତ ବସୁ ଷ୍ଟ୍ରିଟସ୍ଥ ବଳରାମ ବସୁଙ୍କ ଘରକୁ ଚାଲି ଆସିଲେ । ଭକ୍ତମାନେ ଆଉ ଗୋଟିଏ ଭଡ଼ାଘର ଖୋଜିବାକୁ ଲାଗିଲେ ।

ଭକ୍ତମାନେ ଏଥର ଭାବିଲେ ଯେ ଠାକୁରଙ୍କ ରୋଗକୁ ନେଇ ଆଉ ବୃଥା ସମୟ ନଷ୍ଟ କରିବା ଅନୁଚିତ । କଲିକତାର ସୁପ୍ରସିଦ୍ଧ ବୈଦ୍ୟମାନଙ୍କୁ ଡକାଗଲା । ସେମାନେ ଠାକୁରଙ୍କର ଗଳା ପରୀକ୍ଷା କଲେ । ଗଙ୍ଗାପ୍ରସାଦ, ଗୋପୀମୋହନ, ଦ୍ୱାରିକାନାଥ, ନବଗୋପାଳ ପ୍ରଭୃତି ବହୁ କବିରାଜ ସେଦିନ ଆହୂତ ହୋଇ ଠାକୁରଙ୍କୁ ପରୀକ୍ଷା କଲେ ଏବଂ ସିଦ୍ଧାନ୍ତ କଲେ ଯେ ଠାକୁରଙ୍କର ରୋହିଣୀ ନାମକ ଦୁଃସାଧ୍ୟ ବ୍ୟାଧି ହୋଇଛି । ଭକ୍ତମାନେ ତା'ପରେ ହୋମିଓପାଥି ଚିକିତ୍ସା କରିବାକୁ ଯୁକ୍ତିଯୁକ୍ତ ମନେକଲେ । ସର୍ବସମ୍ମତି କ୍ରମେ ସ୍ଥିର ହେଲା ଯେ ଠାକୁରଙ୍କୁ କଲିକତାର ସୁପ୍ରସିଦ୍ଧ ହୋମିଓ ଡାକ୍ତର ମହେନ୍ଦ୍ରନାଥ ସରକାରଙ୍କ ଚିକିତ୍ସାରେ ରଖାଯିବ । ଏଣେ ଚିକିତ୍ସା ପାଇଁ ଠାକୁର କଲିକତା ଆସିଛନ୍ତି ବୋଲି ସହରସାରା ରାଷ୍ଟ୍ର ହୋଇଗଲା । ଫଳରେ ପରିଚିତ ଅପରିଚିତ ବହୁ ବ୍ୟକ୍ତି ତାଙ୍କର ଦର୍ଶନ ଉଦ୍ଦେଶ୍ୟରେ ଯେତେବେଳେ

ସେତେବେଳେ ଦଳ ଦଳ ହୋଇ ଆସି ବଳରାମ ବାବୁଙ୍କ ବାସଭବନରେ ପହଞ୍ଚିଲେ । ମନେହେଲା ସତେକି ଠାକୁରଙ୍କୁ ନେଇ ଗୋଟିଏ 'ଆନନ୍ଦ-ଉତ୍ସବ ଚାଲିଛି । ସକାଳ ପ୍ରହରରୁ ମଧ୍ୟାହ୍ନ ପର୍ଯ୍ୟନ୍ତ ଏବଂ ମଧ୍ୟାହ୍ନ ଭୋଜନ ପାରେ ଘଣ୍ଟେ ଦୁଇ ଘଣ୍ଟା ବିଶ୍ରାମ ପରେ ଅଧରାତ୍ର ପର୍ଯ୍ୟନ୍ତ ପ୍ରତିଦିନ ଠାକୁର ଏହି ସପ୍ତାହକ ଭିତରେ ବହୁ ଲୋକଙ୍କ ବ୍ୟକ୍ତିଗତ ଜୀବନର ଜଟିଳ ପ୍ରଶ୍ନଗୁଡ଼ିକୁ ସମାଧାନ କରି ଦେଇଥିଲେ । ନାନା ଭାବରେ ଐଶ୍ୱରିକ କଥାର ଆଲୋଚନାରେ ବହୁ ବ୍ୟକ୍ତିଙ୍କୁ ଆଧ୍ୟାତ୍ମିକ ପଥରେ ଆକୃଷ୍ଟ କରାଇଥିଲେ ଏବଂ ଭଜନ ସଙ୍ଗୀତାଦି ଶ୍ରବଣ କରି ଗଭୀର ସମାଧି-ରାଜ୍ୟରେ ପ୍ରବିଷ୍ଟ ହୋଇ ବହୁ ପିପାସିତଙ୍କ ପ୍ରାଣରେ ଶାନ୍ତି ଓ ଆନନ୍ଦର ବନ୍ୟା ବୁହାଇ ପରିପୂର୍ଣ୍ଣ ଓ ଉଚ୍ଛଳିତ କରି ଦେଇଥିଲେ ।

## ତ୍ରୟୋବିଂଶ ଅଧ୍ୟାୟ

# ଶ୍ୟାମପୁକୁରଠାରେ ଭକ୍ତମାନଙ୍କ ସଙ୍ଗରେ

ଠାକୁରଙ୍କ ପାଇଁ ଯେଉଁ ଘରଟି ଏବେ ଭଡ଼ା ନିଆଗଲା, ତାହା ପୂର୍ବ ଓ ପଶ୍ଚିମକୁ ବିସ୍ତୃତ ଶ୍ୟାମପୁକୁର ଷ୍ଟ୍ରିଟର ଉତ୍ତର ପାର୍ଶ୍ୱରେ ଅବସ୍ଥିତ। ଉତ୍ତରପଟୁ ଘରେ ପ୍ରବେଶ କରିବା ମାତ୍ରେ ବାମ ଓ ଡାହାଣ ପଟରେ ବସିବା ପାଇଁ ଦୁଇଟି ଚଉତରା ଓ ତା'ସାଙ୍ଗକୁ ଗୋଟିଏ ସ୍ୱଳ୍ପପରିସର 'ରକ୍'। ଏହା ପରେ କେତେକ ପାଦ ଅଗ୍ରସର ହେଲେ ଡାହାଣ ଆଡ଼କୁ ଦୁଇମହଲା ଉପରକୁ ଉଠିବାର ଶିଡ଼ି ଓ ସମ୍ମୁଖରେ ଅଗଣା। ଅଗଣାର ପୂର୍ବ ଦିଗରେ ଦୁଇତିନଟି ଛୋଟ ଛୋଟ ଘର। ଶିଡ଼ି ଦେଇ ଉପରେ ଉଠିଲେ ଦକ୍ଷିଣ ପଟେ ଉତ୍ତର-ଦକ୍ଷିଣକୁ ବିସ୍ତୃତ ଗୋଟିଏ ଲମ୍ବାଘର। ଏହି ଘରଟି ଥିଲା ସର୍ବସାଧାରଣଙ୍କ ଲାଗି ନିର୍ଦ୍ଦିଷ୍ଟ। ପୁଣି ବାମ ପଟକୁ ପୂର୍ବପଶ୍ଚିମରେ ବିସ୍ତୃତ ଘରଗୁଡ଼ିକୁ ଯିବା ପାଇଁ ପଥ। ଉକ୍ତ ପଥ ଦେଇ ପ୍ରଥମେ 'ବୈଠକଖାନା' ଘର ନାମରେ ଅଭିହିତ ସୁପ୍ରଶସ୍ତ କୋଠରୀ ଭିତରକୁ ପ୍ରବେଶ କରିବାର ଦ୍ୱାର—ଏହି ଘରେ ଠାକୁର ରହୁଥିଲେ। ଏହାର ଉତ୍ତର ଓ ଦକ୍ଷିଣକୁ ବାରଣ୍ଡା। ତହିଁ ମଧ୍ୟରୁ ଉତ୍ତରର ବାରଣ୍ଡାଟି ଥିଲା ପ୍ରଶସ୍ତତର ଏବଂ ପଶ୍ଚିମରେ ଛୋଟ ଛୋଟ ଦୁଇଟି ବଖରା। ତନ୍ମଧ୍ୟରୁ ଗୋଟିଏ ବଖରାରେ ଭକ୍ତମାନଙ୍କ ଭିତରୁ କେହି କେହି ରାତିରେ ଶୟନ କରୁଥିଲେ ଏବଂ ଅନ୍ୟ କୋଠରୀଟି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ରାତିବାସ ଲାଗି ନିର୍ଦ୍ଦିଷ୍ଟ ଥିଲା। ଠାକୁରଙ୍କ ଘର ଭିତରକୁ ଯିବା ବାଟରେ ପୂର୍ବପାର୍ଶ୍ୱରେ ଛାତକୁ ଉଠିବାର ଶିଡ଼ି ଏବଂ ଛାତକୁ ଯିବାର ଦରଜା ପାଖରେ 'ଚାରି ହାତ' ଅନ୍ଦାଜ ଲମ୍ବା ଓ ସେହିଭଳି ପ୍ରଶସ୍ତ ଗୋଟିଏ ଆଚ୍ଛାଦନ-ଯୁକ୍ତ ଚଉତରା। ଶ୍ରୀଶ୍ରୀମାତାଠାକୁରାଣୀ ଏହି ଚଉତରାଟିରେ ସମସ୍ତ ଦିନ ଅତିବାହିତ କରୁଥିଲେ ଏବଂ ଏହି ସ୍ଥାନରେ ହିଁ ଠାକୁରଙ୍କ ପାଇଁ ପ୍ରୟୋଜନୀୟ ପଥ୍ୟାଦି ରନ୍ଧନ କରୁଥିଲେ। ୧୮୮୫

ମସୀହା ଅକ୍ଟୋବର ମାସର ମଝାମଝି ଠାକୁର ବଲରାମଙ୍କ ଘରୁ ଏଠାକୁ ଆସିଲେ ଏବଂ ଦୁଇମାସରୁ କିଛି ଅଧିକ କାଳ ଏଠାରେ ରହିଥିଲେ । ମାର୍ଗଶୀର ମାସ ଶେଷ ଆଉକୁ ଦୁଇଦିନ ମାତ୍ର ବାକି ଥିଲା—ଠାକୁର ସେଠାରୁ କାଶୀପୁରର ଉଦ୍ୟାନ-ଗୃହକୁ ଉଠିଗଲେ ।

ଶ୍ୟାମପୁକୁରର ଘରକୁ ଆସିବାର କେତେଦିନ ପରେ ହିଁ ଭକ୍ତଗଣ ପୂର୍ବ ପରାମର୍ଶ ଅନୁଯାୟୀ ଡାକ୍ତର ମହେନ୍ଦ୍ରଲାଲ ସରକାରଙ୍କୁ ଠାକୁରଙ୍କର ଚିକିତ୍ସା ନିମନ୍ତେ ଅଣାଇଲେ । ସେ ଯେତେବେଳେ ପରସ୍ପର କଥାବାର୍ତ୍ତାରୁ ଜାଣିବାକୁ ପାଇଲେ ଯେ ଠାକୁରଙ୍କ ଭକ୍ତମାନେ କେବଳ ତାଙ୍କୁ କଲିକତା ଆଣିଛନ୍ତି ଚିକିତ୍ସା କରିବାକୁ ଓ ଚିକିତ୍ସା ସଂକ୍ରାନ୍ତ ସମସ୍ତ ଖର୍ଚ୍ଚ କେବଳ ସେମାନେ ହିଁ ବହନ କରୁଛନ୍ତି ସେତେବେଳେ ସେ ଆଉ ପାରିଶ୍ରମିକ ନ ନେଇ କହିଲେ, "ମୁଁ ବିନା ପାରିଶ୍ରମିକରେ ଯଥାସାଧ୍ୟ ଚିକିତ୍ସା କରି ତୁମମାନଙ୍କର ଏହି ମହାନ୍ ସେବାରେ ସହାୟତା କରିବି ।"

ଡାକ୍ତରଙ୍କ ଉପଦେଶ ଅନୁସାରେ ସୁପଥ୍ୟ ପ୍ରସ୍ତୁତ କରିବାର ଲୋକ ଅଭାବରେ ଠାକୁରଙ୍କର ରୋଗବୃଦ୍ଧିର ସମ୍ଭାବନା ରହିଛି ବୋଲି ବୁଝିପାରି ଶ୍ରୀଶ୍ରୀମାତାଠାକୁରାଣୀ ନିଜ ରହିବା ବିଷୟରେ ସୁବିଧା ଅସୁବିଧା କଥା ଚିନ୍ତା ନ କରି ଶ୍ୟାମପୁକୁରର ସେହି ଘରକୁ ଚାଲିଆସିଲେ ଓ ରନ୍ଧନଭାର ନିଜେ ଗ୍ରହଣ କଲେ । ପଥ୍ୟ ବିଷୟରେ ଆଉ କିଛି ସମସ୍ୟା ରହିଲା ନାହିଁ । ବର୍ତ୍ତମାନ ରାତିସାରା ଜାଗିରହି ଠାକୁରଙ୍କୁ ସେବା କରିବାର ଦାୟିତ୍ୱ ନରେନ୍ଦ୍ର (ସ୍ୱାମୀ ବିବେକାନନ୍ଦ) ନିଜେ ଗ୍ରହଣ କଲେ । ନରେନ୍ଦ୍ରଙ୍କର ସେବାର ଦୃଷ୍ଟାନ୍ତ ଦେଖି ଗୋପାଳ, କାଳୀ, ଶଶୀ ପ୍ରଭୃତି କେତେଜଣ ଯୁବକଭକ୍ତ ମଧ୍ୟ ପରମ ଉତ୍ସାହରେ ନିଜର ସୁବିଧା ଅସୁବିଧା ପ୍ରତି ଲକ୍ଷ୍ୟ ନ ରଖି ଠାକୁରଙ୍କ ସେବାରେ ଲାଗିପଡ଼ିଲେ । ସମସ୍ତ ଉତ୍ସାହ, କର୍ମପ୍ରେରଣା, ସେବାପରାୟଣତା ଓ ସମସ୍ତ ବାଧାବିଘ୍ନକୁ ଅତିକ୍ରମ କରିଯିବା ଲାଗି ଅଟଳ ସଂକଳ୍ପ ସେମାନେ ସେହି ଅତୁଳନୀୟ ଆଧ୍ୟାତ୍ମଭାବପ୍ରଣୋଦିତ ପରମଗୁରୁଭକ୍ତ ଶକ୍ତିମାନ ନରେନ୍ଦ୍ରଙ୍କ ଦୃଷ୍ଟାନ୍ତରୁ ହିଁ ଲାଭ କରିଥିଲେ । ଏହି ଭାବରେ ସେହି ଶ୍ୟାମପୁକୁର ଘରେ ବାରପାଞ୍ଚଜଣ ମାତ୍ର ଯୁବଶିଷ୍ୟ ନିଜର ଜୀବନ ଉତ୍ସର୍ଗ କରି ଏହି ସେବାବ୍ରତ

ଆରମ୍ଭ କରିଥିଲେ । ମାତ୍ର ଏହାପରେ କାଶୀପୁର ଉଦ୍ୟାନରେ ଏହାର ଯେତେବେଳେ ପୂର୍ଣ୍ଣାନୁଷ୍ଠାନ ହେଲା, ବ୍ରତଧାରୀମାନଙ୍କ ସଂଖ୍ୟା ପ୍ରାୟ ଚତୁର୍ଗୁଣ ବୃଦ୍ଧି ପାଇଥିଲା । ଶ୍ରୀରାମକୃଷ୍ଣ-ଭକ୍ତସଂଘରୂପକ ମହୀରୁହ ଦକ୍ଷିଣେଶ୍ୱରରେ ଅଙ୍କୁରିତ ହୋଇଥିଲା ବୋଲି ନିର୍ଦ୍ଦିଷ୍ଟ ହେଲେ ମଧ୍ୟ ଶ୍ୟାମପୁକୁରଠାରେ ଓ କାଶୀପୁର ଉଦ୍ୟାନରେ ଏହା ନିଜର ଆକାର ଧାରଣପୂର୍ବକ ଏତେ ଦ୍ରୁତ ଗତିରେ ବର୍ଦ୍ଧିତ ହୋଇଉଠିଲା ଯେ ଭକ୍ତମାନଙ୍କ ଭିତରୁ ଅନେକେ ସେତେବେଳେ ସ୍ଥିର କରିଥିଲେ ଯେ ଏହି ବିଷୟର ସାଫଲ୍ୟ ଆନୟନ ହିଁ ଠାକୁରଙ୍କ ଶାରୀରିକ ବ୍ୟାଧିର ଅନ୍ୟତମ କାରଣ ।

ଡାକ୍ତର ମହେନ୍ଦ୍ରଲାଲ ସରକାର ଠାକୁରଙ୍କ ଉଦାର ଆଧ୍ୟାତ୍ମିକତାରେ ବିଶେଷ ଆକୃଷ୍ଟ ହୋଇ ଅବସର ପାଇଲା ମାତ୍ରେ ତାଙ୍କ ନିକଟରେ ଆସି ଉପସ୍ଥିତ ହେଉଥିଲେ ଏବଂ ଦୁଇ ତିନିଘଣ୍ଟା ତାଙ୍କ ପାଖରେ ଅତିବାହିତ କରି ଫେରୁଥିଲେ । ତାଙ୍କର ମୂଲ୍ୟବାନ ସମୟର ଏତେ ଅଧିକଭାଗ ଏଠାରେ କଟାଇବା ଲାଗି ଠାକୁର ଦିନେ ତାଙ୍କ ପାଖରେ କୃତଜ୍ଞତା ଜଣାଇବାର ଉପକ୍ରମ କରିବାରୁ ସେ ବ୍ୟସ୍ତ ହୋଇ କହିଉଠିଲେ, "ଆହେ ! ତୁମେ କ'ଣ ଭାବୁଛ, କେବଳ ତୁମର ଲାଗି ମୁଁ ଆସି ଏଠାରେ ଏତେ ସମୟ କଟାଉଛି ? ଏଥିରେ ମୋର ମଧ୍ୟ ସ୍ୱାର୍ଥ ରହିଛି ।... କ'ଣ ସେ ସ୍ୱାର୍ଥ ଜାଣ ? ତୁମର ସତ୍ୟାନୁରାଗ ଲାଗି ତୁମକୁ ଏତେ ଭଲ ଲାଗେ । ତୁମେ ଯାହା ସତ୍ୟ ବୋଲି ବୁଝ, ତା'ର ସାମାନ୍ୟତମ ଏପଟ ସେପଟ କରି ତୁମେ ନିଜେ ଚଳପ୍ରଚଳ ହୁଅ ନାହିଁ । ଅନ୍ୟ ସ୍ଥାନରେ ଦେଖିଛି, ସେମାନେ କହନ୍ତି ପ୍ରକାରେ ତ କରନ୍ତି ଆଉ ପ୍ରକାରେ । ଏକଥା ମୁଁ ଆଦୌ ସହ୍ୟ କରିପାରେ ନାହିଁ ।"

ଡାକ୍ତର ମହେନ୍ଦ୍ରଲାଲ ଏହି ଭାବରେ ଦିନକୁ ଦିନ ଠାକୁରଙ୍କ ପ୍ରତି ଶ୍ରଦ୍ଧା ଓ ପ୍ରୀତିସମ୍ପନ୍ନ ହୋଇଉଠିଲେ । ଠାକୁର ମଧ୍ୟ ସେହିପରି ତାଙ୍କୁ ଧର୍ମ-ପଥରେ ଅଗ୍ରସର କରାଇ ଦେବା ଲାଗି ତତ୍ପର ହୋଇଉଠିଥିଲେ । ଏହା ବ୍ୟତୀତ ଭକ୍ତମାନଙ୍କ ଭିତରୁ ମହେନ୍ଦ୍ରନାଥ, ଗିରିଶଚନ୍ଦ୍ର, ନରେନ୍ଦ୍ରନାଥ ପ୍ରମୁଖଙ୍କୁ ମଝିରେ ମଝିରେ ସୁବିଦ୍ୱାନ ଡାକ୍ତରଙ୍କ ସହିତ ଆଳାପ କରିବାକୁ ଠାକୁର ସୁଯୋଗ ଦେଉଥିଲେ । ନରେନ୍ଦ୍ରନାଥଙ୍କ ସହିତ ଆଳାପରେ ମୁଗ୍ଧ

ହୋଇ ସେ ତାଙ୍କୁ ଦିନେ ନିମନ୍ତ୍ରଣ କରି ଭୋଜନ କରାଇଥିଲେ ଏବଂ ସଙ୍ଗୀତ-ବିଦ୍ୟାରେ ମଧ୍ୟ ତାଙ୍କର ଅଧିକାର ଅଛି ଜାଣି ଦିନେ ତାଙ୍କୁ ଭଜନ ଗାଇବାକୁ ଅନୁରୋଧ କରିଥିଲେ । ଏହାର କିଛିଦିନ ପରେ ଡାକ୍ତର ଦିନେ ଅପରାହ୍ଣରେ ଠାକୁରଙ୍କୁ ଦେଖିବାକୁ ଆସିଥିଲେ । ନରେନ୍ଦ୍ରନାଥ ପୂର୍ବ ପ୍ରତିଶ୍ରୁତି ଅନୁଯାୟୀ ସେହି ସମୟରେ କିଛି ଭଜନ ଗାଇ ତାଙ୍କୁ ଶୁଣାଇ-ଥିଲେ । ଡାକ୍ତର ସେଦିନ ଆନନ୍ଦିତ ହୋଇ ଠାକୁରଙ୍କୁ କହିଥିଲେ—"ଏହି ଭଳି ପିଲା ଧର୍ମଲାଭ କରିବାକୁ ଆସିଛି ଦେଖି ମୁଁ ବିଶେଷ ଆନନ୍ଦିତ । ଏ ଗୋଟିଏ ରତ୍ନ । ଏ ଯେଉଁଥିରେ ହାତ ଦେବ, ସେହି ବିଷୟରେ ହିଁ ଉନ୍ନତି ସାଧନ କରିବ ।"

ଠାକୁରଙ୍କର ଅନାବିଳ ସ୍ୱର୍ଗୀୟ ପ୍ରେମ, ସରଳ ବ୍ୟବହାର ଓ ଆଧ୍ୟାତ୍ମିକତାରେ ଡାକ୍ତରଙ୍କ ମନ ତାଙ୍କପ୍ରତି କ୍ରମେ ଶ୍ରଦ୍ଧାସମ୍ପନ୍ନ ହୋଇ ଉଠିଥିଲା; କିନ୍ତୁ ଠାକୁରଙ୍କୁ ତାଙ୍କର ଭକ୍ତମାନେ ଯେପରି ପ୍ରଗାଢ଼ ଭକ୍ତି ଓ ବିଶ୍ୱାସ କରୁଥିଲେ, ସେଥିପ୍ରତି ଡାକ୍ତରଙ୍କର ମନୋଭାବ କ'ଣ ଥିଲା, ତାହା କୁହାଯାଇ ନ ପାରେ । ବୋଧହୁଏ, ସେ ଭାବୁଥିଲେ ଯେ ଏହି ଭକ୍ତମାନେ ଏ ବିଷୟରେ ଟିକିଏ ମାତ୍ରାଧିକ ମାତିଯାଇଛନ୍ତି । ଦିନେ ଅବତାରବାଦ ସମ୍ବନ୍ଧରେ ଡାକ୍ତର ଠାକୁରଙ୍କ ଆଗରେ ସ୍ପଷ୍ଟ ଭାବରେ ନିଜର ମତ ପ୍ରକାଶ କରି କହିଲେ ଯେ, "ଈଶ୍ୱରଙ୍କୁ ଯେତେ ଯାହା ଭକ୍ତିପୂଜା କରୁଛ, ସେଥିରେ କାହାର କିଛି କହିବାର ନାହିଁ; କିନ୍ତୁ ସେହି ଅନନ୍ତ ଭଗବାନ ମଣିଷଟିଏ ହୋଇ ଏ ପୃଥିବୀକୁ ଆସିଛନ୍ତି—ଏକଥା ବିଶ୍ୱାସ କଲେ ଯେତେ ସବୁ ଗୋଲମାଲର ସୃଷ୍ଟି ହୁଏ । ସେ ଯଶୋଦାନନ୍ଦନ, ମେରିନନ୍ଦନ, ଶଚୀନନ୍ଦନ ହୋଇ ଆସିଛନ୍ତି, ଏ କଥା ବୁଝିବା ଟିକିଏ କଠିନ । ଏହି ନନ୍ଦନର ଦଳ ହିଁ ଦେଶଟାକୁ ଉଚ୍ଛନ୍ନ କରି ଦେଇଛନ୍ତି ।"

ଅବତାର ସମ୍ବନ୍ଧୀୟ ଉପରୋକ୍ତ ମତ ପ୍ରକାଶ ପାଇଁ ଡାକ୍ତରଙ୍କ ସହିତ ଗିରିଶଚନ୍ଦ୍ର ଓ ନରେନ୍ଦ୍ରନାଥଙ୍କର ତୁମୁଳ ବାଦାନୁବାଦ ହେଲା; କିନ୍ତୁ ତର୍କରେ ଯାହା ହେଲା ନାହିଁ, ଠାକୁରଙ୍କ ମନର ଅଲୌକିକ ମାଧୁର୍ଯ୍ୟ ଓ ପ୍ରେମ ଏବଂ ତାହିଁରୁ ଯେଉଁ ଅଦୃଷ୍ଟପୂର୍ବ ଆଧ୍ୟାତ୍ମିକ ପ୍ରକାଶ ସମସ୍ତ ସମୟରେ ଡାକ୍ତରଙ୍କ

ନୟନଗୋଚର ହେଉଥିଲା, ତଦ୍ୱାରା ଉକ୍ତ ସଂଶୟର ନିରାକରଣ ହୋଇଥିଲା । ତାଙ୍କର ଏହିଭଳି ମତବାଦ ଧୀରେ ଧୀରେ ଅନେକ ପରିମାଣରେ ପରିବର୍ତ୍ତିତ ହୋଇଯାଇଥିଲା । ସେହି ବର୍ଷ ଦୁର୍ଗାପୂଜାର ସନ୍ଧିକ୍ଷଣରେ ଠାକୁରଙ୍କ ଭିତରେ ଯେଉଁ ଅଲୌକିକ ବିଭୂତି ସହସା ପ୍ରକାଶିତ ହୋଇଉଠିଲା, ଡାକ୍ତର ସରକାର ମଧ୍ୟ ତାହା ଦେଖିବାକୁ ସମର୍ଥ ହୋଇପାରିଥିଲେ । ଠାକୁରଙ୍କ ଭାବାବେଶ ସମୟରେ ଡାକ୍ତର ଯନ୍ତ୍ର ସାହାଯ୍ୟରେ ପରୀକ୍ଷା କରି ଦେଖିଲେ ଯେ ତାଙ୍କର ହୃଦ୍‌ସ୍ପନ୍ଦନ ବନ୍ଦ ହୋଇଯାଇଛି । ଡାକ୍ତରଙ୍କୁ ବାଧ୍ୟ ହୋଇ ସ୍ୱୀକାର କରିବାକୁ ପଡ଼ିଥିଲା ଯେ ବାହାରକୁ ସଂପୂର୍ଣ୍ଣ ମୃତବତ୍ ପ୍ରତୀୟମାନ ହେଲେ ମଧ୍ୟ ଠାକୁରଙ୍କର ଏହି ବିଚିତ୍ର ସମାଧି-ଅବସ୍ଥା ସମ୍ବନ୍ଧରେ ବିଜ୍ଞାନ କୌଣସି ପ୍ରକାର ଆଲୋକ ଏବେ ମଧ୍ୟ ପ୍ରଦାନ କରିପାରି ନାହିଁ । ବସ୍ତୁତଃ ଈଶ୍ୱରଙ୍କ ସଂସାରରେ ଏପରି ଅନେକ ବିଷୟ ବିଦ୍ୟମାନ, ଦର୍ଶନ ବା ବିଜ୍ଞାନ ଯେଉଁଗୁଡ଼ିକର ରହସ୍ୟ କୌଣସି ପ୍ରକାରେ ଭେଦ କରିପାରି ନାହିଁ କିମ୍ବା ଭବିଷ୍ୟତରେ ମଧ୍ୟ କେବେ କରିପାରିବ ବୋଲି ବୋଧହୁଏ ନାହିଁ ।

କ୍ରମେ ଶ୍ରୀକାଳୀପୂଜା ମଧ୍ୟ ନିକଟବର୍ତ୍ତୀ ହୋଇଆସିଲା । ଦୁର୍ଗାପୂଜା ଭଳି କାଳୀପୂଜା ସମୟରେ ମଧ୍ୟ ଠାକୁରଙ୍କ ଭିତରେ ଅଦ୍ଭୁତ ଆଧ୍ୟାତ୍ମିକ ପ୍ରକାଶ ଭକ୍ତମାନଙ୍କର ନୟନଗୋଚର ହୋଇଥିଲା । ପୂଜାର ପୂର୍ବ ଦିନ ଠାକୁର କେତେଜଣ ଭକ୍ତଙ୍କୁ ସହସା କହିବସିଲେ, "ପୂଜାର ଉପକରଣଗୁଡ଼ିକୁ ସଂକ୍ଷେପରେ ସଂଗ୍ରହ କରି ରଖ । କାଲି କାଳୀପୂଜା କରିବାକୁ ହେବ ।" ପୂଜା ଷୋଡ଼ଶ-ଉପଚାରରେ ହେବ କିମ୍ବା ପଞ୍ଚ-ଉପଚାରରେ ହେବ, ଏଥିରେ ଅନ୍ନଭୋଗ ଦିଆଯିବ କି ନାହିଁ, କିଏ ପୂଜକର ପଦ ଗ୍ରହଣ କରିବ—ଏସବୁ ବିଷୟରେ କୌଣସି ମୀମାଂସା ନ କରିପାରି ଅବଶେଷରେ ସ୍ଥିର ହେଲା—ଗନ୍ଧପୁଷ୍ପ, ଧୂପଦୀପ, ଫଳମୂଳ ଏବଂ ମିଷ୍ଟାନ୍ନ ସଂଗ୍ରହ କରି ରଖାଯାଉ । ପରେ ଠାକୁର ଯେପରି କହିବେ ସେହିପରି କରାଯିବ । କିନ୍ତୁ ସେଦିନ ସେହିପରି କଟିଲା, ପୂଜା ଦିନଟିରୁ ମଧ୍ୟ ଅଧେ କଟିଲା, ମାତ୍ର ଠାକୁର ଏ ସମ୍ବନ୍ଧରେ ଆଉ କୌଣସି କଥା ସେମାନଙ୍କୁ କହିଲେ ନାହିଁ । କ୍ରମେ ସୂର୍ଯ୍ୟାସ୍ତ ହେଲା, ରାତି ପ୍ରାୟ ପ୍ରହରେ ହୋଇ ଆସିଲା । ଧୀରେ ଧୀରେ ସମସ୍ତ ଉପକରଣ ଅଣାଗଲା

ଏବଂ ଧୂପଧୂପ ହବୁ ପ୍ରଜ୍ୱଳିତ ହେଲା । ଫଳରେ ଗୃହଟି ଆଲୋକମୟ ଓ ସୌରଭରେ ଆମୋଦିତ ହୋଇ ଉଠିଲା । ଯୁବକ ଭକ୍ତମାନଙ୍କ ସହିତ ମହେନ୍ଦ୍ରନାଥ, ରାମଚନ୍ଦ୍ର, ଦେବେନ୍ଦ୍ରନାଥ, ଗିରିଶଚନ୍ଦ୍ର ପ୍ରଭୃତି ପ୍ରବୀଣ ବ୍ୟକ୍ତି-ମାନେ ଆସି ସେଠାରେ ଉପସ୍ଥିତ ହେଲେ । ଗିରିଶଚନ୍ଦ୍ରଙ୍କର ମନେହେଲା— ନିଜ ଲାଗି ଠାକୁରଙ୍କର କାଳୀପୂଜା କରିବାର କୌଣସି ପ୍ରୟୋଜନ ନାହିଁ । ତା'ହେଲେ କ'ଣ ତାଙ୍କର ଶରୀରରୂପକ ଜୀବନ୍ତ ପ୍ରତିମାରେ ଜଗଦମ୍ବାଙ୍କର ପୂଜା କରି ଭକ୍ତମାନେ ଧନ୍ୟ ହେବେ ବୋଲି ଏହି ପୂଜାର ଆୟୋଜନ ? ନିଶ୍ଚୟ ତାହା ହିଁ—ଏହିପରି ଭାବି ସେ ଉଲ୍ଲାସରେ ଅଧୀର ହୋଇଉଠିଲେ ଏବଂ ହଠାତ୍ ସମ୍ମୁଖସ୍ଥ ପୁଷ୍ପଚନ୍ଦନ ଉଠାଇ ନେଇ "ଜୟ ମା" କହି ଠାକୁରଙ୍କ ପାଦପଦ୍ମରେ ଅଞ୍ଜଳି ପ୍ରଦାନ କଲେ । ଠାକୁରଙ୍କର ସମସ୍ତ ଶରୀର ଏଥିରେ ଶିହରି ଉଠିଲା ଏବଂ ସେ ଗଭୀର ସମାଧିମଗ୍ନ ହୋଇଗଲେ । ତାଙ୍କର ମୁଖମଣ୍ଡଳ ଜ୍ୟୋତିର୍ମୟ ଏବଂ ଦିବ୍ୟ ହାସ୍ୟରେ ବିକଶିତ ହୋଇଉଠିଲା ଏବଂ ହସ୍ତଦ୍ୱୟ ବରାଭୟ ମୁଦ୍ରା ଧାରଣପୂର୍ବକ ଦେହରେ ଜଗଦମ୍ବାଙ୍କ ଆବେଶର ପରିଚୟ ପ୍ରଦାନ କଲା । ଏତେ ଅଳ୍ପ ସମୟ ମଧ୍ୟରେ ଏହି ସମସ୍ତ ଘଟଣା ଉପସ୍ଥିତ ହେଲା ଯେ ପାର୍ଶ୍ୱବର୍ତ୍ତୀ ଭକ୍ତମାନଙ୍କ ମଧ୍ୟରୁ ଅନେକେ ଭାବିଲେ— ଠାକୁରଙ୍କୁ ଏହିଭଳି ଭାବାବସ୍ଥ ହେବାର ଦେଖି ହୁଏତ ଗିରିଶ ତାଙ୍କର ଶ୍ରୀଚରଣରେ ବାରମ୍ବାର ଅଞ୍ଜଳି ପ୍ରଦାନ କରୁଛନ୍ତି ଏବଂ ଯେଉଁମାନେ ସେଠାରୁ କିଞ୍ଚିତ୍ ଦୂରରେ ରହିଥିଲେ, ସେମାନେ ଦେଖିଲେ ଯେ ଠାକୁରଙ୍କର ଶରୀର ଅବଲମ୍ବନ କରି ସତେ ଅବା ଜ୍ୟୋତିର୍ମୟୀ ଦେବୀପ୍ରତିମା ସହସା ସେମାନଙ୍କ ସମ୍ମୁଖରେ ଆବିର୍ଭୂତା ହୋଇଅଛନ୍ତି । କହିବା ବାହୁଲ୍ୟ ଯେ ଭକ୍ତମାନଙ୍କ ପ୍ରାଣରେ ଉଲ୍ଲାସର ଅବଧି ରହିଲା ନାହିଁ । ସେମାନେ ପ୍ରତ୍ୟେକେ କୌଣସି ପ୍ରକାରରେ ପୂଜାପାତ୍ରରୁ ପୁଷ୍ପଚନ୍ଦନ ଗ୍ରହଣ କରି ଯାହାର ଯେଉଁ ପ୍ରକାର ଇଚ୍ଛା ମନ୍ତ୍ର ଉଚ୍ଚାରଣ କରିବାକୁ ଲାଗିଲେ ଓ ଠାକୁରଙ୍କ ଶ୍ରୀପାଦପଦ୍ମ ପୂଜା-ପୂର୍ବକ "ଜୟ, ଜୟ" ରବରେ ଗୃହ ମୁଖରିତ କରିଦେଲେ । ଶ୍ୟାମପୁକୁରଠାରେ ଅବସ୍ଥାନ କାଳରେ ଭକ୍ତଗଣ ଠାକୁରଙ୍କ ଭିତରେ ଏହିପରି ଦିବ୍ୟଶକ୍ତି ଓ ଦେବଭାବର ପରିଚୟ ବିଶେଷ ବିଶେଷ ପର୍ବପର୍ବାଣୀ

ବେଳେ ଯେ କେବଳ ଅନୁଭବ କରିଥିଲେ ତାହା ନୁହେଁ, ଯେତେବେଳେ ସେତେବେଳେ ସହସା ତାଙ୍କଠାରେ ଏହିପରି ଶକ୍ତିର ପ୍ରକାଶ ଦେଖିବାର ଅବସର ଲାଭ କରି, ସେ ଯେ ଦେବ-ମାନବ, ଏହି ବିଶ୍ୱାସ ସେମାନଙ୍କର ଦିନକୁ ଦିନ ଦୃଢ଼ୀଭୂତ ହୋଇଥିଲା ।

ଶ୍ୟାମପୁକୁରଠାରେ ଅବସ୍ଥାନ କାଳରେ ଠାକୁରଙ୍କର ଶାରୀରିକ ବ୍ୟାଧି ଯେପରି ବୃଦ୍ଧି ପାଇଥିଲା, ତାଙ୍କର ପୁଣ୍ୟଦର୍ଶନ ଓ କୃପାଲାଭ ନିମିତ୍ତ ସମାଗତ ଜନଗଣଙ୍କର ସଂଖ୍ୟା ମଧ୍ୟ ସେହିପରି ଦିନକୁ ଦିନ ବଢ଼ି ଯାଇଥିଲା । ଶ୍ରୀହରିଶ୍ଚନ୍ଦ୍ର ମୁସ୍ତଫି, ମଣୀନ୍ଦ୍ରକୃଷ୍ଣ ଗୁପ୍ତ ପ୍ରଭୃତି ଅନେକ ଯୁବକ ଭକ୍ତ ମଧ୍ୟ ସେଠାରେ ଠାକୁରଙ୍କର ପ୍ରଥମ ଦର୍ଶନଲାଭ କରିଥିଲେ । ନବାଗତ ଏହିସବୁ ବ୍ୟକ୍ତିମାନଙ୍କର ପ୍ରକୃତି ଓ ସଂସ୍କାର ଲକ୍ଷ୍ୟ କରି ଠାକୁର ଏମାନଙ୍କ ଭିତରୁ ପ୍ରତ୍ୟେକଙ୍କୁ ଭକ୍ତି-ପ୍ରଧାନ କିମ୍ବା ଜ୍ଞାନମିଶ୍ରା ଭକ୍ତି-ପ୍ରଧାନ ସାଧନମାର୍ଗ ନିର୍ଦ୍ଦେଶ କରିଦେଉଥିଲେ ଏବଂ ସୁଯୋଗ ପାଇଲେ ହିଁ ନିଭୃତରେ ନାନା ପ୍ରକାର ଉପଦେଶ ଦେଇ ଏହି ପଥରେ ଅଗ୍ରସର କରାଇଦେଉଥିଲେ ।

ଏହି ସମୟରେ ଦିନେ ଠାକୁରଙ୍କର ଅଦ୍ଭୁତ ଦର୍ଶନଟିଏ ହେଲା । ତାଙ୍କୁ ଦେଖାଗଲା ଯେ ତାଙ୍କର ସୂକ୍ଷ୍ମଶରୀର ସ୍ଥୂଳଦେହର ଅଭ୍ୟନ୍ତରରୁ ନିର୍ଗତ ହୋଇ ଗୃହ ମଧ୍ୟରେ ଇତସ୍ତତଃ ବିଚରଣ କରୁଅଛି ଏବଂ ତା'ର ଗଳାର ସଂଯୋଗସ୍ଥଳରେ ପୃଷ୍ଠଦେଶରେ କେତେକ କ୍ଷତ ହୋଇଛି । ବିସ୍ମିତ ହୋଇ ସେ ଏହି ପ୍ରକାର କ୍ଷତ ହେବାର କାରଣ କ'ଣ ଭାବୁଛନ୍ତି, ଏହି ସମୟରେ ଶ୍ରୀଶ୍ରୀଜଗଦମ୍ବା ତାଙ୍କୁ ବୁଝାଇଦେଲେ—ନାନା ପ୍ରକାର ଦୁଷ୍କର୍ମ କରିଆସି ଲୋକମାନେ ତାଙ୍କୁ ସ୍ପର୍ଶ କରି ପବିତ୍ର ହେଉଛନ୍ତି ଏବଂ ସେମାନଙ୍କର ପାପଭାର ତାଙ୍କଠାରେ ସଂକ୍ରମିତ ହେବା ଫଳରେ ତାଙ୍କ ଶରୀରରେ କ୍ଷତରୋଗ ହୋଇଅଛି । ଜୀବର କଲ୍ୟାଣସାଧନ ନିମିତ୍ତ ଲକ୍ଷଲକ୍ଷ ଥର ଜନ୍ମପରିଗ୍ରହପୂର୍ବକ ଦୁଃଖଭୋଗ କରିବାକୁ ଯେ କାତର ନୁହନ୍ତି, ସେ ପୂର୍ବୋକ୍ତ ଦର୍ଶନରେ କିଛିମାତ୍ର ବିଚଳିତ ନ ହୋଇ, ଆନନ୍ଦ ସହକାରେ ତାଙ୍କର ଅନ୍ତରଙ୍ଗ ଭକ୍ତମାନଙ୍କୁ ଏହି ବିଷୟ କହିବାକୁ ଲାଗିଲେ । ନରେନ୍ଦ୍ର ପ୍ରମୁଖ କେତେଜଣ ବରିଷ୍ଠ ଜ୍ଞାନୀଭକ୍ତ ଠାକୁରଙ୍କ ଶ୍ରୀମୁଖରୁ ଏକଥା ଶୁଣି

ଖ୍ରୀଷ୍ଟାନ ଓ ବୈଷ୍ଣବ ଧର୍ମ ସଂପ୍ରଦାୟର ଏ ପ୍ରକାର ମତବାଦର ଚିନ୍ତା ଓ ଆଲୋଚନାରେ ପ୍ରବୃତ୍ତ ହେଲେ । ଖ୍ରୀଷ୍ଟାନ ଓ ବୈଷ୍ଣବ ସଂପ୍ରଦାୟର ମୂଳ କଥା ହେଲା—ଈଶ୍ୱର ଯେହେତୁ ପରମକାରୁଣିକ, ସେହେତୁ ପ୍ରତ୍ୟେକ ସତ୍ ଖ୍ରୀଷ୍ଟାନ୍ ଓ ସତ୍ ବୈଷ୍ଣବ ପରଦୁଃଖମୋଚନ ପାଇଁ କାତରପ୍ରବଣତାରେ ଅନ୍ୟର ଦୁଃଖକୁ ନିଜ ଉପରକୁ ଟାଣିଆଣି ନିଜେ ସେହି ଦୁଃଖ ଭୋଗ କରନ୍ତି ଓ ଦୁଃଖୀ ଲୋକଟିକୁ ଦୁଃଖମୁକ୍ତ କରନ୍ତି । ଏହା ଏକ ଅତି ସୂକ୍ଷ୍ମ ରହସ୍ୟମୟ ବିଷୟ । କାରୁଣିକ ଭକ୍ତ ଅନ୍ୟ ପ୍ରତି ସହାନୁଭୂତିର ପ୍ରାବଲ୍ୟରେ ଅନ୍ୟର ରୋଗ ମଧ୍ୟ ହରଣ କରିଆଣି ନିଜେ ସେହି ରୋଗ ଭୋଗ କରିବାର ଦୃଷ୍ଟାନ୍ତ ବହୁ ସ୍ଥାନରେ ମିଳିଥାଏ । ସେ ଯାହା ହେଉ, ଭକ୍ତଗଣ ଯଦ୍ଦ୍ୱାରା ଠାକୁରଙ୍କର ଚରଣ ସ୍ପର୍ଶ ନ କରିବେ, ଏ ବିଷୟରେ ବିଶେଷ ସତର୍କତା ଅବଲମ୍ବନ କରିବା ସତ୍ତ୍ୱେ ସଂପୂର୍ଣ୍ଣ ଅପରିଚିତ କାହା କାହାର ବ୍ୟାକୁଳତା ଦେଖି ମଝେ ମଝେ ଏହି ନିୟମର ବ୍ୟତିକ୍ରମ ହୋଇଯାଉଥିଲା ।

ଏହି ପ୍ରକାର ନିୟମ ନେଇ ଦିନେ ଗୋଟିଏ ତାମ୍‌ସା ମଧ୍ୟ ହୋଇ-ଥିଲା । ଦକ୍ଷିଣେଶ୍ୱରରେ ଅବସ୍ଥାନ କାଳରେ ଠାକୁର ଶ୍ରୀରାମକୃଷ୍ଣ ଥରେ ଗିରିଶଚନ୍ଦ୍ର ପରିଚାଳିତ ନାଟ୍ୟଶାଳାରେ ଧର୍ମମୂଳକ ନାଟକ ବିଶେଷର ଅଭି-ନୟ ଦର୍ଶନ କରିବା ଲାଗି ଯାଇଥିଲେ । ସେହି ନାଟକରେ ପ୍ରଧାନ ଭୂମିକା ଯେଉଁ ଅଭିନେତ୍ରୀ ଗ୍ରହଣ କରିଥିଲେ ସେ ହେଉଛନ୍ତି ସେକାଳର ପ୍ରତିଭାବନ୍ତା ବିଖ୍ୟାତ ଅଭିନେତ୍ରୀ ନଟୀ ବିନୋଦିନୀ । ଠାକୁର ତାଙ୍କର ଅଭିନୟଦକ୍ଷତାର ଖୁବ୍ ପ୍ରଶଂସା କରିଥିଲେ । ଅଭିନୟ ଶେଷରେ ସେଦିନ ବିନୋଦିନୀ ଭାବାବିଷ୍ଟ ଠାକୁରଙ୍କର ପାଦବନ୍ଦନା କରିବାର ସୌଭାଗ୍ୟ ଲାଭ କରିଥିଲେ । ସେହିଦିନଠାରୁ ସେ ଠାକୁରଙ୍କୁ ତାଙ୍କର ଇଷ୍ଟଦେବତା ଜ୍ଞାନରେ ବିଶେଷ ଶ୍ରଦ୍ଧାଭକ୍ତି କରୁଥିଲେ । ଥରେ ତାଙ୍କର ଇଚ୍ଛା ହେଲା—ସେ କିପରି ଆଉ ଥରେ ଠାକୁରଙ୍କର ପୁଣ୍ୟଦର୍ଶନ ଲାଭ କରନ୍ତେ ! ଏବେ ଠାକୁରଙ୍କର ନିଦାରୁଣ ପୀଡ଼ାକଥା ଶୁଣି ସେ ତାଙ୍କୁ ଆଉ ଥରେ ଦେଖିବା ଲାଗି ବ୍ୟାକୁଳ ହୋଇପଡ଼ିଲେ । ତାଙ୍କର କାଳୀପଦ ଘୋଷଙ୍କ ସଙ୍ଗେ ପରିଚୟ ଥିଲା । ଠାକୁରଙ୍କର ଦର୍ଶନ ଲାଗି ସୁଯୋଗ ସୃଷ୍ଟି କରିବାକୁ ସେ ତାଙ୍କୁ ଖୁବ୍

ଅନୁନୟ ବିନୟ କଲେ । ଗୋପନରେ ଦୁହେଁ ପରାମର୍ଶ କଲେ ଏବଂ ଦିନେ ସନ୍ଧ୍ୟା ପୂର୍ବରୁ ନଟୀ ବିନୋଦିନୀ ନିଜକୁ ପୁରୁଷ ବେଶରେ ସଜ୍ଜିତ କଲେ । ପ୍ୟାଣ୍ଟ କୋର୍ଟ ଓ ଟାଇ ପିନ୍ଧି ସେ ଆସି ଶ୍ୟାମପୁକୁର ବସାରେ ପହଞ୍ଚିଲେ । କାଳୀପଦ ଘୋଷ ସେହି ବେଶରେ ବିନୋଦିନୀଙ୍କୁ ଠାକୁରଙ୍କ ପାଖକୁ ନେଇଗଲେ । ଠାକୁରଙ୍କ ପାଖରେ ପହଞ୍ଚି ସେ ବିନୋଦିନୀଙ୍କର ଅସଲ ପରିଚୟ ଠାକୁରଙ୍କୁ ଜଣାଇଲେ । ରଙ୍ଗପ୍ରିୟ ଠାକୁର ଏ କଥାରେ ହସି-ଉଠିଲେ ଏବଂ ତାଙ୍କର ସାହସ ଓ ଦକ୍ଷତାର ମଧ୍ୟ ପ୍ରଶଂସା କଲେ । ବିନୋଦିନୀଙ୍କ ଭକ୍ତିଶ୍ରଦ୍ଧାର ଗଭୀରତାରେ ଠାକୁରଙ୍କର ସନ୍ତୋଷ ହେଲା । ତା'ପରେ ଠାକୁର ତାଙ୍କୁ ଈଶ୍ୱରଙ୍କଠାରେ ବିଶ୍ୱାସବତୀ ଓ ତାଙ୍କର ଶରଣାପନ୍ନ ହୋଇ ରହିବା ନିମିତ୍ତ କେତୋଟି ତତ୍ତ୍ୱକଥା କହି ଅଳ୍ପ ସମୟ ପରେ ବିଦାୟ ଦେଲେ । ବିନୋଦିନୀ କାନ୍ଦିକାନ୍ଦି ଠାକୁରଙ୍କ ଶ୍ରୀଚରଣରେ ମସ୍ତକସ୍ପର୍ଶ କରି କାଳୀପଦଙ୍କ ସଙ୍ଗେ ବାହାରି ଆସିଲେ ।

ଠାକୁରଙ୍କ ସଙ୍ଗଗୁଣରେ ଏବଂ ତାଙ୍କର ସେବା କରିବା ଫଳରେ ଭକ୍ତ-ଗଣଙ୍କ ହୃଦୟରେ ଭକ୍ତି-ବିଶ୍ୱାସ ଦିନକୁ ଦିନ ବର୍ଦ୍ଧିତ ହେଉଥିଲା; କିନ୍ତୁ କଠୋର ତ୍ୟାଗ ଏବଂ କଷ୍ଟସାଧ୍ୟ ସଂଯମର ଆଦର୍ଶ ଅପେକ୍ଷା ସାମୟିକ ଭାବର ଉଚ୍ଛ୍ୱାସ ହିଁ ସେମାନଙ୍କ ନିକଟରେ ସେତେବେଳେ ଅଧିକତର ପ୍ରିୟ ହୋଇ ଉଠିଥିଲା । ଏହିପରି ଭାବୁକତାର ବୃଦ୍ଧି ହିଁ ଧର୍ମର ଚୂଡ଼ାନ୍ତ ପରିଣତି ବୋଲି ଭକ୍ତମାନଙ୍କ ମଧ୍ୟରେ ଯେତେବେଳେ ପରିଗଣିତ ହେଉଥିଲା, ସେତେବେଳେ ତ୍ୟାଗ, ସଂଯମ ଓ ନିଷ୍ଠାଦି ତୁଳନାରେ ଏହା ଯେ ଅତି ଅକିଞ୍ଚିତ୍କର ବସ୍ତୁ ଏବଂ ଏହାର ନିର୍ବାଧ ପ୍ରଶ୍ରୟଦ୍ୱାରା ଭବିଷ୍ୟତରେ ବିଷମ ବିପଦର ସମ୍ଭାବନା ରହିଛି—ଏ ଆଶଙ୍କା ସୂକ୍ଷ୍ମଦର୍ଶୀ ନରେନ୍ଦ୍ରନାଥଙ୍କ ଦୃଷ୍ଟି ଏଡ଼ାଇପାରି ନ ଥିଲା । ସେ ଏହି ବିଷୟ ସମସ୍ତଙ୍କୁ ବୁଝାଉଥିଲେ ଏବଂ ଅଯଥା ଭାବୋଚ୍ଛ୍ୱାସରୁ ସେମାନଙ୍କୁ ରକ୍ଷା କରିବା ପାଇଁ ବହୁ ପ୍ରୟାସ କରିଥିଲେ । ନରେନ୍ଦ୍ରନାଥ ଜୋର୍ ଦେଇ କହୁଥିଲେ—"ଯେଉଁ ଭାବୋଚ୍ଛ୍ୱାସ ମାନବ-ଜୀବନରେ ସ୍ଥାୟୀ ପରିବର୍ତ୍ତନ ଆଣିପାରେ ନାହିଁ ଏବଂ ଯାହାର ପ୍ରଭାବ ମନୁଷ୍ୟକୁ ଗୋଟିଏ ମୁହୂର୍ତ୍ତରେ ଈଶ୍ୱରଲାଭ ନିମିତ୍ତ ବ୍ୟାକୁଳ କରିଥାଏ ଓ ଅପର ମୁହୂର୍ତ୍ତରେ

କାମକାଞ୍ଚନର ଅନୁସରଣରୁ ନିବୃତ୍ତ କରିପାରେ ନାହିଁ, ସେପରି ଉକ୍ତିକତାର କୌଣସି ଗମ୍ଭୀରତା ନାହିଁ । ସୁତରାଂ ତା'ର ମୂଲ୍ୟ ଖୁବ୍ କମ୍ ।'' ଯୁକ୍ତିତର୍କ ଅବଲମ୍ବନରେ ଏହି ବିଷୟ ପ୍ରଚାର କରି କେବଳ ନରେନ୍ଦ୍ରନାଥ କ୍ଷାନ୍ତ ହେଉନଥିଲେ, ପରନ୍ତୁ କାହାର ଭାବୁକତାରେ କିଛିମାତ୍ର କୃତ୍ରିମତାର ସନ୍ଧାନ ପାଇଲେ ଏହି ବିଷୟ ନେଇ ସମସ୍ତଙ୍କ ସମକ୍ଷରେ ବ୍ୟଙ୍ଗ ବିଦ୍ରୂପ ପରିହାସ କରି ସମୟ ସମୟରେ ତାହାକୁ ବିଶେଷ ଅପ୍ରତିଭ କରି ଦେଉଥିଲେ । ଅବସର ସମୟରେ ଯୁବକ ଭକ୍ତମାନଙ୍କୁ ଦଳବଦ୍ଧ କରି ସେ ଏହି ସଂସାରର ଅନିତ୍ୟତା, ବୈରାଗ୍ୟ ଏବଂ ଈଶ୍ୱରଭକ୍ତିମୂଳକ ସଙ୍ଗୀତ ସେମାନଙ୍କ ସହିତ ମିଶି ଗାନ କରୁଥିଲେ । ତଦ୍ଦ୍ୱାରା ସେ ସେମାନଙ୍କ ପ୍ରାଣରେ ତ୍ୟାଗ, ବୈରାଗ୍ୟ ଏବଂ ଭକ୍ତିଭାବ ଅନୁକ୍ଷଣ ପ୍ରଜ୍ୱଳିତ କରି ରଖୁଥିଲେ । ଠାକୁରଙ୍କୁ ଦର୍ଶନ କରିବାକୁ ଆସି ଅନେକେ ତାଙ୍କର ମଧୁର ସ୍ୱରଲହରୀ ସଂଯୋଗରେ ଭକ୍ତିମୂଳକ ସଙ୍ଗୀତ ଓ ସ୍ତୁତି ପ୍ରାର୍ଥନାଦି ଶ୍ରବଣ କରି ବୈରାଗ୍ୟ ଓ ଈଶ୍ୱର-ପ୍ରେମର ଉତ୍ତେଜନାରେ ଅଶ୍ରୁ ବିସର୍ଜନ କରିକରି ପ୍ରତ୍ୟାବର୍ତ୍ତନ କରୁଥିଲେ ।

ଭିନ୍ନ ସମ୍ପ୍ରଦାୟଭୁକ୍ତ ଯଥାର୍ଥ ସାଧକମାନେ ଯେପରି ଠାକୁରଙ୍କ ଭକ୍ତ-ମାନଙ୍କ ନିକଟରେ ବିଶେଷ ସମ୍ମାନ ଲାଭ କରିବେ, ସେ ବିଷୟରେ ମଧ୍ୟ ନରେନ୍ଦ୍ରନାଥଙ୍କର ବିଶେଷ ଦୃଷ୍ଟି ଥିଲା । ଏହି ସମୟରେ ଦିନେ ପ୍ରଭୁଦୟାଲ ମିଶ୍ର ନାମକ ଜଣେ ଖ୍ରୀଷ୍ଟାନ୍ ଧର୍ମ-ଯାଜକ ଠାକୁରଙ୍କୁ ଦର୍ଶନ କରିବା ପାଇଁ ଆସି ସେଠାରେ ପହଞ୍ଚିଲେ । ତାଙ୍କୁ ପ୍ରଶ୍ନ କରାହେଲା, ସେ ଖ୍ରୀଷ୍ଟାନ ହୋଇ ମଧ୍ୟ ଗୈରିକ ବସ୍ତ୍ର କାହିଁକି ବ୍ୟବହାର କରୁଛନ୍ତି ? ଏ ପ୍ରଶ୍ନର ଉତ୍ତର ଦେଇ ସେ କହିଲେ, ''ବ୍ରାହ୍ମଣ ବଂଶରେ ଜନ୍ମଗ୍ରହଣ କରିଛି । ସୌଭାଗ୍ୟକ୍ରମେ ଈଶାମସି (ଖ୍ରୀଷ୍ଟ)ଙ୍କ ଉପରେ ବିଶ୍ୱାସ ଆସିବାରୁ ତାଙ୍କୁ ନିଜ ଇଷ୍ଟଦେବତା-ରୂପେ ଗ୍ରହଣ କରିଛି । ତା'ବୋଲି କ'ଣ ମୋତେ ମୋର ପିତୃପିତାମହଙ୍କ ପରମ୍ପରାଗତ ଚାଲିଚଳନାଦି ଛାଡ଼ି ଦେବାକୁ ହେବ ?... ଭାରତର ଈଶ୍ୱର-ପ୍ରେମିକ ଯୋଗୀଗଣ ସନାତନକାଳରୁ ଗୈରିକ ପରିଧାନ କରି ଆସୁଛନ୍ତି । ସୁତରାଂ ଏହା ଅପେକ୍ଷା ମୋ ନିକଟରେ ଅନ୍ୟ କୌଣସି ପ୍ରକାର ବସ୍ତ୍ର କ'ଣ ପ୍ରିୟତର ହୋଇପାରେ ? ନରେନ୍ଦ୍ରନାଥ ଏହି ଖ୍ରୀଷ୍ଟାନ ଧର୍ମଯାଜକଙ୍କୁ ସାଧୁ

ଓ ଯୋଗୀ ଜାଣି ବିଶେଷ ସମ୍ମାନ ପ୍ରଦର୍ଶନପୂର୍ବକ ଗୁରୁଭ୍ରାତାମାନଙ୍କୁ ମଧ୍ୟ ଏହିପରି ବ୍ୟବହାର କରିବାକୁ ଶିକ୍ଷା ଦେଇଥିଲେ । ସେହି ଧର୍ମଯାଜକ ସେହି ଦିନ ଠାକୁରଙ୍କୁ ସ୍ୱୟଂ ଯୀଶୁଖ୍ରୀଷ୍ଟଙ୍କ ଅବତାର ବୋଲି ମତପ୍ରକାଶ କରିଥିଲେ ।

ଏହିଭାବରେ ନରେନ୍ଦ୍ରନାଥ ଯେତେବେଳେ ଠାକୁରଙ୍କ ଭକ୍ତମାନଙ୍କୁ ସୁପଥରେ ପରିଚାଳିତ କରିବାରେ ନିଯୁକ୍ତ ଥିଲେ, ସେତେବେଳେ ଠାକୁରଙ୍କ ଶାରୀରିକ ବ୍ୟାଧି ଦିନକୁ ଦିନ ବୃଦ୍ଧି ପାଇ ଚାଲିଥିଲା । ଡାକ୍ତର ସରକାର ମଧ୍ୟ ଚିନ୍ତିତ ହୋଇପଡ଼ିଲେ ଏବଂ କଲିକତାର ରୁଦ୍ଧ ଦୂଷିତ ବାୟୁ ପାଇଁ ଏଭଳି ହେଉଛି ବୋଲି ସ୍ଥିର କରି, ସହରର ବାହାରେ କୌଣସି ଉଦ୍ୟାନ-ବାଟିକାରେ ଠାକୁରଙ୍କୁ ରଖିବା ନିମିତ୍ତ ପରାମର୍ଶ ଦେଲେ । ଅଳ୍ପ ଦିନ ଭିତରେ କାଶୀପୁରର ମତିଝିଲର ଉତ୍ତରାଂଶ ଯେଉଁଠାରେ ବରାହନଗର ବଜାରକୁ ଯିବା ପାଇଁ ବଡ଼ ରାସ୍ତା ସଙ୍ଗେ ସଂଯୁକ୍ତ ହୋଇଅଛି, ତାହାର ସମ୍ମୁଖରେ ରାସ୍ତାର ଅପର ପାର୍ଶ୍ୱରେ (ପୂର୍ବ) ଅବସ୍ଥିତ (ପ୍ରସିଦ୍ଧ ଲାଲାବାବୁଙ୍କ ପତ୍ନୀ) ରାଣୀ କାତ୍ୟାୟନୀଙ୍କ ଜାମାତା ଗୋପାଳଚନ୍ଦ୍ର ଘୋଷଙ୍କ ଉଦ୍ୟାନ-ଗୃହକୁ ଭକ୍ତମାନେ ମାସିକ ୮୦ ଟଙ୍କା ଭଡ଼ାରେ ଠାକୁରଙ୍କ ରହିବା ଲାଗି ଭଡ଼ା ନେଲେ । ଠାକୁରଙ୍କ ପରମଭକ୍ତ କଲିକତାର ଶିମୁଳିଆ ଗ୍ରାମନିବାସୀ ସୁରେନ୍ଦ୍ରନାଥ ମିତ୍ର ମହାଶୟ ସେହି ଘରର ସମସ୍ତ ଭଡ଼ା ବାବଦ ବ୍ୟୟ ନିଜେ ବହନ କରିବାକୁ ଅଙ୍ଗୀକାରବଦ୍ଧ ହେଲେ । ସବୁ ସ୍ଥିର ହେଲାପରେ ଶୁଭ ଦିନ ଦେଖି ଶ୍ୟାମପୁକୁରରୁ ଜିନିଷପତ୍ର ଧରି ସେହି ଘରକୁ ଆସିବାର ବନ୍ଦୋବସ୍ତ ହେଲା । ପରିଶେଷରେ ଧନୁ ସଂକ୍ରାନ୍ତିର ଦୁଇଦିନ ପୂର୍ବରୁ ଡିସେମ୍ବର ଏଗାର ତାରିଖ ଅପରାହ୍ଣରେ ଭକ୍ତମାନେ ଠାକୁରଙ୍କୁ ଶ୍ୟାମ-ପୁକୁରର ବସାଘରୁ କାଶୀପୁରର ଉଦ୍ୟାନଗୃହକୁ ନେଇଗଲେ । ଫଳପୁଷ୍ପ-ସମନ୍ୱିତ ବୃକ୍ଷରାଜିସୁଶୋଭିତ ଏହି ସ୍ଥାନର ମୁକ୍ତବାୟୁ, ନିର୍ଜନତା ପ୍ରଭୃତି ଦର୍ଶନରେ ଠାକୁରଙ୍କୁ ଆନନ୍ଦିତ ଦେଖି ସମସ୍ତେ ପରମ ଚିତ୍ତପ୍ରସାଦ ଅନୁଭବ କଲେ ।

# ଚତୁର୍ବିଂଶ ଅଧ୍ୟାୟ

# କାଶୀପୁର ଉଦ୍ୟାନରେ

ବିଶେଷ ବଡ଼ ନ ହେଲେ ମଧ୍ୟ କାଶୀପୁରର ଉଦ୍ୟାନଗୃହଟି ବେଶ୍ ରମଣୀୟ । ପ୍ରାୟ ପାଞ୍ଚ ଏକର ଜମି ଉପରେ ଉଦ୍ୟାନଟି ବିସ୍ତୃତ ଥିଲା । ଉଦ୍ୟାନର ଉତ୍ତର ସୀମାର ପ୍ରାୟ ମଧ୍ୟଭାଗରେ ପ୍ରାଚୀରସଂଲଗ୍ନ ପାଖା-ପାଖି ତିନି ଗୃହୋଟି ଛୋଟ ଛୋଟ କୋଠରୀ ରନ୍ଧନ ଓ ଭଣ୍ଡାର ପାଇଁ ନିର୍ଦ୍ଦିଷ୍ଟ ଥିଲା । ଏହି ଘରଗୁଡ଼ିକର ସମ୍ମୁଖରେ ଉଦ୍ୟାନପଥର ଅପର ପାର୍ଶ୍ୱରେ ଗୋଟିଏ ଦୁଇ ମହଲା କୋଠା । ତା'ର ତଳ ମହଲାରେ ଗୃହୋଟି ଏବଂ ଉପର ମହଲାରେ ଦୁଇଟି ଘର । ତଳ ଘରଗୁଡ଼ିକ ଭିତରେ ମଝି ଘରଟି ପ୍ରଶସ୍ତ ହଲ୍‌ଘର । ଏହାର ଉତ୍ତରରେ ପାଖାପାଖି ଦୁଇଟି ଛୋଟ ଘର, ତା' ଭିତରେ ପଶ୍ଚିମ ଘର ପାଖରୁ ପାହାଚ ଦେଇ ଦୁଇ ମହଲାକୁ ଉଠିବାକୁ ହୁଏ ଏବଂ ପୂର୍ବର ଘରଟି ଶ୍ରୀମା ଠାକୁରାଣୀଙ୍କ ପାଇଁ ନିର୍ଦ୍ଦିଷ୍ଟ ଥିଲା । ପୂର୍ବ ପଶ୍ଚିମରେ ବିସ୍ତୃତ ପୂର୍ବୋକ୍ତ ହଲ୍‌ଘର ଓ ତା'ର ଦକ୍ଷିଣପଟର ଘରଟି ଯାହାର ପୂର୍ବ ଦିଗରେ ଗୋଟିଏ କ୍ଷୁଦ୍ର ବାରଣ୍ଡା ସେଗୁଡ଼ିକ ସେବକ ଓ ଭକ୍ତମାନଙ୍କର ଶୟନ ଉପବେଶନାଦି ନିମିତ୍ତ ବ୍ୟବହୃତ ହେଉଥିଲା । ନିମ୍ନର ହଲ୍‌ଘରଟି ଉପରେ ଦୁଇମହଲାରେ ସମପରିସର ଗୋଟିଏ ଘର । ସେଥିରେ ଠାକୁର ରହୁଥାଆନ୍ତି । ଏହାର ଦକ୍ଷିଣରେ ପ୍ରାଚୀରବେଷ୍ଟିତ ସ୍ୱଳ୍ପ ପରିସର ଛାତ । ଏଥିରେ ଠାକୁର କେବେକେବେ ପାଦଚାରଣ ଓ ଉପବେଶନ କରୁଥିଲେ । ଉତ୍ତର ଦିଗରେ ଶିଡ଼ିଘରର ଉପର ଛାତ ଏବଂ ଶ୍ରୀଶ୍ରୀମା ଠାକୁରାଣୀଙ୍କ ନିମିତ୍ତ ନିର୍ଦ୍ଦିଷ୍ଟ ଘରଟିର ଉପରେ ଅବସ୍ଥିତ ସମପରିସର ଖଣ୍ଡିଏ କ୍ଷୁଦ୍ର ଘର ଏହା ଠାକୁରଙ୍କ ସ୍ନାନାଦି ଲାଗି ଏବଂ ଜଣେ ଦୁଇଜଣ ସେବକଙ୍କ ରାତ୍ରିବାସ ନିମିତ୍ତ ବ୍ୟବହୃତ ହେଉଥିଲା । ରହିବା ଘରର ପୂର୍ବ ଓ ପଶ୍ଚିମରେ କେତୋଟି ସୋପାନ ପାରହେଲେ ତଳ ମହଲାର ହଲ୍‌ଘରେ ପ୍ରବେଶ କରିବାକୁ ହୁଏ ।

କୋଠାଘରଟିର ଚତୁର୍ଦ୍ଦିଗରେ ଇଷ୍ଟକନିର୍ମିତ ସୁନ୍ଦର ଉଦ୍ୟାନ-ପଥ ପ୍ରାୟ ଗୋଲାକାରରେ ପ୍ରସାରିତ ଥିଲା । ଉଦ୍ୟାନର ଦକ୍ଷିଣପଶ୍ଚିମ କୋଣରେ ପଶ୍ଚିମ ଦିଗର ପ୍ରାଚୀରକୁ ଲାଗି ଗୋଟିଏ କ୍ଷୁଦ୍ରଘର । ସେଥିରେ ଦରବାନ ରହୁଥିଲା । ତା'ପାଖରେ ବିରାଟ ଲୌହଫାଟକ । ଏହି ଫାଟକରୁ ଆରମ୍ଭ ହୋଇ ଗାଡ଼ି ଯିବା ପାଇଁ ପ୍ରଶସ୍ତ ଉଦ୍ୟାନପଥ । ତାହା ପୂର୍ବ-ଉତ୍ତରକୁ ଅର୍ଦ୍ଧ ଚନ୍ଦ୍ରାକାରରେ ଅଗ୍ରସର ହୋଇ ସମଗ୍ର ରହିବା ଘରର ଚତୁର୍ଦ୍ଦିଗର ଗୋଲାକାର ପଥ ସହିତ ସଂଯୁକ୍ତ ହୋଇଥିଲା । ଗୃହର ପଶ୍ଚିମକୁ ଗୋଟିଏ କ୍ଷୁଦ୍ର ପୁଷ୍କରିଣୀ ଥିଲା । ହଲ୍‌ଘରେ ପ୍ରବେଶ କରିବାର ସୋପାନ-ଶ୍ରେଣୀର ବିପରୀତ ଉଦ୍ୟାନପଥର ଅପରପାର୍ଶ୍ୱରେ ଉକ୍ତ ପୁଷ୍କରିଣୀକୁ ଓହ୍ଲାଇବା ଲାଗି ସୋପାନାବଳୀ ବିଦ୍ୟମାନ ଥିଲା । ଉଦ୍ୟାନର ଉତ୍ତର-ପୂର୍ବ କୋଣରେ ଏହି ପୁଷ୍କରିଣୀଟି ଅପେକ୍ଷା ଆଉ ଗୋଟିଏ ବଡ଼ ପୁଷ୍କରିଣୀ ମଧ୍ୟ ଥିଲା ଏବଂ ତା'ର ଉତ୍ତର-ପଶ୍ଚିମ କୋଣରେ ଦୁଇତିନଟି ଏକତାଲା ଘର ଥିଲା । ଉଦ୍ୟାନର ଅନ୍ୟାନ୍ୟ ସ୍ଥାନରେ ଆମ୍ବ, ପଣସ, ଲିଚୁ ପ୍ରଭୃତି ଫଳ-ବୃକ୍ଷଗୁଡ଼ିଏ ଥିଲା ଏବଂ ଉଦ୍ୟାନପଥଗୁଡ଼ିକର ଉଭୟ ପାର୍ଶ୍ୱରେ ପୁଷ୍ପିତ-ବୃକ୍ଷଗୁଡ଼ିକ ଅତ୍ୟନ୍ତ ଶୋଭନୀୟ ଦିଶୁଥିଲା । ପୁଣି ସେହି କ୍ଷୁଦ୍ର ଓ ବୃହତ୍ ପୁଷ୍କରିଣୀର ପାର୍ଶ୍ୱଭୂମିରେ ଅନେକ ସ୍ଥଳରେ ନିତ୍ୟ ଆବଶ୍ୟକୀୟ ପନିପରିବା ଗଛ ଲାଗିଥିଲା । ବୃହତ୍ ବୃକ୍ଷଗୁଡ଼ିକର ଅନ୍ତରାଳରେ ମଧ୍ୟେ ମଧ୍ୟେ ଶ୍ୟାମଳ ତୃଣାଚ୍ଛାଦିତ ଭୂମିଖଣ୍ଡ ବିଦ୍ୟମାନ ଥିବାରୁ ଉଦ୍ୟାନଟିର ରମଣୀୟତ୍ୱ ଅଧିକତର ବର୍ଦ୍ଧିତ ହେଉଥିଲା ।

ଠାକୁର ମାର୍ଗଶୀର ମାସ ଶେଷ ଆଡ଼କୁ ଏହି ଉଦ୍ୟାନକୁ ଆଗମନ-ପୂର୍ବକ ଆଠମାସ କାଳ ଏଠାରେ ଅତିବାହିତ କରିଥିଲେ । ଏହି ଆଠମାସ କାଳ ସେହି ଦୁରନ୍ତ ବ୍ୟାଧି ପ୍ରତିଦିନ ବଢ଼ି ଚାଲିଥିଲା ଏବଂ ତାଙ୍କର ଦୀର୍ଘ ବଳିଷ୍ଠ ଶରୀରକୁ ଜୀର୍ଣ୍ଣ ଓ ଭଗ୍ନ କରି ଶୁଷ୍କ କଙ୍କାଳରେ ପରିଣତ କରିଥିଲା । କିନ୍ତୁ ଠାକୁରଙ୍କର ସଂକଳ୍ପସିଦ୍ଧ ଓ ସଂଯମବଦ୍ଧ ମନ ସେହି ମାରାତ୍ମକ ରୋଗର ପ୍ରକୋପ ଓ ଯନ୍ତ୍ରଣାକୁ ସଂପୂର୍ଣ୍ଣ ଅଗ୍ରାହ୍ୟ କରୁଥିଲା । ସେ ବ୍ୟକ୍ତିଗତ ଓ ମଣ୍ଡଳୀଗତ ଭାବରେ ଭକ୍ତସଂଘ ମଧ୍ୟରେ ଯେଉଁ କାର୍ଯ୍ୟ ଇତିପୂର୍ବରୁ ଆରମ୍ଭ

କରିଥିଲେ, ତା'ର ପରିସମାପ୍ତି ଲାଗି ନିଜକୁ ନିୟୋଜିତ କରିଥିଲେ । କେବଳ ତାହା ନୁହେଁ—ଠାକୁର ଦକ୍ଷିଣେଶ୍ୱରଠାରେ ଅବସ୍ଥାନ କାଳରେ ନିଜ ସମ୍ବନ୍ଧରେ ଯେଉଁସବୁ ଭବିଷ୍ୟତକଥା ଭକ୍ତମାନଙ୍କୁ ଅନେକ ସମୟରେ କହିଥିଲେ, ଯଥା—"ଯିବା ଆଗରୁ (ଦେହତ୍ୟାଗ ପୂର୍ବରୁ) ହାଟରେ ହାଣ୍ଡି ଭାଙ୍ଗି ଦେବି" (ଅର୍ଥାତ୍ ନିଜର ଦେବମାନବତ୍ୱ ସମସ୍ତଙ୍କ ସମ୍ମୁଖରେ ପ୍ରକାଶିତ କରିବି); "ଯେତେବେଳେ ଅଧିକ ଲୋକ (ତାଙ୍କ ଦିବ୍ୟ ମହିମା ବିଷୟ) ଜାଣିପାରିବେ, କୁହାକୁହି ହେବେ, ସେତେବେଳେ (ନିଜ ଶରୀର ଦେଖାଇ) ଏହି ଖୋଳଟା ଆଉ ରହିବ ନାହିଁ । ମା'ଙ୍କ (ଜଗନ୍ମାତାଙ୍କ) ଇଚ୍ଛାରେ ଭାଙ୍ଗିଯିବ"; "(ଭକ୍ତମାନଙ୍କ ମଧ୍ୟରେ) କେଉଁମାନେ ଅନ୍ତରଙ୍ଗ ଆଉ କେଉଁମାନେ ବହିରଙ୍ଗ, ତାହା ଏହି ସମୟରେ (ତାଙ୍କ ଶାରୀରିକ ଅସୁସ୍ଥତା ବେଳେ) ନିରୂପିତ ହୋଇଯିବ" ଇତ୍ୟାଦି—ସେହିସବୁ ଭବିଷ୍ୟତ-ବାଣୀଗୁଡ଼ିକର ସଫଳତା ନରେନ୍ଦ୍ରନାଥ ପ୍ରମୁଖ ଭକ୍ତଗଣ ପ୍ରତିଦିନ ପ୍ରତ୍ୟକ୍ଷ କରୁଥିଲେ । ଠାକୁର ନରେନ୍ଦ୍ରନାଥଙ୍କୁ ବିଶେଷଭାବରେ କହିଥିଲେ, 'ମା' ତୋତେ ତାଙ୍କର କାର୍ଯ୍ୟ କରିବା ପାଇଁ ସଂସାରରୁ ଟାଣି ଆଣିଛନ୍ତି;" "ମୋ ପରେ ପରେ ତୋତେ ବୁଲିବାକୁ ହେବ,ତୁ ଯିବୁ କୁଆଡ଼େ ?" "ଏମାନେ (ବାଳକ ଭକ୍ତଗଣ) ହେଲେ ହୋମାପକ୍ଷୀର ଶାବକ ଭଳି । ହୋମାପକ୍ଷୀ ଆକାଶରୁ ବହୁ ଉଚ୍ଚକୁ ଉଡ଼ିଯାଇ ଅଣ୍ଡା ପ୍ରସବ କରେ, ସୁତରାଂ ପ୍ରସବ ପରେ ତା'ର ଅଣ୍ଡା ପ୍ରବଳ ବେଗରେ ପୃଥିବୀ ଆଡ଼କୁ ଖସି ଆସେ—ଭୟ ହୁଏ କାଳେ ମାଟିରେ ପଡ଼ି ଚୂର୍ଣ୍ଣ ବିଚୂର୍ଣ୍ଣ ହୋଇଯିବ; କିନ୍ତୁ ତାହା ହୁଏ ନାହିଁ; ଭୂମି ସ୍ପର୍ଶ କରିବା ପୂର୍ବରୁ ଅଣ୍ଡା ବିଦୀର୍ଣ୍ଣ କରି ଶାବକ ନିର୍ଗତ ହୋଇଯାଏ ଏବଂ ପକ୍ଷ ପ୍ରସାରିତ କରି ଊର୍ଦ୍ଧ୍ୱକୁ ଉଡ଼ିଯାଏ । ଏମାନେ ମଧ୍ୟ ସେହିପରି ସଂସାରରେ ଆବଦ୍ଧ ହେବା ପୂର୍ବରୁ ସଂସାର ଛାଡ଼ି ଈଶ୍ୱରଙ୍କ ଆଡ଼କୁ ଅଗ୍ରସର ହେବେ ।" ଏତଦ୍‌ଭିନ୍ନ ନରେନ୍ଦ୍ରନାଥଙ୍କ ଜୀବନ ଗଠନପୂର୍ବକ ତାଙ୍କ ଉପରେ ନିଜ ଭକ୍ତମଣ୍ଡଳୀର ବିଶେଷତଃ ବାଳକ ଭକ୍ତମାନଙ୍କର ଭାର ଅର୍ପଣ କରିଥିଲେ ଓ ସେମାନଙ୍କୁ କେଉଁ ଭାବରେ ପରିଚାଳନା କରିବାକୁ ହେବ, ଏ ବିଷୟରେ ନରେନ୍ଦ୍ରନାଥଙ୍କୁ ସେ ଏହି ସମୟରେ ଶିକ୍ଷା ଦେଇଥିଲେ ।

ନରେନ୍ଦ୍ରନାଥ ସହଜରେ ବୁଝିପାରିଲେ ଯେ ଠାକୁରଙ୍କ ସେବାର ଦାୟିତ୍ୱ ଯେଉଁମାନେ ସ୍ୱେଚ୍ଛାରେ ଗ୍ରହଣ କରିଥିଲେ, ସେମାନଙ୍କୁ ମଧ୍ୟ ଚିକିତ୍ସକମାନଙ୍କର ଘରଠାରୁ ଦୂରରେ ଅବସ୍ଥିତ ଏହି ଉଦ୍ୟାନ-ଗୃହରେ ରହିବାକୁ ହେଲେ ଲୋକବଳ ଓ ଅର୍ଥବଳ ଉଭୟର ହିଁ ପୂର୍ବାପେକ୍ଷା ଅଧିକ ପ୍ରୟୋଜନ । ବଳରାମ, ସୁରେନ୍ଦ୍ର, ରାମ, ଗିରିଶ, ମହେନ୍ଦ୍ର ପ୍ରଭୃତି ଯେଉଁମାନେ ଅର୍ଥବଳର କଥା ଏପର୍ଯ୍ୟନ୍ତ ଚିନ୍ତା କରି ଆସିଛନ୍ତି, ସେମାନେ ଏବିଷୟ ଭାବିଚିନ୍ତି କୌଣସି ଏକ ଉପାୟ ନିଶ୍ଚୟ ସ୍ଥିର କରିବେ । କିନ୍ତୁ ଲୋକବଳ ସଂଗ୍ରାହିଦାଗରେ ନରେନ୍ଦ୍ରଙ୍କୁ ହିଁ ଏହାପୂର୍ବରୁ ଚେଷ୍ଟା କରିବାକୁ ହୋଇଛି ଏବଂ ବର୍ତ୍ତମାନ ମଧ୍ୟ ହେବ । ଏଥିପାଇଁ କାଶୀପୁର ଉଦ୍ୟାନରେ ବର୍ତ୍ତମାନଠାରୁ ତାଙ୍କୁ ଅଧିକାଂଶ ସମୟ ଅତିବାହିତ କରିବାକୁ ହେବ ।

ଆଇନ୍ ( ବି. ଏଲ୍. ) ପରୀକ୍ଷା ଦେବା ନିମିତ୍ତ ନରେନ୍ଦ୍ର ଏବର୍ଷ ପ୍ରସ୍ତୁତ ହେଉଥିଲେ । ସେ ସ୍ଥିର କଲେ ଯେ ଆଇନ୍ ପରୀକ୍ଷାରେ ଉତ୍ତୀର୍ଣ୍ଣ ହୋଇ କେତୋଟି ବର୍ଷର ପରିଶ୍ରମରେ ମାଆ ଓ ଭାଇମାନଙ୍କ ଲାଗି ଗ୍ରାସାଚ୍ଛାଦନର କିଛି ବ୍ୟବସ୍ଥା କରିଦେଇ ସଂସାରରୁ ଅବସର ଗ୍ରହଣ କରି ଈଶ୍ୱରଙ୍କ ଆରାଧନାରେ ବୁଡ଼ିଯିବେ । ଉତ୍ତମାଧିକାରୀଗଣଙ୍କ ଅଗ୍ରଣୀ ହୋଇ ଠାକୁରଙ୍କ ଅଶେଷ କୃପାଲାଭରେ ସମର୍ଥ ହେଲେ ମଧ୍ୟ ନରେନ୍ଦ୍ରନାଥଙ୍କର ଏହି ସଂକଳ୍ପ ସଂସାରର ସଂଘର୍ଷରେ ବିଧ୍ୱସ୍ତ ଓ ବିପର୍ଯ୍ୟସ୍ତ ହୋଇ ଯଥା ସମୟରେ ଯେପରି ଭାବରେ ଅନ୍ୟ ଆକାର ଧାରଣ କରିଥିଲା, ତାହା ଆମ୍ଭେମାନେ ଶୀଘ୍ର ଦେଖିବାକୁ ପାଇବା ।

ପୂର୍ବରୁ କୁହାଯାଇଛି ଯେ ଭକ୍ତଗଣ ଚାନ୍ଦା କରି ଠାକୁରଙ୍କର ଆହାର ଓ ଚିକିତ୍ସାଦିର ବନ୍ଦୋବସ୍ତ କରିଥିଲେ । ଠାକୁରଙ୍କର ଏହା ମନଃପୂତ ନ ହେବାରୁ ଚିକିତ୍ସା ପାଇଁ କଲିକତା (ଶ୍ୟାମପୁକୁର) ଆସିଲାପରେ ଠାକୁର ବଳରାମଙ୍କୁ ଡାକି କହିଲେ, "ଦେଖ ! ଦଶଜଣ ଚାନ୍ଦା କରି ମୋର ଦୈନନ୍ଦିନ ଭୋଜନର ବନ୍ଦୋବସ୍ତ କରିବେ, ଏହା ମୋର ନିତାନ୍ତ ରୁଚିବିରୁଦ୍ଧ । ....ଚିକିତ୍ସା ପାଇଁ ଯେତେଦିନ ଦକ୍ଷିଣେଶ୍ୱରରୁ ବାହାରେ ରହିବ, ସେତେଦିନ ମୋର ଖାଇବା ଖରଚଟା ତୁମେ ହିଁ ଦିଅ ।" କାଶୀପୁରର ଉଦ୍ୟାନ-

ବାଟିକା ଯେତେବେଳେ ତାଙ୍କ ନମିତ୍ତ ଭଡ଼ା ନଆଗଲା, ସେତେବେଳେ ଏହାର ମାସିକ ଭଡ଼ା ଅଶୀଟଙ୍କା ବୋଲି ଜାଣିପାରି ତାଙ୍କର ଗୃହସ୍ଥ ଭକ୍ତଗଣ ଏହା କପରି ବହନ କରିବେ, ତାହା ତାଙ୍କର ଚନ୍ତାର ବିଷୟ ହୋଇପଡ଼ିଲା । ପରିଶେଷରେ ଓସ୍ତ୍ଲେର୍ମାନିର ମୁଚ୍‌ସୁଦ୍ଦି (ଆକାଉଣ୍ଟାଣ୍ଟ) ପରମଭକ୍ତ ସୁରେନ୍ଦ୍ରନାଥଙ୍କୁ ନିଜ ପାଖକୁ ଡକାଇଆଣି କହିଲେ, "ଦେଖ ସୁରେନ୍ଦର ! ଏମାନେ ସବୁହେଲେ କିରାଣୀ ଇତ୍ୟାଦି, ସମସ୍ତଙ୍କର ପିଲାଛୁଆ ଅଛନ୍ତି, ଏମାନେ ଏତେ ଟଙ୍କା କୁଆଡ଼ୁ ଗୃନ୍ଦା କରି ଉଠାଇପାରିବେ ? ଅତଏବ ଭଡ଼ାଟଙ୍କାଟା ତୁମେ ଏକୁଟିଆ ବହନ କର ।" ଶୁଣିବାମାତ୍ରେ ସୁରେନ୍ଦ୍ର ହାତ ଯୋଡ଼ି କହିଲେ, "ଯଥା ଆଜ୍ଞା !" ଆଉଦିନେ ଠାକୁର ପ୍ରକାଶ କଲେ ଯେ ଦୁର୍ବଳତା ହେତୁ ସେ ଘର ବାହାରକୁ ଶୌଚାଦି କାର୍ଯ୍ୟ ଲାଗି ଏହାପରେ ଆଉ ଯାଇପାରିବେ ନାହିଁ । ଜଣେ ଯୁବକ ଭକ୍ତ, ଲାଟୁ, ଠାକୁରଙ୍କ କଥା ଶୁଣି ବ୍ୟଥିତ ହୋଇ ସଙ୍ଗେ ସଙ୍ଗେ ହାତ ଯୋଡ଼ି ସରଳ ଗମ୍ଭୀର ସ୍ୱରରେ କହିଲେ, "ଠାକୁର ! ଯୋଦି ଆଜ୍ଞା କରିବେ ! ହାମିତ ଆପନ୍‌କାର ମେହେନ୍ତର ହାଜିର୍ ଅଛେ ।" ଏମିତ ଏମିତ ବହୁ ଛୋଟ ଛୋଟ ବିଷୟରେ ଠାକୁର ନିଜର ବନ୍ଦୋବସ୍ତ ଯଥାଯୋଗ୍ୟଭାବେ ନିଜେ ହିଁ କରି ନେଇଥିଲେ ଓ ଭକ୍ତମାନଙ୍କୁ ଚନ୍ତାରୁ ମୁକ୍ତ କରିଥିଲେ ।

କ୍ରମେ ସବୁ ବିଷୟର ସୁବନ୍ଦୋବସ୍ତ ହୋଇଗଲା ଏବଂ ଯୁବକ ଭକ୍ତମାନେ ସମସ୍ତେ ସେଠାରେ ଜଣ ଜଣ ହୋଇ ଉପସ୍ଥିତ ହେଲେ । ଠାକୁରଙ୍କ ସେବା ସମୟ ଭିନ୍ନ ଅନ୍ୟ ସମୟରେ ନରେନ୍ଦ୍ର ସେମାନଙ୍କୁ ଧ୍ୟାନ, ଭଜନ, ପାଠ, ସଦାଲାପ, ଶାସ୍ତ୍ରଚର୍ଚ୍ଚା ଇତ୍ୟାଦିରେ ଏପରିଭାବରେ ନିୟୋଜିତ ରଖୁଥିଲେ ଯେ ପରମ ଆନନ୍ଦରେ ଦିନଗୁଡ଼ିକ କଟି ଯାଉଥିଲା । ସେମାନଙ୍କୁ ଆଉ କିଛି ଜଣା ପଡ଼ୁନଥିଲା । ଗୋଟିଏ ଦିଗରେ ଠାକୁରଙ୍କର ଶୁଦ୍ଧ ନିଃସ୍ୱାର୍ଥ ପ୍ରେମର ପ୍ରବଳ ଆକର୍ଷଣ, ଏବଂ ଅନ୍ୟ ଦିଗରେ ନରେନ୍ଦ୍ରନାଥଙ୍କର ଅପୂର୍ବ ସଖ୍ୟଭାବ ଓ ଉନ୍ନତ ସଙ୍ଗସୁଖ ଏକତ୍ର ମିଳିତ ହୋଇ ସେମାନଙ୍କୁ ଏକ ମଧୁର ବନ୍ଧନରେ ଆବଦ୍ଧ କରି ରଖିଥିଲା । କ୍ରମେ ସେମାନେ ପରସ୍ପରକୁ ନିତାନ୍ତ ଆପଣାର ବୋଲି ମନେ-

କରିବାକୁ ଲାଗିଲେ । ନିତାନ୍ତ ଆବଶ୍ୟକ ହେଲେ କେହି କେଉଁ ଦିନ ଘରକୁ ଗଲେ ସୁଦ୍ଧା ସେଦିନ ସନ୍ଧ୍ୟା ବେଳେ ଅଥବା ତା'ପର ଦିନ ସକାଳେ ନିଜେ ନିଜେ ଫେରି ଆସୁଥିଲେ । ଏହିପରି ଭାବରେ ଶେଷ ପର୍ଯ୍ୟନ୍ତ ଏଠାରେ ରହି ଯେଉଁମାନେ ସଂସାରତ୍ୟାଗ ଲାଗି ସେବାବ୍ରତର ଉଦଯାପନ କରୁଥିଲେ, ସଂଖ୍ୟାରେ ସେମାନେ ଅବଶ୍ୟ ବାରଜଣରୁ ଅଧିକ ନ ଥିଲେ । ତଥାପି ସେମାନେ ପ୍ରତ୍ୟେକ ଥିଲେ ଗୁରୁଗତପ୍ରାଣ ଓ ଅସାମାନ୍ୟଭାବେ କର୍ମକୁଶଳ । ସେହି ବାରଜଣଙ୍କ ନାମ ହେଲା —ନରେନ୍ଦ୍ର, ରାଖାଲ, ବାବୁରାମ, ନିରଞ୍ଜନ, ଯୋଗୀନ୍ଦ୍ର, ଲାଟୁ, ତାରକ, ଗୋପାଳ ଦାଦା (ବୁଢ଼ା ଗୋପାଳ), କାଳୀ, ଶଶୀ, ଶରତ ଏବଂ (ହୁଟ୍‌କୋ) ଗୋପାଳ । ହରି, ତୁଳସୀ ଓ ଗଙ୍ଗାଧର ଗୃହରେ ରହି ତପସ୍ୟା ଓ ମଧ୍ୟେ ମଧ୍ୟେ ଯିବା ଆସିବା କରୁଥାଆନ୍ତି । ଯୁବକ ଭକ୍ତମାନେ ପାଳି କରି ଦିନରାତି ଠାକୁରଙ୍କ ପାଖରେ ରହି ଠାକୁରଙ୍କର ସେବାଦି ସମସ୍ତ କର୍ମ ସଂପାଦନ କରୁଥାଆନ୍ତି । ନରେନ୍ଦ୍ରନାଥ ସ୍ୱୟଂ ସମସ୍ତଙ୍କ କାର୍ଯ୍ୟର ତତ୍ତ୍ୱାବଧାନ କରୁଥାଆନ୍ତି ଏବଂ ହଠାତ୍ କିଛି ସମସ୍ୟା ପଡ଼ିଥିଲେ ତା'ର ସମାଧାନ କରିବାର ଦାୟିତ୍ୱ ସେ ନିଜେ ନେଉଥାଆନ୍ତି । ଠାକୁରଙ୍କର ପଥ୍ୟ ପ୍ରସ୍ତୁତ କରିବାର ଭାର ପୂର୍ବପରି ଶ୍ରୀଶ୍ରୀମାତାଠାକୁରାଣୀଙ୍କ ଉପରେ ନ୍ୟସ୍ତ ଥିଲା । ପଥ୍ୟ ପ୍ରସ୍ତୁତ କରିବା ବ୍ୟତୀତ ସେ ମଧ୍ୟାହ୍ନର କିଛି ପୂର୍ବରୁ ଏବଂ ସନ୍ଧ୍ୟାର କିଛି ପରେ ଠାକୁର ଯାହା ଆହାର କରନ୍ତି, ତାହା ସ୍ୱୟଂ ନେଇ ଯାଇ ଠାକୁରଙ୍କୁ ନିଜ ହାତରେ ଖୁଆଇ ଦେଉଥିଲେ । ରନ୍ଧନାଦି ସମସ୍ତ କାର୍ଯ୍ୟରେ ତାଙ୍କୁ ସହାୟତା କରିବା ପାଇଁ ଠାକୁରଙ୍କ ଝିଆରୀ ଶ୍ରୀମତୀ ଲକ୍ଷ୍ମୀଦେବୀଙ୍କୁ ଏହି ସମୟରେ ଅଣାଯାଇ ମାତାଠାକୁରାଣୀଙ୍କ ପାଖରେ ରଖାଯାଇଥିଲା ।

ଗୃହୀ ଭକ୍ତମାନେ ମଧ୍ୟ ଏ ସମୟରେ ନିଶ୍ଚିନ୍ତ ନ ଥିଲେ । ସେମାନେ ରାମଚନ୍ଦ୍ର ଅବା ଗିରିଶଚନ୍ଦ୍ରଙ୍କ ଘରେ ସୁବିଧାନୁସାରେ ସମ୍ମିଳିତ ହୋଇ ଠାକୁରଙ୍କ ସେବାରେ କିଏ କେଉଁ ବିଷୟରେ କେତେ ପରିମାଣରେ ସମୟ, ପରିଶ୍ରମ କିମ୍ବା ଅର୍ଥ ସାହାଯ୍ୟ କରିପାରିବ, ତାହା ସ୍ଥିର କରି ତଦନୁସାରେ କାର୍ଯ୍ୟ କରିବାକୁ ଲାଗିଲେ । ଏହିଭାବରେ ଗୃହୀ ଓ ବ୍ରହ୍ମଚାରୀ ଠାକୁରଙ୍କର

ଉଭୟ ପ୍ରକାରର ଭକ୍ତମାନେ ଯେତେବେଳେ ଏକଯୋଗରେ ଦୃଢ଼ ନିଷ୍ଠା ସହକାରେ ସେବାବ୍ରତରେ ଯୋଗଦାନ କଲେ ଏବଂ ସୁବନ୍ଦୋବସ୍ତ ସହ ସମସ୍ତ କାର୍ଯ୍ୟ ବେଶ୍ ଶୃଙ୍ଖଳାରେ ଚାଲିଲା, ସେତେବେଳେ ନରେନ୍ଦ୍ରନାଥ ଅନେକ ପରିମାଣରେ ନିଶ୍ଚିନ୍ତ ହୋଇ ନିଜ ବିଷୟରେ ଚିନ୍ତା କରିବାର ଅବସର ପାଇଲେ ଏବଂ ଶୀଘ୍ର ଦିନେ ଦୁଇଦିନ ଲାଗି ନିଜ ଗୃହକୁ ଯିବା ଲାଗି ଇଚ୍ଛା କଲେ । ରାତିରେ ଶୋଇଲେ, କିନ୍ତୁ ନିଦ ହେଲା ନାହିଁ । କିଛିକ୍ଷଣ ପରେ ଉଠି ପଡ଼ିଲେ । ତା'ପରେ ଗୋପାଳ, ଶରତ୍ ପ୍ରଭୃତିଙ୍କୁ ଜାଗ୍ରତ ଦେଖି କହିଲେ, "ଚାଲ, ବାହାରକୁ ଯିବା, ବଗିଚା ଭିତରେ ଟିକିଏ ବୁଲିବା, ତମାଖୁ ସେବନ କରିବା ।"

ତା'ପରେ ସେମାନେ ସମସ୍ତେ ଉଠି ବଗିଚା ଭିତରକୁ ଗଲେ । ବୁଲୁ ବୁଲୁ ନରେନ୍ ଗମ୍ଭୀର ସ୍ୱରରେ କହିଲେ, "ଠାକୁରଙ୍କର ଏ ରୋଗ ଯେପରି ବଢ଼ିଲାଣି ସେ ଦେହରକ୍ଷା ପାଇଁ ସଂକଳ୍ପ କରିଛନ୍ତି କି ନାହିଁ କିଏ କହିପାରିବ ? ସମୟ ଥାଉଁ ଥାଉଁ ତାଙ୍କର ସେବା ଏବଂ ଧ୍ୟାନଭଜନ କରି ଯେ ଯେତିକି ପାରୁଛ ଆଧ୍ୟାତ୍ମିକ ଉନ୍ନତି କରିନିଅ । ତା' ନ ହେଲେ ସେ ଯଦି ଦେହ ଛାଡ଼ନ୍ତି, ତେବେ ପଶ୍ଚାତ୍ତାପର ସୀମା ରହିବ ନାହିଁ । ଏଇଟା କରି ସାରିଲେ ଭଗବାନଙ୍କୁ ଡାକିବ, ସେଇଟା ହୋଇଗଲେ ସାଧନ-ଭଜନରେ ଲାଗିବ—ଏହିପରି ଭାବି ଭାବି ତ ଦିନଗୁଡ଼ାକ ଚାଲି ଯାଉଛି, ଏବଂ ଆମେସବୁ ବାସନାଜାଲରେ ଛନ୍ଦିହୋଇ ପଡ଼ୁଛୁ । ଏହି ବାସନା ହିଁ ସବୁ ସର୍ବନାଶର ହେତୁ, ଏହା ହିଁ ମୃତ୍ୟୁ । ବାସନା ତ୍ୟାଗ କର—ତ୍ୟାଗ କର ।"

ପୌଷ ମାସର ଶୀତ ରାତି ଏକ ରମଣୀୟତମ ନୀରବତାରେ ନିସ୍ତବ୍ଧ । ଊର୍ଦ୍ଧ୍ୱରେ ଅନନ୍ତ ନୀଳିମା ଶତ ଶତ ସହସ୍ର ନକ୍ଷତ୍ରଚକ୍ଷୁରେ ଏ ପୃଥିବୀ ଉପରେ ସ୍ଥିର ଦୃଷ୍ଟି ନିବଦ୍ଧ କରି ରହିଅଛି । ନିମ୍ନରେ ଉଦ୍ୟାନର ବୃକ୍ଷତଳ ଭୂମି ଶୁଷ୍କ ଏବଂ ବର୍ତ୍ତମାନ ସୁସଂସ୍କୃତ ହେବା ଫଳରେ ଉପବେଶନଯୋଗ୍ୟ ହୋଇଅଛି । ନରେନ୍ଦ୍ରଙ୍କର ବୈରାଗ୍ୟପ୍ରବଣ, ଧ୍ୟାନପରାୟଣ ମନ ବାହାରର ଏହି ନୀରବତାକୁ ଅନ୍ତରରେ ଉପଲବ୍ଧି କରି ନିଜ ଭିତରେ

ନିକେ ବୁଲିଗଲେ । ସେ ଆଉ ପଦଚାରଣ ନ କରି ଗୋଟିଏ ବୃକ୍ଷତଳେ ଆସି ଉପବେଶନ କଲେ । କିଛି ମୁହୂର୍ତ୍ତପରେ ତାଙ୍କର ଆଖିରେ ପଡ଼ିଲା—ନିକଟରେ ଶୁଖିଲା ଘାସପତ୍ର ଓ ଭଙ୍ଗା କାଠିକୁଟାର ଗୋଟିଏ ସ୍ତୂପ । ସେହି ସ୍ତୂପକୁ ଲକ୍ଷ୍ୟ କରି ନରେନ୍ଦ୍ର ଗମ୍ଭୀର କଣ୍ଠରେ କହି ଉଠିଲେ, "ଦିଅ ଏଥିରେ ଅଗ୍ନି ଲଗାଇ ଦିଅ । ସାଧୁମାନେ ଏହି ସମୟରେ ବୃକ୍ଷତଳେ ଧୁନି ଜଳାଇଥାଆନ୍ତି । ଆସ ଆମ୍ଭେମାନେ ମଧ୍ୟ ସେହିପରି ଧୁନି ଜଳାଇ ଅନ୍ତରର ନିଭୃତ ବାସନାସବୁକୁ ଦଗ୍ଧ କରିଦେବା ।" ଅଗ୍ନି ପ୍ରଜ୍ୱଳିତ ହୋଇ ଉଠିଲା । ଚତୁର୍ଦ୍ଦିଗରେ ଇତସ୍ତତଃ ବିକ୍ଷିପ୍ତ ହୋଇ ପଡ଼ିଥିବା ଶୁଖିଲା କାଠିକୁଟାଗୁଡ଼ିକୁ ଗୋଟାଇ ଆଣି ସମସ୍ତେ ସେହି ଜ୍ୱଳନ୍ତ ଅଗ୍ନି ମଧ୍ୟରେ ଆହୁତିସ୍ୱରୂପ ନିକ୍ଷେପ କଲେ । ସମସ୍ତଙ୍କର ମନରେ ଏହି ଅନୁଭୂତି ହେଲା—ଯେପରିକି ସତକୁ ସତ ପାର୍ଥିବ ବାସନାସମୂହ ଭସ୍ମୀଭୂତ ହୋଇ ମନ ପ୍ରସନ୍ନ ଓ ନିର୍ମଳ ହେଉଅଛି ! ଏବଂ ସମସ୍ତେ ଯେପରି ଭଗବାନଙ୍କର ନିକଟବର୍ତ୍ତୀ ହେଉଅଛନ୍ତି । ଏହିଭାବରେ ଦୁଇ ତିନିଘଣ୍ଟା କାଳ କାଟିବାପରେ ଯେତେବେଳେ ଆଉ ଶୁଖିଲା କାଠିକୁଟା କିଛି ମିଳିଲା ନାହିଁ, ସେତେବେଳେ ଅଗ୍ନିକୁ ଶାନ୍ତ କରି ସମସ୍ତେ ଗୃହକୁ ଫେରି ପୁନରାୟ ଶୟନ କଲେ । ରାତି ସେତେବେଳକୁ ଚାରିଟା ବାଜିଲାଣି । ଯେଉଁମାନେ ଏହି କାର୍ଯ୍ୟରେ ଯୋଗଦାନ କରି ନ ପାରି ଦୁଃଖପ୍ରକାଶ କଲେ, ନରେନ୍ଦ୍ରନାଥ ସେମାନଙ୍କୁ ସାନ୍ତ୍ୱନା ପ୍ରଦାନ କରିବା ଲାଗି କହିଲେ, "ଆମ୍ଭେ ତ ପୂର୍ବରୁ ଅଭିପ୍ରାୟ କରି ଏହି କାର୍ଯ୍ୟ କରିନାହୁଁ ଏବଂ ଏଥିରେ ଯେ ଆମ୍ଭେ ଏତେ ଆନନ୍ଦ ପାଇବୁ, ତାହା ମଧ୍ୟ ଆମକୁ ଜଣା ନ ଥିଲା । ବର୍ତ୍ତମାନଠାରୁ ଅବସର ପାଇଲେ ହିଁ ସମସ୍ତେ ମିଶି ଧୁନି ଜଳାଇବା । ଦୁଃଖ କାହିଁକି ?"

ପୂର୍ବ ସିଦ୍ଧାନ୍ତ ଅନୁଯାୟୀ ସେଦିନ ସକାଳେ ନରେନ୍ଦ୍ରନାଥ କଲିକତା ଚାଲିଗଲେ ଏବଂ ମାତ୍ର ଦିନକ ପରେ କେତେ ଖଣ୍ଡ ଆଇନ ପୁସ୍ତକ ସହ ପୁନର୍ବାର କାଶୀପୁରକୁ ଫେରି ଆସିଲେ ।

କ୍ରମେ ପୌଷମାସର ଅର୍ଦ୍ଧେକ ଅତୀତ ହୋଇଗଲା । ୧୮୮୬ ମସିହାର ପହିଲା ଜାନୁଆରି । ଠାକୁର ସେଦିନ ବିଶେଷ ସୁସ୍ଥ ବୋଧ

କରୁଥିଲେ । ଏପରିକି କିଛି ସମୟ ପାଇଁ ଉଦ୍ୟାନରେ ଟିକିଏ ବୁଲିଚାଲି କରିବାର ଅଭିପ୍ରାୟ ମଧ୍ୟ ପ୍ରକାଶ କଲେ । ସେଦିନ ନବବର୍ଷ ଲାଗି ଛୁଟି ଥିଲା । ତେଣୁ ଗୃହସ୍ଥ ଭକ୍ତମାନେ ମଧ୍ୟାହ୍ନ ଅତୀତ ହେବା ପରେ ପରେ ଗୋଟି ଗୋଟି ହୋଇ କିମ୍ବା ଦଳ ଦଳ ହୋଇ ଆସି ଉଦ୍ୟାନରେ ଉପସ୍ଥିତ ହେଲେ ।

ଏହିଭାବରେ ଅପରାହ୍ନ ତିନଟା ବେଳକୁ ଠାକୁର ଯେତେବେଳେ ଉଦ୍ୟାନରେ ବୁଲିବା ଲାଗି ଉପର ମହଲାରୁ ତଳକୁ ଓହ୍ଲାଇଲେ, ସେତେବେଳକୁ ତିରିଶ ଜଣରୁ ବେଶୀ ଲୋକ ଘର ଭିତରେ କିମ୍ବା ଉଦ୍ୟାନସ୍ଥ ବୃକ୍ଷଗୁଡ଼ିକ ତଳେ ବସି ପରସ୍ପର ସହିତ ବାକ୍ୟାଳାପରେ ରତ ଥିଲେ । ଠାକୁରଙ୍କୁ ଦେଖିବାମାତ୍ରେ ସମସ୍ତେ ସସମ୍ଭ୍ରମ ଉଠି ଠିଆ ହୋଇ ପ୍ରଣାମ କଲେ । ଠାକୁର ନିମ୍ନସ୍ଥ ହଲ୍‌ଘରର ପଶ୍ଚିମ ଦ୍ୱାର ଦେଇ ଉଦ୍ୟାନପଥରେ ଅବତରଣ କରି ଦକ୍ଷିଣ ପଟ ଫାଟକ ଆଡ଼କୁ ଧୀରେ ଧୀରେ ଅଗ୍ରସର ହେଲେ । ଭକ୍ତଗଣ ଟିକିଏ ଦୂରଛଡ଼ା ହୋଇ ତାଙ୍କର ଅନୁସରଣ କରିବାକୁ ଲାଗିଲେ । ଏହିଭାବରେ ବାସଗୃହ ଓ ମୁଖ୍ୟ ଫାଟକର ମଧ୍ୟସ୍ଥଳରେ ଉପସ୍ଥିତ ହୋଇ ଠାକୁର ଗିରିଶ, ରାମ, ଅତୁଳ ପ୍ରଭୃତି କେତେଜଣଙ୍କୁ ପଶ୍ଚିମପଟେ ବୃକ୍ଷତଳେ ଦେଖିବାକୁ ପାଇଲେ । ସେମାନେ ମଧ୍ୟ ତାଙ୍କୁ ଦେଖିବା ମାତ୍ରେ ସେହି ସ୍ଥାନରୁ ପ୍ରଣାମ କରି ମହାନନ୍ଦରେ ତାଙ୍କ ପାଖରେ ଆସି ଉପସ୍ଥିତ ହେଲେ । କେହି କୌଣସି କଥା କହିବା ପୂର୍ବରୁ ଠାକୁର ସହସା ଗିରିଶଚନ୍ଦ୍ରଙ୍କୁ ସମ୍ବୋଧନ କରି କହିଲେ —"ଗିରିଶ! ତୁମେ ଯେ ସମସ୍ତଙ୍କୁ ଏତେ କଥା (ମୋର ଅବତାରତ୍ୱ ସମ୍ବନ୍ଧରେ) କହିବୁଲ, ତୁମେ (ମୋ ସମ୍ବନ୍ଧରେ) କ'ଣ ଦେଖିଛ କ'ଣ ବୁଝିଛ ?" ଗିରିଶ ଏଥିରେ କିଛିମାତ୍ର ବିଚଳିତ ନ ହୋଇ ତାଙ୍କର ପଦପ୍ରାନ୍ତରେ ଭୂମି ଉପରେ ଜାନୁପାତପୂର୍ବକ ଉପବିଷ୍ଟ ହୋଇ, ଊର୍ଦ୍ଧ୍ୱମୁଖରେ କରଯୋଡ଼ ହୋଇ ଗଦଗଦ୍ ସ୍ୱରରେ କହି ଉଠିଲେ, "ବ୍ୟାସ, ବାଲ୍ମୀକି ଯାହାଙ୍କର ଇୟତ୍ତା କରିପାରି ନାହାନ୍ତି ମୁଁ ତାଙ୍କ ସମ୍ବନ୍ଧରେ ଅଧିକ ଆଉ କ'ଣ କହିପାରିବି ?" ଗିରିଶଙ୍କ ଅନ୍ତରର ସରଳ ବିଶ୍ୱାସ ପ୍ରତିକଥାରେ ଫୁଟିଉଠିଲା; ଠାକୁର

ମୁଗ୍ଧ ହୋଇଗଲେ ଏବଂ ତାଙ୍କୁ ଉପଲକ୍ଷ୍ୟ କରି ସମବେତ ଭକ୍ତମାନଙ୍କୁ କହିଲେ, "ତୁମମାନଙ୍କୁ ମୁଁ ଆଉ କ'ଣ କହିବି ? ଆଶୀର୍ବାଦ କରୁଛି, ତୁମମାନଙ୍କର ଚୈତନ୍ୟ ହେଉ ।" ଭକ୍ତମାନଙ୍କ ପ୍ରତି ପ୍ରେମ ଓ କରୁଣାରେ ଆତ୍ମହରା ହୋଇ ସେ ଏହି କଥାତକ ମାତ୍ର କହି ଭାବାବିଷ୍ଟ ହୋଇ-ପଡ଼ିଲେ । ଭକ୍ତଗଣ ଜୟରବରେ ଚତୁର୍ଦ୍ଦିଗ ମୁଖରିତ କରି ଗୋଟି ଗୋଟି ହୋଇ ଆସି ପ୍ରଣାମ କରିବାକୁ ଆରମ୍ଭ କଲେ । ଠାକୁରଙ୍କର କରୁଣା-ସମୁଦ୍ର ଆଜି ବେଳାଭୂମି ଅତିକ୍ରମ କରି ଏକ ଅଦୃଷ୍ଟପୂର୍ବ ପରିସ୍ଥିତି ସୃଷ୍ଟି କଲା । ଅର୍ଦ୍ଧବାହ୍ୟଦଶାରେ ସେ ସମବେତ ପ୍ରତ୍ୟେକ ଭକ୍ତଙ୍କୁ ଦିବ୍ୟ ଶକ୍ତିପୂତ ସ୍ପର୍ଶରେ କୃତାର୍ଥ କରିବାକୁ ଲାଗିଲେ । ଏହି ଅପୂର୍ବ ସ୍ପର୍ଶରେ କେହି କେହି ବାକ୍‌ରୁଦ୍ଧ ହୋଇ ମନ୍ତ୍ରମୁଗ୍ଧବତ୍ ତାଙ୍କୁ କେବଳ ନିରୀକ୍ଷଣ କରିବାକୁ ଲାଗିଲେ । କେହି ଅବା ଗୃହମଧ୍ୟସ୍ଥ ଭକ୍ତଙ୍କୁ ଠାକୁରଙ୍କର କୃପାଲାଭ କରି ଧନ୍ୟ ହେବାଲାଗି ଚିତ୍କାର କରି ଆହ୍ୱାନ କଲେ ଏବଂ ଆଉ କେହି କେହି ଉଦ୍ୟାନରୁ ପୁଷ୍ପଗୁଚ୍ଛ ଚୟନ କରିଆଣି ମନ୍ତ୍ର ଉଚ୍ଚାରଣପୂର୍ବକ ଠାକୁରଙ୍କ ଶ୍ରୀଅଙ୍ଗରେ ନିକ୍ଷେପ କରି ତାଙ୍କୁ ପୂଜା କରିବାକୁ ଲାଗିଲେ । ଏହି ଭାବରେ କିଛି ସମୟ ଅତିବାହିତ ହୋଇଗଲା । କ୍ରମେ ଠାକୁରଙ୍କର ଭାବ ଶାନ୍ତ ହୋଇଆସିଲା । ଭକ୍ତମାନେ ମଧ୍ୟ ପୂର୍ବବତ୍ ପ୍ରକୃତିସ୍ଥ ହେଲେ । ଠାକୁର ଆଜିର ଏହି ଉଦ୍ୟାନ-ଭ୍ରମଣ ଏହି ଭାବରେ ପରିସମାପ୍ତ କରି ଶୟନଗୃହକୁ ଫେରିଆସିଲେ ।

ରାମଚନ୍ଦ୍ର ପ୍ରମୁଖ କୌଣସି କୌଣସି ଭକ୍ତ ସେଦିନର ଏହି ଘଟଣାଟିକୁ ବର୍ଣ୍ଣନା କରି କହିଛନ୍ତି ଯେ ସେଦିନ ଠାକୁର "କଳ୍ପତରୁ" ଭାବରେ ଆବିଷ୍ଟ ହୋଇଥିଲେ । ଠାକୁରଙ୍କର ସନ୍ନ୍ୟାସୀ ଭକ୍ତମାନଙ୍କ ଭିତରୁ କେହି କେହି ଏହି ଘଟଣାକୁ ଠାକୁରଙ୍କର "ଅଭୟ ପ୍ରକାଶ" ବା "ଅଭୟ ପ୍ରଦାନ" ବୋଲି ଅଭିହିତ କରିଛନ୍ତି । କାରଣ ଦେବ-ମାନବତ୍ୱ ଏବଂ ଜନସାଧାରଣଙ୍କୁ ନିର୍ବିଚାରରେ ଅଭୟାଶ୍ରୟ ପ୍ରଦାନର ପରିଚୟ ହିଁ ଏହି ଘଟଣାରେ ଚମତ୍କାର ଭାବରେ ପ୍ରକଟିତ ହୋଇଥିଲା । ସେଦିନର ସେହି ଅପୂର୍ବ ପରିବେଶ ଭିତରେ ଯେଉଁମାନେ ଉପସ୍ଥିତ ଥିଲେ, ସେମାନଙ୍କ

ଭିତରୁ ଆଠ ଦଶଜଣଙ୍କ ନାମ ବିଶେଷ ଭାବରେ ଉଲ୍ଲେଖଯୋଗ୍ୟ । ସେମାନେ ହେଲେ—ଗିରିଶ, ଅତୁଲ୍, ରାମ, ନବଗୋପାଳ, ହରମୋହନ, ବୈକୁଣ୍ଠ, କିଶୋରୀ (ରାୟ), ହାରାଣ୍, ରାମଲାଲ ଓ ଅକ୍ଷୟ । କିନ୍ତୁ ଠାକୁରଙ୍କର ସନ୍ନ୍ୟାସୀ ଭକ୍ତମାନଙ୍କ ଭିତରୁ ଜଣେ ହେଲା ସେଦିନ ଘଟଣା-ସ୍ଥଳରେ ଉପସ୍ଥିତ ନ ଥିଲେ । ଠାକୁର ଉଦ୍ୟାନରେ ପଦଚାରଣ କରିବା ଲାଗି ତଳକୁ ଓହ୍ଲାଇବା ମାତ୍ରେ, ସେମାନେ ଏହି ଅବକାଶରେ ତାଙ୍କର ଶଯ୍ୟାଦି ଖରାରେ ଶୁଖାଇ ଘରଟିକୁ ସଫାସଫି କରିବାରେ ବ୍ୟସ୍ତ ରହିଥିଲେ । କର୍ତ୍ତବ୍ୟ କର୍ମ ଅଧା ରଖି ତଳକୁ ଗଲେ ଠାକୁରଙ୍କର ଅସୁବିଧା ହୋଇପାରେ ଭାବି, ସେମାନେ ଆଉ ସେଠାକୁ ଯିବା ଲାଗି ପ୍ରବୃତ୍ତ ହୋଇ ନ ଥିଲେ ।

ଠାକୁରଙ୍କର ସେହି ଦୁରାରୋଗ୍ୟ ଗଳାରୋଗର ନାନାପ୍ରକାର ଚିକିତ୍ସା ସତ୍ତ୍ୱେ ଯେତେବେଳେ ଆରୋଗ୍ୟର କୌଣସି ଲକ୍ଷଣ ଦେଖାଗଲା ନାହିଁ, ସେତେବେଳେ ଶ୍ରୀଶ୍ରୀମା ଠାକୁରାଣୀ ଦୈବଶକ୍ତିର ସାହାଯ୍ୟରେ ଠାକୁରଙ୍କର ରୋଗମୁକ୍ତ ହେବା ଆଶାରେ ତାରକେଶ୍ୱର ଗଲେ । ସେଠାରେ ଅନଶନରେ ରହି ମନ୍ଦିର ଭିତରେ ତାରକେଶ୍ୱର ମହାଦେବଙ୍କ ନିକଟରେ ଦୁଇଦିନ ଅଧା ଦେଇ ପଡ଼ିରହିଲେ । ଦ୍ୱିତୀୟ ରାତିରେ ଗୋଟିଏ ପ୍ରଚଣ୍ଡ ଶବ୍ଦରେ ତାଙ୍କର ତନ୍ଦ୍ରା ଭାଙ୍ଗିଗଲା । ସେ ଅନୁଭବ କଲେ ଯେ ଏହି ପାର୍ଥିବ ସମ୍ବନ୍ଧର ମୂଲ୍ୟ କ'ଣ ? ଏହା ତ ସମ୍ପୂର୍ଣ୍ଣ ଅଳୀକ । ଶ୍ରୀଶ୍ରୀମା ଏହିପ୍ରକାର ପ୍ରବଳ ବୈରାଗ୍ୟର ଭାବ ନେଇ କାଶୀପୁର ଫେରି ଆସିଲେ । ଠାକୁର ପଚାରିଲେ "କି ଗୋ ! ସେଠାକୁ ଯାଇ କ'ଣ କିଛି ଫଳ ପାଇଲ ?" ମାତାଠାକୁରାଣୀ ସବୁ ଘଟଣା ଠାକୁରଙ୍କ ନିକଟରେ ନିବେଦନ କଲେ । ସର୍ବଜ୍ଞ ଠାକୁର ଜାଣିଥିଲେ ଯେ ଏହା ହିଁ ହେବ ଯଥାର୍ଥ ପରିଣତି—ଯଥାର୍ଥ ଫଳ ।

ନରେନ୍ଦ୍ରଙ୍କ ଭଳି କାଳୀ (ପରବର୍ତ୍ତୀ କାଳରେ ସ୍ୱାମୀ ଅଭେଦାନନ୍ଦ) ମଧ୍ୟ ଚରମ ତତ୍ତ୍ୱଜ୍ଞାନଲାଭ ପାଇଁ ବ୍ୟାକୁଳ ହୋଇ ଉଠିଥିଲେ, କିନ୍ତୁ ତାଙ୍କ ମନରେ ସନ୍ଦେହର ଏକ ଗଭୀର ଛାୟାପାତ ରହିଥିଲା । ସେ ଯେତେ-

ବେଳେ ଠାକୁରଙ୍କ ପାଖରେ ତାଙ୍କର ମନୋଭାବ ବ୍ୟକ୍ତ କଲେ, ସେ କାଳୀଙ୍କୁ ପଚାରିଲେ, "ତୁ ଈଶ୍ୱରଙ୍କୁ ବିଶ୍ୱାସ କରୁ ?" କାଳୀ କହିଲେ, "ନା ।" ଠାକୁର ପୁନଶ୍ଚ ପଚାରିଲେ, "ଆଚ୍ଛା ! ତୋର ଭଲ ଧର୍ମରେ ଆସ୍ଥା ଅଛି ?" କାଳୀ ଉତ୍ତର ଦେଲେ, "ନା; ମୁଁ ବେଦାଦି କୌଣସି ଶାସ୍ତ୍ର ମାନେ ନାହିଁ । ମୋର ଆଧ୍ୟାତ୍ମିକ କୌଣସି ବିଷୟରେ ଆସ୍ଥା ନାହିଁ ।" ଠାକୁର ଧୀରଭାବରେ ଏହିସବୁ କଥା ଶୁଣି ତାଙ୍କୁ କହିଲେ, "ସାଧାରଣ କୌଣସି ଗୁରୁଙ୍କ ପାଖରେ ତୁ ଯଦି ଏକଥା କହିଥାଆନ୍ତୁ, ସେ ତୋତେ ମାରି ଘୋଡ଼ାଇଥାଆନ୍ତେ । ନରେନ୍‌କୁ ଦେଖୁଛୁ ! ତା' ମନରେ ବି ଏମିତି ସନ୍ଦେହ ଥିଲା; କିନ୍ତୁ ସେ ବର୍ତ୍ତମାନ ସବୁ ବିଶ୍ୱାସ କରୁଛି । ସେ ବର୍ତ୍ତମାନ ରାଧାକୃଷ୍ଣ ନାମ ଉଚ୍ଚାରଣ କଲା ମାତ୍ରେ କାନ୍ଦି ପକାଉଛି । ତୋର ମଧ୍ୟ ଏ ସନ୍ଦେହ ଶୀଘ୍ର ଚାଲିଯିବ । ତୁ ମଧ୍ୟ ବିଶ୍ୱାସ କରିବୁ ।"

ଦିନେ ବୁଢ଼ା ଗୋପାଳ ସାଧୁ ସନ୍ନ୍ୟାସୀଙ୍କୁ କିଛି ଗେରୁଆ ବସ୍ତ୍ର ଓ ରୁଦ୍ରାକ୍ଷମାଳା ଦେବାର ଇଚ୍ଛା ପ୍ରକାଶ କଲେ । ଠାକୁର ତାଙ୍କର ଯୁବକ ଭକ୍ତମାନଙ୍କୁ ଦେଖାଇ ଗୋପାଳଙ୍କୁ କହିଲେ, "ତୁମେ ଏମାନଙ୍କ ଅପେକ୍ଷା ଭଲ ତ୍ୟାଗୀ ସନ୍ନ୍ୟାସୀ ଆଉ କେଉଁଠାରେ ପାଇବ ? ତୁମର ଗେରୁଆ ବସ୍ତ୍ର ଆଉ ରୁଦ୍ରାକ୍ଷମାଳା ଏହିମାନଙ୍କୁ ଦିଅ ।" ଠାକୁରଙ୍କ ନିର୍ଦ୍ଦେଶ ଅନୁସାରେ ସେ ସବୁ ଦ୍ରବ୍ୟ ନରେନ୍ଦ୍ରାଦି ଭକ୍ତମାନଙ୍କୁ ପ୍ରଦାନ କରି ଧନ୍ୟ ହେଲେ । ଖଣ୍ଡିଏ ଗେରୁଆ ବସ୍ତ୍ର ଆଉ ରୁଦ୍ରାକ୍ଷମାଳା ଠାକୁର କିନ୍ତୁ ନିଜ ପାଖରେ ଗିରିଶଚନ୍ଦ୍ରଙ୍କ ପାଇଁ ପୃଥକ୍ କରି ରଖିଲେ ।

ଦିନେ ସନ୍ଧ୍ୟାରେ ଠାକୁର ସେମାନଙ୍କ ଲାଗି ଏକ ବିଶେଷ କ୍ରିୟାର ଅନୁଷ୍ଠାନ ଆରମ୍ଭ କଲେ ଏବଂ ଏହି ଯୁବକ ସନ୍ନ୍ୟାସୀମାନଙ୍କୁ ଜାତିବର୍ଣ୍ଣ ନିର୍ବିଶେଷରେ ସମସ୍ତଙ୍କ ଗୃହରୁ ଅନ୍ନଭିକ୍ଷା କରିବାକୁ କହିଲେ । ଠାକୁର ଏହି ଭାବରେ କାଶୀପୁର ଉଦ୍ୟାନରେ ହିଁ ନିଜ ହସ୍ତରେ ଏହି ରାମକୃଷ୍ଣ ସଂଘର ପ୍ରତିଷ୍ଠା କରିଥିଲେ ।

ନରେନ୍ଦ୍ରନାଥ ଏବେ ନିର୍ବିକଳ୍ପ ସମାଧିଲାଭ ଲାଗି ଅଧୀର ହୋଇ ପଡ଼ିଲେ । ଏତେ ଦିନ ବହୁ କୃଚ୍ଛ୍ର ସାଧନ, ଧ୍ୟାନଜପ କରି ମଧ୍ୟ ସେ

ଏହି ତତ୍ତ୍ୱ ଜ୍ଞାନର ସନ୍ଧାନ ପାଇ ନାହାନ୍ତି । ଦିନେ ସନ୍ଧ୍ୟାରେ ସେ ଗଭୀର ଧ୍ୟାନରେ ମଗ୍ନ ହୋଇ ହୋଇଗଲେ । ହଠାତ୍ ଅପ୍ରତ୍ୟାଶିତଭାବରେ ଏହି ଦିବ୍ୟାନୁଭୂତି ତାଙ୍କ ଅନ୍ତରରେ ଜାଗିଉଠିଲା । ସେ ଅନୁଭବ କଲେ ଯେ ଏକ ବିରାଟ ଜ୍ୟୋତି ତାଙ୍କ ମସ୍ତକର ପଶ୍ଚାଦ୍ଦେଶରେ ଫୁଟିଉଠିଛି । ଖୁବ୍ ଶୀଘ୍ର ତାଙ୍କର ମନ ଦ୍ୱୈତଭୂମି ଅତିକ୍ରମ କରି ନାମରୂପବିହୀନ ଅଖଣ୍ଡ ଅନନ୍ତ ସତ୍ତାରେ ବିଲୀନ ହୋଇଗଲା । ପରେ ଯେତେବେଳେ ସେ ଏହି ନିର୍ବିକଳ୍ପ ଅବସ୍ଥାରୁ ବ୍ୟୁତ୍ଥିତ ହେଲେ, ସେତେବେଳେ ତାଙ୍କର ବୋଧହେଲା ଯେ ସତେ ଯେପରି ତାଙ୍କର ମୁଣ୍ଡଟି କେବଳ ଅଛି, ଶରୀରର ଆଉ କିଛି ନାହିଁ । ସେ ଚିତ୍କାର କରି ଉଠିଲେ—"ମୋ ଦେହ କୁଆଡ଼େ ଗଲା ?"

ତାଙ୍କର ଚିତ୍କାର ଶୁଣି ବୁଢ଼ା ଗୋପାଳ ଦୌଡ଼ି ଆସିଲେ ଏବଂ କହିଲେ, "ହେ ନରେନ୍ ! ଏଇ ତ ତୁମ ଦେହ !" କିନ୍ତୁ ତଥାପି ନରେନ୍ ଶରୀର ସମ୍ବନ୍ଧରେ ସଚେତନ ହୋଇପାରିଲେ ନାହିଁ । ନିଜର ପ୍ରୟାସ ବ୍ୟର୍ଥ ହେବା ଦେଖି ବୁଢ଼ା ଗୋପାଳ ଶଙ୍କିତ ଚିତ୍ତରେ ଠାକୁରଙ୍କ ନିକଟକୁ ଯାଇ ସବୁ କଥା ନିବେଦନ କଲେ । ଠାକୁର ସବୁ ଶୁଣି ସାରି କହିଲେ, "କିଛି ସମୟ ପାଇଁ ତାକୁ ଏହି ଭାବରେ ରହିବାକୁ ଦିଅ । ଏହି ଅବସ୍ଥା ଲାଭ ପାଇଁ ସେ ମୋତେ ବହୁତ ବ୍ୟସ୍ତ କରିଛି ।"

ଅନେକ ସମୟ ପରେ ନରେନ୍ଦ୍ରନାଥଙ୍କର ସ୍ୱାଭାବିକ ଅବସ୍ଥା ଫେରି ଆସିଲା । ସେ ଦେଖିଲେ ଯେ ତାଙ୍କର ଗୁରୁଭ୍ରାତାମାନେ ଚାରିପାଖରେ ବସିଛନ୍ତି । ତାଙ୍କ ପ୍ରାଣରେ ଆଜି ଏକ ଗଭୀର ପ୍ରଶାନ୍ତି ଅନୁଭୂତ ହେଉଛି । ସେ ଯେତେବେଳେ ଠାକୁରଙ୍କ ପାଖକୁ ଆସିଲେ, ସେତେବେଳେ ଠାକୁର ତାଙ୍କୁ କହିଲେ, "ମା' ତୋତେ ସବୁ ଦେଖାଇଦେଲେ; କିନ୍ତୁ ତୋର ଏହି ଉପଲବ୍ଧି ବର୍ତ୍ତମାନ ତାଲା ପଡ଼ିରହିବ । ଚାବି ମୋ ପାଖରେ ରହିଲା । ତୁ ମା'ଙ୍କର ଯେଉଁ କାର୍ଯ୍ୟ କରିବାକୁ ଆସିଛୁ, ତାହା ଶେଷ ହୋଇଗଲେ ତୁ ପୁଣି ଏହା ଫେରି ପାଇବୁ ।"

ସିନ୍ଧୁଦେଶବାସୀ ହରାନନ୍ଦ ଠାକୁରଙ୍କ ବ୍ୟାଧିର ସମ୍ବାଦ ପାଇ ତାଙ୍କୁ ଏହି ସମୟରେ ଦେଖିବାକୁ ଆସିଲେ । ସେ ଯେତେବେଳେ କଲିକତାରେ ପଢୁଥିଲେ, ସେତେବେଳେ ମଧ୍ୟେ ମଧ୍ୟେ ଠାକୁରଙ୍କୁ ଦେଖି-ବାକୁ ଦକ୍ଷିଣେଶ୍ୱର ଆସୁଥିଲେ । ହରାନନ୍ଦଙ୍କୁ ପାଇ ଠାକୁରଙ୍କର ଆନନ୍ଦର ଅବଧି ରହିଲା ନାହିଁ । ନରେନ୍ଦ୍ରଙ୍କ ସଙ୍ଗରେ ହରାନନ୍ଦଙ୍କର ଶାସ୍ତ୍ରାଲୋଚନା ଓ ବେଦାନ୍ତବିଚାର ଶୁଣି ଠାକୁର ଖୁବ୍ ଆନନ୍ଦ ପ୍ରକାଶ କଲେ । ବିଦାୟ ପୂର୍ବରୁ ହରାନନ୍ଦ ଠାକୁରଙ୍କୁ ତାଙ୍କ ଦେଶକୁ ନେଇ ଯିବା ଲାଗି ବିଶେଷ ଆଗ୍ରହ ପ୍ରକାଶ କରିଥିଲେ ।

ଏହି ଭାବରେ ଭକ୍ତମାନଙ୍କ ସଙ୍ଗରେ ଭଗବତ୍-ପ୍ରସଙ୍ଗଜନିତ ଦିବ୍ୟ ଆନନ୍ଦରେ ଅଲକ୍ଷିତରେ ଠାକୁରଙ୍କର ମେ, ଜୁନ୍ ଓ ଜୁଲାଇ ମାସ କଟିଗଲା । ତାଙ୍କର ବ୍ୟାଧି ଦିନକୁ ଦିନ ବୃଦ୍ଧି ପାଇବାକୁ ଲାଗିଲା । ଭକ୍ତ-ମାନଙ୍କର ବୁଝିବାକୁ ଆଉ ବିଳମ୍ବ ହେଲା ନାହିଁ ଯେ ଠାକୁରଙ୍କର ଏହି ଭଗ୍ନ ଜୀର୍ଣ୍ଣ ଦେହ ଆଉ ବେଶୀ ଦିନ ତିଷ୍ଠିବ ନାହିଁ, କିନ୍ତୁ ଏତେ ଦୁର୍ବଳତା ସତ୍ତ୍ୱେ ଭକ୍ତମାନଙ୍କର ଆଧ୍ୟାତ୍ମିକ କଲ୍ୟାଣସାଧନରେ ଠାକୁରଙ୍କର ବିନ୍ଦୁମାତ୍ର ବିରକ୍ତି ବା ବିରତି ନ ଥିଲା ।

ଦିନେ ଠାକୁର ନରେନ୍ଦ୍ରନାଥଙ୍କୁ ଶ୍ରୀରାମ-ମନ୍ତ୍ରରେ ଦୀକ୍ଷିତ କଲେ । ଏହାର ଫଳ ମଧ୍ୟ ଅଦ୍ଭୁତ ହେଲା । ନରେନ୍ଦ୍ରନାଥ ଆନନ୍ଦରେ ଆତ୍ମହରା ହୋଇ ଉଦ୍ୟାନବାଟୀର ଚତୁର୍ଦ୍ଦିଗରେ ଉନ୍ମତ୍ତସଦୃଶ ରାମନାମ ଉଚ୍ଚାରଣ କରି ଘୂରି ବୁଲିଲେ । କେହି ତାଙ୍କର ସମ୍ମୁଖୀନ ହେବା ଲାଗି ସାହସ କଲେ ନାହିଁ । ଏହି ଭାବରେ କେତେଘଣ୍ଟା ଅତିବାହିତ ହେଲା ପରେ ଅନ୍ୟ ଶିଷ୍ୟମାନେ ଶଙ୍କିତ ହୋଇ ଠାକୁରଙ୍କ ନିକଟରେ ନରେନ୍ଦ୍ରନାଥଙ୍କ ଅବସ୍ଥା ନିବେଦନ କଲେ । ଠାକୁର ସବୁ ଶୁଣିମାତ୍ର କହିଲେ, "ଏହି ଭାବରେ ଥାଉ । ଠିକ୍ ସମୟରେ ପ୍ରକୃତିସ୍ଥ ହେବ ।" କିଛି ସମୟ ପରେ ନରେନ୍ଦ୍ରନାଥ ସ୍ୱାଭାବିକ ଅବସ୍ଥାକୁ ଫେରି ଆସିଲେ ।

କାଶୀପୁରରେ ଅବସ୍ଥାନ କାଳରେ ପୂର୍ବବଙ୍ଗର ଦେଓଭୋଗ ନିବାସୀ ଗୃହୀଭକ୍ତ ଦୁର୍ଗାଚରଣ ନାଗ ମହାଶୟ ଠାକୁରଙ୍କୁ କେତେଥର

ଦର୍ଶନ କରିବାକୁ ଆସିଥିଲେ । ଯେତେବେଳେ ସେ ଠାକୁରଙ୍କ ଘରେ ପ୍ରବେଶ କଲେ ମାତ୍ରେ ଠାକୁର ତାଙ୍କୁ କହିଲେ, "ଆସ ! ମୋ ପାଖରେ ଆସି ବସ ।" ଏହି କଥା କହି ସେ ନାଗ ମହାଶୟଙ୍କୁ ନିବିଡ଼ ଆଲିଙ୍ଗନ-ପାଶରେ ଆବଦ୍ଧ କଲେ । ଆଉ ଯେବେ ନାଗ ମହାଶୟଙ୍କୁ ନିକଟରେ ଉପବିଷ୍ଟ ଦେଖି କହିଲେ, "ଦେଖ ! ଦୁର୍ଗାଚରଣ ! ଡାକ୍ତରମାନେ ମୋର ଏହି ବ୍ୟାଧି ଆରୋଗ୍ୟ କରିପାରିଲେ ନାହିଁ । ତୁମେ ମୋର ଏହି ରୋଗ ଦୂର କରିପାରିବ କି ?" ନାଗ ମହାଶୟ କିଛିକ୍ଷଣ ଚିନ୍ତା କରି ନିଜ ଶରୀରରେ ଠାକୁରଙ୍କ ସେହି ବ୍ୟାଧି ଗ୍ରହଣ କରିବାକୁ ଦୃଢ଼ସଙ୍କଳ୍ପ ହେଲେ ଏବଂ ଉତ୍ତେଜିତ କଣ୍ଠରେ କହିଉଠିଲେ, "ହଁ, ମହାଶୟ ! କିପରି ବ୍ୟାଧି ଦୂର କରିବାକୁ ହୁଏ, ତାହା ମୋତେ ଜଣା ଅଛି । ଆପଣଙ୍କ ଆଶୀର୍ବାଦରେ ମୁଁ ଏହି ବ୍ୟାଧି ଆରୋଗ୍ୟ କରିଦେବି ।" ଏହା କହି ସେ ଠାକୁରଙ୍କ ଆଡ଼କୁ ଅଗ୍ରସର ହେଲେ । ଅନ୍ତର୍ଯାମୀ ଠାକୁର ନାଗ ମହାଶୟଙ୍କ ମନୋଗତ ଭାବ ଅବଗତ ହୋଇ ତାଙ୍କୁ ଧକ୍କା ଦେଇ ତାଙ୍କ ପାଖରୁ ତଡ଼ିଦେଲେ ଏବଂ କହିଲେ, "ହଁ, ମୁଁ ଜାଣେ; ତୁମେ ଇଚ୍ଛା କଲେ ମୋର ରୋଗ ଭଲ କରି ଦେଇପାରିବ ।"

ଠାକୁରଙ୍କ ଲୀଳାସମ୍ବରଣର କେତେଦିନ ପୂର୍ବରୁ ନାଗମହାଶୟ ଠାକୁରଙ୍କ ଘରେ ପ୍ରବେଶ କରି ଦେଖିଲେ ଶୁଣିବାକୁ ପାଇଲେ ଯେ ସେ ଗୋଟିଏ ଅଁଳା ଖୋଜି ବୁଲୁଛନ୍ତି । ଜଣେ ଭକ୍ତ ଠାକୁରଙ୍କୁ ଜଣାଇ-ଦେଲେ ଏହି ଅସମୟରେ ଉକ୍ତ ଫଳ ପାଇବା ସମ୍ଭବ ନୁହେଁ । ଦୁର୍ଗାଚରଣ ବାକ୍ୟବ୍ୟୟ ନ କରି କଲିକତାର ସମସ୍ତ ବାଡ଼ି ବଗିଚା ତନ୍ନ-ତନ୍ନ କରି ଖୋଜି ବୁଲିଲେ ଏବଂ ତୃତୀୟ ଦିନ ଦୁଇ ଗୋଟି ଅଁଳା କୋଳି ହାତରେ ଧରି ଠାକୁରଙ୍କ ନିକଟରେ ଉପସ୍ଥିତ ହେଲେ । ଠାକୁର ତାଙ୍କୁ ସେହି ଅବସ୍ଥାରେ ଦେଖିବାକୁ ପାଇ ବିଶେଷ ଆନନ୍ଦିତ ହେଲେ ଏବଂ ତାଙ୍କର ଉପଯୋଗୀ ପୂର୍ବବଙ୍ଗୀୟ ଅନ୍ନ, ବ୍ୟଞ୍ଜନାଦି ପ୍ରସ୍ତୁତ କରିବା ପାଇଁ ଶ୍ରୀଶ୍ରୀମା'ଙ୍କୁ ନିର୍ଦ୍ଦେଶ ଦେଲେ । ନାଗ ମହାଶୟ ମଧ୍ୟ ଠାକୁରଙ୍କ ଦ୍ୱାରା ପ୍ରସାଦୀକୃତ ଅନ୍ନ ଅତିଶୟ ତୃପ୍ତି ଓ ଆନନ୍ଦର ସହିତ ଆହାର କଲେ ।

ମହାପ୍ରସ୍ଥାନର ଆଠ ନଅଦିନ ପୂର୍ବେ ଶ୍ରୀଶ୍ରୀଠାକୁର ଖଣ୍ଡିଏ ବଙ୍ଗଳା ପଞ୍ଜିକା ଯୋଗୀନଙ୍କୁ (ପରବର୍ତ୍ତୀ କାଳରେ ସ୍ୱାମୀ ଯୋଗାନନ୍ଦ) ଶ୍ରାବଣ ପଚିଶ ଦିନ (ଅଗଷ୍ଟ ନଅ ତାରିଖ) ଠାରୁ ପଢ଼ିବାକୁ କହିଲେ । ଉକ୍ତ ମାସର ଶେଷ ଦିବସର ବିବରଣୀ ପଢ଼ିସାରିବା ମାତ୍ରେ ଠାକୁର ଇସାରାରେ ତାଙ୍କୁ ଆଉ ଅଧିକ ପଢ଼ିବାକୁ ନିଷେଧ କଲେ । ଏହାର ଗୁରିପାଞ୍ଚଦିନ ପରେ ସେ ନରେନ୍ଦ୍ରନାଥଙ୍କୁ ତାଙ୍କର ସମ୍ମୁଖକୁ ଡକାଇ ପଠାଇଲେ । ସେତେବେଳେ ଠାକୁରଙ୍କ ଶୟନକକ୍ଷରେ ଅନ୍ୟ ଦ୍ୱିତୀୟ ବ୍ୟକ୍ତି କେହି ନ ଥିଲେ । ସେ ନରେନ୍ଦ୍ରନାଥଙ୍କୁ ତାଙ୍କ ସମ୍ମୁଖରେ ବସାଇ ତାଙ୍କ ଆଡ଼କୁ ଅପଲକ ଦୃଷ୍ଟିରେ କିଛିକ୍ଷଣ ଗୁହିଁରହି ସମାଧିସ୍ଥ ହୋଇଗଲେ । ନରେନ୍ଦ୍ରନାଥ ଅନୁଭବ କଲେ— ଯେପରିକି ଏକ ପ୍ରବଳ ତଡ଼ିତ୍-ପ୍ରବାହ ତାଙ୍କ ଦେହ ମଧ୍ୟକୁ ପ୍ରବେଶ କରୁଛି ! କ୍ଷଣକାଳ ଭିତରେ ତାଙ୍କର ବାହ୍ୟ ଚେତନା ବିଲୁପ୍ତ ହୋଇଗଲା । ଏହି ଅବସ୍ଥାରେ ସେ କେତେ ସମୟ ରହିଲେ ସେ ସମ୍ବନ୍ଧରେ ତାଙ୍କର ଆଉ ଜ୍ଞାନ ରହିଲା ନାହିଁ । ଯେତେବେଳେ ପ୍ରକୃତିସ୍ଥ ହେଲେ, ସେତେବେଳେ ଦେଖିଲେ ଯେ ଠାକୁର ଅଶ୍ରୁ ବିସର୍ଜନ କରୁଛନ୍ତି । କାନ୍ଦିବାର କାରଣ ପଚାରିବାରୁ ଠାକୁର ନରେନ୍ଙ୍କୁ କହିଲେ, "ଆଜି ତୋତେ ଯଥା ସର୍ବସ୍ୱ ଅର୍ପଣ କରି ଫକୀର ହୋଇଗଲି । ଏହି ଶକ୍ତି ସାହାଯ୍ୟରେ ତୁ ଜଗତର ଅଶେଷ କଲ୍ୟାଣ କରିପାରିବୁ । କାର୍ଯ୍ୟ ଶେଷ ହେଲେ ପୁଣି ସ୍ୱସ୍ଥାନକୁ ଫେରିଯିବୁ ।"

ଅହେତୁକ କୃପାସିନ୍ଧୁ ଠାକୁର ଏହିଭାବରେ ନରେନ୍ଦ୍ରନାଥଙ୍କ ଭିତରେ ଶକ୍ତି ସଞ୍ଚାର କରି ଉଭୟେ ଅଭିନ୍ନାତ୍ମା ହେଲେ । କହିବା ବାହୁଲ୍ୟ, ଏହି ଶକ୍ତି ସାହାଯ୍ୟରେ ହିଁ ନରେନ୍ଦ୍ରନାଥ ଉତ୍ତରକାଳରେ ସମଗ୍ର ଜଗତର ଚିନ୍ତା-ରାଜ୍ୟରେ ଏକ ବିପୁଳ ବିପ୍ଳବ ସୃଷ୍ଟି କରିବାକୁ ସମର୍ଥ ହୋଇଥିଲେ ।

ଏହି ଘଟଣାର ଦୁଇଦିନ ପରେ ଠାକୁର ଯଥାର୍ଥ ଈଶ୍ୱରାବତାର କି ନୁହନ୍ତି, ତାହା ପୁନର୍ବାର ପରୀକ୍ଷା କରିବା ନିମିତ୍ତ ନରେନ୍ଙ୍କ ଅନ୍ତରରେ ତୀବ୍ର ଇଚ୍ଛା ଜାଗ୍ରତ ହେଲା । ସେ ମନେ ମନେ ଚିନ୍ତା କଲେ—"ଏହି ଦାରୁଣ ରୋଗଦୁର୍ଗ୍ୟ ବ୍ୟାଧି ମଧ୍ୟରେ ଯଦି ଠାକୁର ମୁକ୍ତ କଣ୍ଠରେ କହନ୍ତି ଯେ ସେ

ପ୍ରକୃତରେ ପରମେଶ୍ୱର ଭଗବାନଙ୍କର ମାନବ-ଅବତାର, ତା'ହେଲେ ମୁଁ ତାଙ୍କୁ ଅବତାର ବୋଲି ବିଶ୍ୱାସ କରିବି—ତା' ନ ହେଲେ କେବେ ନୁହେଁ ।" ଆଶ୍ଚର୍ଯ୍ୟ କଥା, ଏହି ଚିନ୍ତା ନରେନ୍ଦ୍ରନାଥଙ୍କ ଅନ୍ତରରେ ଉଦିତ ହେଲାମାତ୍ରେ ଠାକୁର ଦୃଢ଼କଣ୍ଠରେ କହିଉଠିଲେ, "ଏବେ ବି ତୋର ଅବିଶ୍ୱାସ ! ଯେ ରାମ, ଯେ କୃଷ୍ଣ, ସେ ଇଦାନୀଂ ରାମକୃଷ୍ଣ—(କିନ୍ତୁ) ତୋର ବେଦାନ୍ତ ଦୃଷ୍ଟିରୁ ନୁହେଁ ।" ଠାକୁରଙ୍କ ଉକ୍ତି ଶୁଣିବା ମାତ୍ରେ ନରେନ୍ଦ୍ରନାଥ ଲଜ୍ଜାରେ ସଙ୍କୁଚିତ ହୋଇପଡ଼ିଲେ । ଏତେ ଦେଖିବା ଓ ଶୁଣିବା ପରେ ମଧ୍ୟ ସେ ଯେ ଠାକୁରଙ୍କର ଅବତାରତ୍ୱ ସମ୍ବନ୍ଧରେ ସନ୍ଦିହାନ ରହିଛନ୍ତି—ଏ କଥା ଭାବି ମନେ ମନେ ଖୁବ୍ ଅନୁତାପ ବୋଧ କରିବାକୁ ଲାଗିଲେ ।

କ୍ରମେ ସେହି ଚରମ ଦୁର୍ଦ୍ଦିନ ଆସନ୍ନ ହୋଇ ଆସିଲା । ୧୮୮୬ ଖ୍ରୀଷ୍ଟାବ୍ଦର ଅଗଷ୍ଟ ପନ୍ଦର । ଠାକୁରଙ୍କ ବ୍ୟାଧିର ଯନ୍ତ୍ରଣା ଆଜି ଚରମକୁ ଉଠିଛି । ସେ ଯନ୍ତ୍ରଣାରେ ଛଟପଟ ହେଉଛନ୍ତି । ଗିରିଶଚନ୍ଦ୍ରଙ୍କ ଭ୍ରାତା ଅତୁଳକୃଷ୍ଣ ନାଡ଼ି ପରୀକ୍ଷା କରି ପ୍ରମାଦ ଗଣିଲେ । ଅବସ୍ଥା ଖୁବ୍ ସଙ୍କଟଜନକ ବୋଲି ଘୋଷଣା କରି ସମସ୍ତଙ୍କୁ ପ୍ରସ୍ତୁତ ରହିବାକୁ କହିଲେ । ସନ୍ଧ୍ୟା ପୂର୍ବରୁ ଠାକୁରଙ୍କର ଶ୍ୱାସକଷ୍ଟ ଆରମ୍ଭ ହେଲା । ସେବକବୃନ୍ଦ କାନ୍ଦି ଉଠିଲେ । ଯେଉଁ ଆଲୋକରେ ସେମାନଙ୍କର ଜୀବନ ଆଲୋକିତ, ତାହା ଆଜି ନିର୍ବାଣୋନ୍ମୁଖ । ସଜଳ ନୟନରେ ସମସ୍ତେ ତାଙ୍କ ଶଯ୍ୟାର ଚତୁଃପାଖରେ ଘେରି ଠିଆ ହେଲେ । ସନ୍ଧ୍ୟାବେଳକୁ ଠାକୁର କିଞ୍ଚିତ୍ କ୍ଷୁଧା ଅନୁଭବ କଲେ । ସେବକଗଣ ତାଙ୍କୁ କିଛି ତରଳ ପଥ୍ୟ ଖାଇବାକୁ ଦେଲେ । ସେ ସେଥିରୁ ଖୁବ୍ ସାମାନ୍ୟ ମାତ୍ର ସେବନ କଲେ । ତାଙ୍କର ହାତମୁହଁ ଧୋଇ ଦେଇ ସେବକମାନେ ତାଙ୍କୁ ଶଯ୍ୟା ଉପରେ ଶୁଆଇ ଦେଲେ । ହଠାତ୍ ଠାକୁର ସମାଧିସ୍ଥ ହୋଇଗଲେ । ଅଙ୍ଗ ପ୍ରତ୍ୟଙ୍ଗ କାଷ୍ଠବତ୍ ନିଶ୍ଚଳ ଏବଂ କଠିନ ହୋଇଗଲା । ଏହି ସମାଧି ଅବସ୍ଥାର ଅସାଧାରଣତ୍ୱ ଲକ୍ଷ୍ୟ କରି ଶଶୀ ମହାରାଜ (ପରବର୍ତ୍ତୀ କାଳରେ ସ୍ୱାମୀ ରାମକୃଷ୍ଣାନନ୍ଦ) କାନ୍ଦିବାକୁ ଲାଗିଲେ । ଗିରିଶ ଓ ରାମଚନ୍ଦ୍ରଙ୍କୁ ତତ୍କ୍ଷଣାତ୍ ଡକାଇ ପଠାଗଲା । ରାତ୍ରି ଦୁଇ ପ୍ରହର ପରେ ଠାକୁର ବାହ୍ୟ ଚେତନା ଲାଭ କରି କହିଲେ ଯେ ସେ

ଅତ୍ୟନ୍ତ କ୍ଷୁଧାର୍ତ୍ତ, ସେବକମାନେ ତାଙ୍କୁ ତକିଆ ଠେଁସ ଦେଇ ବସାଇ ଦେଲାପରେ ସେ ଗିନାଏ ମଣ୍ଡ ଅକ୍ଲେଶରେ ପାନ କଲେ । ବିଗତ କିଛି ଦିନ ଭିତରେ ଏତେ ସ୍ୱଚ୍ଛନ୍ଦରେ ଏହି ପରିମାଣର ଆହାର୍ଯ୍ୟ ସେ କେବେ ହେଲେ ଗ୍ରହଣ କରି ନ ଥିଲେ । ଠାକୁର ଜଣାଇଦେଲେ ଯେ ସେ ବର୍ତ୍ତମାନ ସୁସ୍ଥବୋଧ କରୁଛନ୍ତି । ନରେନ୍ଦ୍ରନାଥ ଠାକୁରଙ୍କୁ ନିଦରେ ଶୋଇପଡ଼ିବାକୁ ଅନୁରୋଧ କଲେ । ଏହି କଥା ପରେ ସେ ସ୍ପଷ୍ଟଭାବରେ ତିନିଥର କାଳୀନାମ ଉଚ୍ଚାରଣ କରି ଧୀରେ ଧୀରେ ବିଛଣାରେ ଶୋଇପଡ଼ିଲେ । ଠାକୁରଙ୍କୁ କିଞ୍ଚିତ୍ ସୁସ୍ଥ ଦେଖି ନରେନ୍ଦ୍ରନାଥ ବିଶ୍ରାମ ଲାଗି ତଳମହଲାକୁ ଚାଲିଗଲେ ।

ରାତ୍ରି ଠିକ୍ ଗୋଟାଏ ବୁଇ ମିନିଟ୍ । ହଠାତ୍ ବିଦ୍ୟୁତ୍‌ପ୍ରବାହ ସଦୃଶ ଏକ ଅଦ୍ଭୁତ ପୁଲକରେ ଠାକୁରଙ୍କର ସର୍ବାଙ୍ଗ ରୋମାଞ୍ଚିତ ହୋଇ ଉଠିଲା । ଚକ୍ଷୁ ଦୁଇଟି ସ୍ଥିର; ନାସିକାଗ୍ରରେ ସ୍ଥିର ନିବଦ୍ଧ ଦୃଷ୍ଟି । ଅଭୂତପୂର୍ବ ଏକ ଦିବ୍ୟକାନ୍ତି ଠାକୁରଙ୍କର ସର୍ବଦେହରେ ଫୁଟି ଉଠିଲା । କାହାର ଆଉ ବୁଝିବାକୁ ବାକି ରହିଲା ନାହିଁ ଯେ ଠାକୁର ଏହି ଗଭୀର ମହାସମାଧିରୁ ଆଉ ବ୍ୟୁତ୍ଥିତ ହେବେ ନାହିଁ ।

ଆଜି ୧୮୮୬ ଖ୍ରୀଷ୍ଟାବ୍ଦର ଅଗଷ୍ଟ ୧୬ ତାରିଖ ସୋମବାର । ରଜନୀ ପ୍ରଭାତ ହେବାର କିଞ୍ଚିତ୍ ପୂର୍ବରୁ ଭକ୍ତମାନଙ୍କୁ ଅକୂଳ ଶୋକସାଗରରେ ଭସାଇଦେଇ ଆନନ୍ଦଘନ-ବିଗ୍ରହ ଯୁଗାବତାର ପୁରୁଷ ଯୋଗେଶ୍ୱର ଶ୍ରୀଶ୍ରୀରାମକୃଷ୍ଣଦେବ ଏହି ମୃଣ୍ମୟ ଶରୀର ପରିତ୍ୟାଗ କରି ମହାସମାଧି-ଯୋଗରେ ସ୍ୱ-ସ୍ୱରୂପରେ ବିଲୀନ ହୋଇଗଲେ । ଊନବିଂଶ ଶତାବ୍ଦୀର ଶ୍ରେଷ୍ଠ ପୁରୁଷ ମର୍ତ୍ତ୍ୟଧାମର ସେହି ଦିବ୍ୟଲୀଳା ସମାପ୍ତ କରି ଜଗଜ୍ଜନନୀଙ୍କର ପରମ ସ୍ନେହମୟୀ କୋଡ଼ରେ ପୁନର୍ବାର ଚରମ ବିଶ୍ରାମ ଗ୍ରହଣ କଲେ ।

ଠାକୁରଙ୍କର ମହାନିର୍ବାଣର ନିଦାରୁଣ ସମ୍ବାଦ ତଡ଼ିତ୍‌ବେଗରେ କଲିକତାର ସର୍ବତ୍ର ପ୍ରଚରିତ ହୋଇଗଲା । ଗିରିଶ ଓ ରାମ ସଙ୍ଗେ ସଙ୍ଗେ ଆସି ଉପସ୍ଥିତ ହୋଇଗଲେ । ଠାକୁରଙ୍କର ନଶ୍ୱର ଦେହ ଶେଷଥର ପାଇଁ ଦର୍ଶନ କରିବାକୁ ଘରଦ୍ୱାରରୁ ବହୁଲୋକ ଆସି ସମବେତ ହୋଇଗଲେ । କର୍ଣ୍ଣେଲ ବିଶ୍ୱନାଥ ଉପାଧ୍ୟାୟ, ଡାକ୍ତର ମହେନ୍ଦ୍ରଲାଲ ସରକାର ଏବଂ

ବ୍ରାହ୍ମଭକ୍ତ ଅମୃତଲାଲ ବସୁ, ତ୍ରୈଲୋକ୍ୟନାଥ ସାନ୍ୟାଲ, ଗିରିଶଚନ୍ଦ୍ର ସେନ୍ ପ୍ରମୁଖ ଅନେକ ପ୍ରସିଦ୍ଧ ବ୍ୟକ୍ତି ଜଣ ଜଣ ହୋଇ ଆସି ପହଞ୍ଚିଲେ । ଡାକ୍ତର ସରକାର ଦୁଇପ୍ରହର ବେଳକୁ ଠାକୁରଙ୍କର ଦେହ ପରୀକ୍ଷା କରି ଦେଖିଲେ ମହାବାୟୁର ଉତ୍କ୍ରମଣ ହୋଇଯାଇଛି । ତାହା ଶୁଣି ଗୈରିକବସ୍ତ୍ର, ମାଲ୍ୟଚନ୍ଦନ ଓ ପୁଷ୍ପାଭରଣରେ ସଜ୍ଜିତ କରି ଠାକୁରଙ୍କର ପୂତଦେହ ତଳମହଲାକୁ ଅଣାଗଲା ଏବଂ ଖଣ୍ଡିଏ ନୂତନ ଖଟ ଉପରେ ସୁକୋମଳ ଶଯ୍ୟାରେ ଶାୟିତ କରାଗଲା । ଡାକ୍ତର ସରକାରଙ୍କ ନିର୍ଦ୍ଦେଶାନୁସାରେ ଭକ୍ତପରିବୃତ ଶ୍ରୀଶ୍ରୀଠାକୁରଙ୍କ ଦେହର ଗୋଟିଏ ଆଲୋକ ଚିତ୍ର (ଫଟୋ) ଗ୍ରହଣ କରାଗଲା । ତା'ପରେ ସମବେତ ଶିଷ୍ୟ ଭକ୍ତବୃନ୍ଦ ଖୋଲ କରତାଳ ସଂଯୋଗରେ ଉଚ୍ଚରୋଳରେ ହରିନାମ ସଂକୀର୍ତ୍ତନ କରିକରି ଠାକୁରଙ୍କର ମରଦେହ ଆପଣା ସ୍କନ୍ଧରେ ବହନ କରି ବରାହନଗର ଶ୍ମଶାନସ୍ଥଳରେ ଆସି ଉପନୀତ ହେଲେ । ରାସ୍ତାର ଉଭୟ ପାର୍ଶ୍ୱରେ ଠାକୁରଙ୍କର ମହାପ୍ରସ୍ଥାନର ଶେଷ ଦୃଶ୍ୟ ଦେଖି ଅଗଣିତ ନରନାରୀ ଅଶ୍ରୁଜଳରେ ଭାସିବାକୁ ଲାଗିଲେ । ବ୍ରାହ୍ମଭକ୍ତ ତ୍ରୈଲୋକ୍ୟନାଥ ସାନ୍ୟାଲ ସମସ୍ତଙ୍କ ଅନୁରୋଧରେ, ଠାକୁରଙ୍କ ଚିତାପାର୍ଶ୍ୱରେ ବସି ଠାକୁରଙ୍କର ଅତିପ୍ରିୟ କେତୋଟି ପ୍ରାର୍ଥନାସଙ୍ଗୀତ ଆକୁଳ କଣ୍ଠରେ ଗାନ କରି ପୁଣ୍ୟତୋୟା ଭାଗୀରଥୀତୀରରେ ତାଙ୍କ ହୃଦୟର ଶେଷ ଭକ୍ତିଅର୍ଘ୍ୟ ନିବେଦନ କଲେ । ତାଙ୍କ ମଧୁର କଣ୍ଠରୁ ସେହି ପବିତ୍ର ସଙ୍ଗୀତ ଶ୍ରବଣ କରି ଉପସ୍ଥିତ କେହି ଅଶ୍ରୁ ସମ୍ବରଣ କରିପାରିଲେ ନାହିଁ । ତା'ପରେ ଠାକୁରଙ୍କର ଅନ୍ତରଙ୍ଗ ଶିଷ୍ୟଗଣ ଚିତାରେ ଅଗ୍ନିସଂଯୋଗ କଲେ । କିୟତ୍‌କାଳ ମଧ୍ୟରେ ଠାକୁରଙ୍କର ସେହି ନଶ୍ୱର ଦେହ ଅଗ୍ନିରେ ଭସ୍ମସାତ୍ ହୋଇଗଲା । ଶ୍ମଶାନବାନ୍ଧବବୃନ୍ଦ ଶୋକସନ୍ତପ୍ତ ଚିତ୍ତରେ ଅଶ୍ରୁପୂର୍ଣ୍ଣ ନୟନରେ ନିଜନିଜ ଗୃହକୁ ବାହୁଡ଼ି ଆସିଲେ ।

# ଉପସଂହାର

ଠାକୁରଙ୍କର ମହାପ୍ରସ୍ଥାନରେ ତାଙ୍କର ମନ୍ତ୍ରଶିଷ୍ୟବର୍ଗ ଅତ୍ୟନ୍ତ ବିହ୍ୱଳ ଓ ମ୍ରିୟମାଣ ହୋଇପଡ଼ିଲେ; କିନ୍ତୁ ଖୁବ୍ ଅଳ୍ପସମୟ ମଧ୍ୟରେ ସେମାନଙ୍କର ହୃଦୟ ଏକ ନୂତନ ଆଶା ଓ ଉଦ୍ଦୀପନାରେ ପରିପୂର୍ଣ୍ଣ ହୋଇଉଠିଲା । ସେମାନେ ଏହି ସଙ୍କଟ ମୁହୂର୍ତ୍ତରେ ଠାକୁରଙ୍କୁ ଆହୁରି ବ୍ୟାପକ ଓ ଘନିଷ୍ଠ-ଭାବରେ ଅନୁଭବ କରିବାକୁ ଲାଗିଲେ । ଠାକୁର ଜୀବଦ୍ଦଶାରେ ସେମାନଙ୍କୁ ଅନେକ ଥର କହିଥିଲେ—ମୃତ୍ୟୁ କେବଳ ଦେହର ହୁଏ, ଆତ୍ମାର ଜନ୍ମ ନାହିଁ କି ମୃତ୍ୟୁ ନାହିଁ । ଠାକୁରଙ୍କର ପାର୍ଥିବ ଦେହର ଅବସାନ ଘଟିଛି ସତ୍ୟ; କିନ୍ତୁ ସେମାନେ ଅନ୍ତର୍ଦୃଷ୍ଟି ସହାୟତାରେ ବୁଝିପାରିଲେ ଯେ ସେମାନଙ୍କର ପ୍ରତ୍ୟେକଙ୍କ ହୃଦୟରେ ସେ ଉଜ୍ଜ୍ୱଳଭାବରେ ପ୍ରତିଷ୍ଠିତ ରହିଛନ୍ତି । ସେମାନେ ଖୁବ୍ ଶୀଘ୍ର ତାଙ୍କର ଦିବ୍ୟସ୍ପର୍ଶ ଅନୁଭବ କରି ପ୍ରାଣରେ ଅପୂର୍ବ ଶାନ୍ତି ଓ ସାନ୍ତ୍ୱନା ପାଇବାକୁ ଲାଗିଲେ । ଦାହକାର୍ଯ୍ୟ ସମ୍ପୂର୍ଣ୍ଣ ହେବାରୁ ସେମାନେ ଠାକୁରଙ୍କର ଭସ୍ମାବଶେଷ ଓ ପୂତ ଅସ୍ଥି ଗୋଟିଏ ପାତ୍ରରେ ସଂଗ୍ରହ କଲେ ଏବଂ ଏହା ମସ୍ତକ ଉପରେ ଧାରଣ କରି "ଜୟ ଭଗବାନ ଶ୍ରୀରାମକୃଷ୍ଣଜୀଙ୍କ ଜୟ" ଧ୍ୱନି କରିକରି କାଶୀପୁର ଉଦ୍ୟାନ-ବାଟିକାକୁ ଫେରି ଆସିଲେ ।

ଉଦ୍ୟାନରେ ପହଞ୍ଚିଲାପରେ, ସେମାନଙ୍କର ପ୍ରଧାନ ଚିନ୍ତା ହେଲା—ଠାକୁରଙ୍କର ପବିତ୍ର ଚିତାଭସ୍ମ ଓ ଅସ୍ଥି କିପରି ଭାବରେ ସଂରକ୍ଷିତ କରାହେବ । ଅନେକ ଚିନ୍ତା ଓ ଆଲୋଚନା ପରେ ସ୍ଥିର ହେଲା ଗଙ୍ଗା-ତୀରରେ ଖଣ୍ଡିଏ ଜମି କ୍ରୟ କରି ଏହି ଚିତାଭସ୍ମକୁ ସେଠାରେ ପ୍ରୋଥିତ କରି ରଖିବାକୁ ହେବ; କିନ୍ତୁ ଅର୍ଥାଭାବରେ ସେତେବେଳେ ତାହା କାର୍ଯ୍ୟରେ ପରିଣତ କରିବା ସମ୍ଭବ ହେଲା ନାହିଁ । କାଙ୍କୁଡ଼ଗାଛିରେ ଭକ୍ତ ରାମଚନ୍ଦ୍ର ଦତ୍ତଙ୍କର ଗୋଟିଏ ଉଦ୍ୟାନ-ବାଟିକା ଥିଲା । ସେଠାରେ ପୂର୍ବେ ଠାକୁର

ଦିନେ ପଦାର୍ପଣ କରି ଆନନ୍ଦୋତ୍ସବ କରିଥିଲେ । ଗୃହୀ ଭକ୍ତମାନେ ସେହି ଉଦ୍ୟାନଗୃହରେ ଠାକୁରଙ୍କର ଭସ୍ମାବଶେଷ ରଖିବାକୁ ସିଦ୍ଧାନ୍ତ ନେଲେ; କିନ୍ତୁ ଠାକୁରଙ୍କ ଯୁବକ ଶିଷ୍ୟମାନଙ୍କର ତାହା ମନଃପୂତ ହେଲା ନାହିଁ । ସେମାନେ "ଭସ୍ମ ଓ ଅସ୍ଥି"ର ଅଧିକାଂଶ କଲିକତା ବାଗ୍‌ବଜାର ପଲ୍ଲୀର ଶ୍ରୀଯୁକ୍ତ ବଲରାମ ବସୁଙ୍କ ଗୃହକୁ ପଠାଇଦେଲେ ଏବଂ ସ୍ଥିର କଲେ ଯେ ଭବିଷ୍ୟତରେ ସୁଯୋଗ ଉପସ୍ଥିତ ହେଲେ ଏହି ପବିତ୍ର ଭସ୍ମ ଓ ଅସ୍ଥି ଗଙ୍ଗାତୀରରେ ପ୍ରୋତ୍ଥିତ କରି ନିତ୍ୟ ପୂଜା-ଆରାଧନାର ସ୍ଥାୟୀ ବ୍ୟବସ୍ଥା କରିବେ । ଭସ୍ମର ଅବଶିଷ୍ଟାଂଶ ଶୁଭ ଜନ୍ମାଷ୍ଟମୀ ଦିନ ଗୃହୀ ଓ ଯୁବକ ଭକ୍ତମାନେ ମିଳିତ ହୋଇ କାଙ୍କୁଡ଼ଗାଛି ଉଦ୍ୟାନରେ ବିହିତ ଉପଚାରରେ ସଂସ୍ଥାପିତ କଲେ ଏବଂ ଭକ୍ତପ୍ରବର ରାମଚନ୍ଦ୍ର ସେହିଦିନଠାରୁ ଏହି ପବିତ୍ର ପ୍ରତୀକ ଅବଲମ୍ବନରେ ଠାକୁରଙ୍କର ନିୟମିତ ପୂଜାର୍ଚ୍ଚନାର ସୁବ୍ୟବସ୍ଥା କଲେ ।

ଯୁବକ ଭକ୍ତମାନଙ୍କ ମଧ୍ୟରେ ଯେଉଁମାନେ କାଶୀପୁର ଉଦ୍ୟାନ ବାଟିକାରେ ଅବସ୍ଥାନ କରି ଠାକୁରଙ୍କର ଦିନରାତି ସେବା କରୁଥିଲେ, ତାଙ୍କର ଅନ୍ତର୍ଦ୍ଧାନ ପରେ ସେମାନଙ୍କ ଭିତରୁ ଅନେକେ ଅନିଚ୍ଛାସତ୍ତ୍ୱେ କ୍ରମେ କ୍ରମେ ନିଜ ନିଜ ଘରକୁ ଫେରିଗଲେ; କିନ୍ତୁ ଠାକୁର ସେମାନଙ୍କ ଅନ୍ତରରେ ଈଶ୍ୱରଲାଭ ଲାଗି ଯେଉଁ ଆକାଙ୍କ୍ଷା ପ୍ରଜ୍ୱଳିତ କରି ଦେଇଥିଲେ, ତାହା ତ ସହଜରେ ନିର୍ବାପିତ ହେବାର ନୁହେଁ ! ସେମାନେ ଉପଯୁକ୍ତ ସମୟର ପ୍ରତୀକ୍ଷାରେ ଜୀବନ ଅତିବାହିତ କରିବାକୁ ଲାଗିଲେ ।

ବୁଢ଼ା ଗୋପାଳ, ତାରକ, ଲାଟୁ ପ୍ରଭୃତି କେତେଜଣଙ୍କର କିନ୍ତୁ ଫେରିଯିବା ଲାଗି କୌଣସି ସ୍ଥାନ ନ ଥିଲା । ଠାକୁରଙ୍କର ପରମ ଗୃହୀଭକ୍ତ ସୁରେନ୍ଦ୍ରନାଥ ତ୍ୟାଗୀ ଭକ୍ତମାନଙ୍କୁ ଗୋଟିଏ ନିର୍ଦ୍ଦିଷ୍ଟ ସ୍ଥାନ ସଂଗ୍ରହ କରିବା ଲାଗି ପ୍ରତିଦିନ ପ୍ରୋତ୍ସାହିତ କରିବାକୁ ଲାଗିଲେ । ଏପରି ଏକ ସ୍ଥାନ ପାଇଗଲେ ସେଠାରେ ସେମାନଙ୍କ ପକ୍ଷରେ ଠାକୁରଙ୍କର ପୂଜା ଧ୍ୟାନ ଜପ ଓ ତପସ୍ୟାଦି କରିବାକୁ ସୁବିଧା ହେବ, ନିୟମିତଭାବେ ସଂଯତ ଜୀବନ ଯାପନ କରିବନା ସମ୍ଭବ ହେବ ଏବଂ ମଧ୍ୟେ ମଧ୍ୟେ ଗୃହୀ ଭକ୍ତମାନେ ସେଠାକୁ ଆସି ସେମାନଙ୍କର

ପବିତ୍ର ସଙ୍ଗ ଲାଭକରି ପ୍ରାଣର ଜ୍ୱାଳା ମେଣ୍ଟାଇ ପାରିବେ । ସୁରେନ୍ଦ୍ରନାଥ ଏହାର ସମୁଦାୟ ବ୍ୟୟଭାର ବହନ କରିବାକୁ ମଧ୍ୟ ପ୍ରସ୍ତୁତ ହେଲେ । ଅସହାୟ ଯୁବକ ଭକ୍ତମାନେ ଏହା ଫଳରେ ଅକୂଳରେ କୂଳ ପାଇଲେ । ବହୁ ଅନୁସନ୍ଧାନ ପରେ କଲିକତାର ଉତ୍ତରାଂଶରେ ବରାହନଗର ଅଞ୍ଚଳରେ ଗୋଟିଏ ଅତି ପୁରାତନ ଗୃହ ସେହି ଉଦ୍ଦେଶ୍ୟରେ ଭଡ଼ା ନିଆଗଲା । ସୁରେନ୍ଦ୍ରନାଥ ପ୍ରଥମେ ତିରିଶ ଟଙ୍କା ଓ ପରେ ଶହେ ଟଙ୍କା ପର୍ଯ୍ୟନ୍ତ ପ୍ରତି ମାସରେ ଅର୍ଥ ସାହାଯ୍ୟ କରି ଠାକୁରଙ୍କର ତ୍ୟାଗୀ ଭକ୍ତମାନଙ୍କ ରହିବା ପାଇଁ ଗୋଟିଏ ସ୍ଥାୟୀ ବ୍ୟବସ୍ଥା କରିଦେଲେ । ବୃଦ୍ଧ ଗୋପାଳ କାଶୀପୁର ଉଦ୍ୟାନ-ବାଟିକାରୁ ଠାକୁରଙ୍କର ବ୍ୟବହୃତ ଗଦି ଓ ଅନ୍ୟାନ୍ୟ ଜିନିଷପତ୍ର ନେଇ ବରାହନଗରର ବସା ଗୃହକୁ ଚାଲିଆସିଲେ । ତାରକ ମଧ୍ୟ ବୃନ୍ଦାବନରୁ ପ୍ରତ୍ୟାବର୍ତ୍ତନ କରି ଏହି ସ୍ଥାନରେ ଉପସ୍ଥିତ ହେଲେ । କିଛିକାଳ ମଧ୍ୟରେ ନରେନ୍ଦ୍ର, ରାଖାଲ, ନିରଞ୍ଜନ, ଶରତ, ଶଶୀ, ବାବୁରାମ, ଯୋଗୀନ, କାଳୀ ଓ ଲାଟୁ ନବପ୍ରତିଷ୍ଠିତ ଏହି ମଠରେ ସମବେତ ହୋଇ ଅଦମ୍ୟ ଉତ୍ସାହରେ କଠୋର ତପସ୍ୟାରେ ଆତ୍ମନିୟୋଗ କଲେ । କ୍ରମେ ହରିପ୍ରସନ୍ନ, ସୁବୋଧ, ଗଙ୍ଗାଧର ଏବଂ ହରିନାଥ ଆସି ଗୁରୁଭ୍ରାତାମାନଙ୍କ ସଙ୍ଗେ ମିଳିତ ହୋଇ ମହାବ୍ରତ ଉଦ୍‌ଯାପନରେ ତତ୍ପର ହେଲେ ।

ପୂର୍ବ ସିଦ୍ଧାନ୍ତ ଅନୁଯାୟୀ ଠାକୁରଙ୍କର ପୂତ ଅସ୍ଥି ବଳରାମବାବୁଙ୍କ ଘରୁ ଯଥା ସମୟରେ ଆନୟନ କରାଯାଇ ବରାହନଗର ମଠରେ ଯଥୋପଯୁକ୍ତରେ ପ୍ରତିଷ୍ଠିତ କରାଗଲା ଏବଂ ଶ୍ରୀଶ୍ରୀଠାକୁରଙ୍କର ନିତ୍ୟ ପୂଜାର ଭାର ଶଶୀ ଗ୍ରହଣ କଲେ । ଅନ୍ୟାନ୍ୟ ଗୁରୁଭ୍ରାତାମାନେ ନରେନ୍ଦ୍ରନାଥଙ୍କ ତତ୍ତ୍ୱାବଧାନରେ ଆଶ୍ରମର ସକଳ କାର୍ଯ୍ୟ ନିଜ ନିଜ ମଧ୍ୟରେ ଭାଗ କରି ସଙ୍ଘବଦ୍ଧଭାବରେ ମଠ ପରିଚାଳନା କରିବାକୁ ଲାଗିଲେ ।

ଶ୍ରୀଶ୍ରୀଠାକୁରଙ୍କର ଜ୍ୱଳନ୍ତ ତ୍ୟାଗାଦର୍ଶରେ ଅନୁପ୍ରାଣିତ ହୋଇ ସେମାନେ ଅନତିବିଳମ୍ବରେ ବିରଜାହୋମ ସମ୍ପାଦନ କରି ଆନୁଷ୍ଠାନିକ

ଭାବରେ ସନ୍ନ୍ୟାସବ୍ରତ ଗ୍ରହଣ କଲେ ଏବଂ ପୂର୍ବାଶ୍ରମ ( ଗୃହସ୍ଥଜୀବନ )ର ନାମ ପରିବର୍ତ୍ତନ କରି ସନ୍ନ୍ୟାସୀ ସଂପ୍ରଦାୟଭୁକ୍ତ ଚିହ୍ନ ଓ ନାମାଦି ଧାରଣପୂର୍ବକ ସନାତନ ଧର୍ମର ଅତ୍ୟୁଚ୍ଚ ଆଦର୍ଶର ବେଦୀମୂଳରେ ନିଜ ନିଜର ଜୀବନ ଉତ୍ସର୍ଗ କଲେ । ସଦ୍ୟ ପ୍ରତିଷ୍ଠିତ ବରାହନଗର ମଠ ଅଚିରେ ତପସ୍ୟାର ପୁଣ୍ୟ ପୀଠରେ ପରିଣତ ହେଲା । ଏହି ପବିତ୍ର ପରିବେଶ ମଧ୍ୟରେ ନବୀନ ସନ୍ନ୍ୟାସୀ-ଗୋଷ୍ଠୀ ଯେଉଁ ଭାବରେ କୃଚ୍ଛ୍ର ସାଧନରେ ଆତ୍ମୋତ୍ସର୍ଗ କଲେ, ତାହା ବାସ୍ତବିକ ଅତୁଳନୀୟ । ଗୋଟିଏ ଦିଗରେ ଅର୍ଥାଭାବ, କୌପୀନ ମାତ୍ର ସମ୍ବଳ, ଅନ୍ୟ ଦିଗରେ ଆତ୍ମୀୟ ସ୍ୱଜନମାନଙ୍କର ଗଞ୍ଜଣା — ସୁଦୁର୍ଲଭ ଭିକ୍ଷା । ସେମାନଙ୍କର ବହୁଦିନ ଅନାହାରରେ ଓ ଅନିଦ୍ରାରେ କଟିଛି । କେବଳମାତ୍ର ବେଲପତ୍ରାଦି ସିଝା କରି କ୍ଷୁଧାନିବୃତ୍ତିର ବ୍ୟବସ୍ଥା କରାଯାଇଛି । ତୀବ୍ର ବୈରାଗ୍ୟପୂର୍ଣ୍ଣ ଅନ୍ତରରେ ଭଗବତ୍-ଧ୍ୟାନ, କୀର୍ତ୍ତନ ଓ ପୂଜା-ପାଠରେ ସେମାନଙ୍କର ଦିନରାତି କିପରି କଟିଯାଉଥିଲା, ତାହା ସେମାନେ ବୁଝିପାରୁ ନ ଥିଲେ । ଶ୍ରୀରାମକୃଷ୍ଣଙ୍କ ପ୍ରତି ଗଭୀର ଅନୁରାଗରେ ସେମାନଙ୍କର ଐହିକ ସୁଖଭୋଗେଚ୍ଛା କେଉଁଆଡ଼େ ଭାସିଗଲା । "ମନ୍ତ୍ରର ସାଧନ କିମ୍ବା ଶରୀର ପାତନ" ଏହି ମହାମନ୍ତ୍ରରେ ଦୀକ୍ଷିତ ସନ୍ନ୍ୟାସୀମାନଙ୍କର ତପସ୍ୟାସମ୍ଭୂତ ଦିବ୍ୟ ଶକ୍ତି ଖୁବ୍ ଶୀଘ୍ର ସେମାନଙ୍କୁ ଅତୁଳ ପ୍ରେମ ଓ ଶାନ୍ତିର ଅଧିକାରୀ କରିଦେଲା । ବସ୍ତୁତଃ ଏହି ନବୀନ ସନ୍ନ୍ୟାସୀମାନଙ୍କର ପ୍ରତ୍ୟେକଙ୍କ ଜୀବନ ଠାକୁରଙ୍କର ଏକ ବା ଏକାଧିକ ଭାବର ପ୍ରକୃଷ୍ଟ ରୂପାୟନ । ସତ୍ୟୋପଲବ୍ଧିର ଉନ୍ମାଦନାରେ ସେମାନେ ଚତୁର୍ଦ୍ଦିଗକୁ ବ୍ୟାପିଗଲେ । ସଂଘନାୟକ ସ୍ୱାମୀ ବିବେକାନନ୍ଦ ( ନରେନ୍ଦ୍ରନାଥ ) ଠାକୁରଙ୍କର ତଥା ଭାରତବର୍ଷର ଆଧ୍ୟାତ୍ମିକ ସମ୍ପଦ ବିଶ୍ୱଦରବାରରେ ପରିବେଷଣ କରି ଆମେରିକାର ଚିକାଗୋ ଧର୍ମ ମହାସଭାକୁ ମହିମାନ୍ୱିତ କରିଦେଇଥିଲେ । ଗୈରିକ ଉଷ୍ଣୀଷ (ପଗଡ଼ି) ଧାରୀ ସନ୍ନ୍ୟାସୀଙ୍କ କଣ୍ଠରେ ଭାରତର ମର୍ମବାଣୀ ଯେଉଁଦିନ ଚିକାଗୋର ମହତୀ ଧର୍ମସଭାରେ ମେଘମନ୍ଦ୍ରରେ ଧ୍ୱନିତ ହେଲା, ସେହି ସ୍ମରଣୀୟ ଦିବସରେ ପାଶ୍ଚାତ୍ୟ ଜଗତ ଭାରତର ସାର୍ବଜନୀନ ଉଦାର ଆଦର୍ଶକୁ ସଶ୍ରଦ୍ଧ ଅଭିନନ୍ଦନ ଜଣାଇଥିଲା । ବିଶ୍ୱସଭାରେ ଭାରତର ଗୌରବାସନ ପ୍ରତିଷ୍ଠିତ ହୋଇଗଲା ।

ତ୍ୟାଗ ଓ ସେବା ହିଁ ଭାରତର ମୂଳମନ୍ତ୍ର; ଆଧ୍ୟାତ୍ମିକତା ହିଁ ମାନବର ସ୍ଥାୟୀ କଲ୍ୟାଣର ନିଦାନ । ତେଣୁ ଆଜି ଭାରତ ବହୁବିଧ ବିପ୍ଳବ ଏବଂ ବିପର୍ଯ୍ୟୟ ଭିତରେ ମଧ୍ୟ ସଞ୍ଜୀବିତ ଓ ଉନ୍ନତଶିର ରହିଅଛି । ସେଥିପାଇଁ ଭାରତମାତାଙ୍କ ସର୍ବତ୍ୟାଗୀ ସନ୍ନ୍ୟାସୀ ସନ୍ତାନଗଣ ଭାରତର ଗୈରିକ ପତାକା ଚିରକାଳ ଦୂରଦୂରାନ୍ତକୁ ବହନ କରି ମାନବକୁ ପ୍ରକୃତ ଶାନ୍ତିର ପଥ ପ୍ରଦର୍ଶନ କରି ଆସିଛନ୍ତି ।

